

# ନୂଆ ଶତାବ୍ଦୀର ଫଗୁଣ

ଶ୍ରୀ ଉମାଶଙ୍କର ମିଶ୍ର

# ନୂଆ ଶତାବ୍ଦୀର ଫଗୁଣ

ଶ୍ରୀ ଉମାଶଙ୍କର ମିଶ୍ର



କଟକ-ଷ୍ଟୁଡେଣ୍ଟସ୍ ଷ୍ଟୋର

# ନୂଆ ଶତାବ୍ଦୀର ଫଗୁଣ

ପ୍ରକାଶିକା :
**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ-୧୯୮୮

ପ୍ରଚ୍ଛଦ :
**ଛନ୍ଦାଚରଣ ଆଚାର୍ଯ୍ୟ**

ମୁଦ୍ରଣ :
**ଭାରତୀ ପ୍ରେସ**
କଟକ-୯

ମୂଲ୍ୟ :
**ସାଦା : ଟ ୨୦-୦୦**
**ବନ୍ଧାଇ : ଟ ୨୫-୦୦**

## Nua Satabdira Phaguna

by : Sri Umasankar Mishra

Publisher :

Srimati Annapurna Mishra
Cuttack Students' Store
Balubazar, Cuttack-2

First Edition *1988*

Price :

Popular Rs : *20-00*
Deluxe Rs : *25-00*

# ସ୍ୱଗତଃ

ଯେତେ ଆଟୋପର ଭାଗ୍ୟ, ଟୀକା, ଅନୁପ୍ରାସ, ଆଲେଖ୍ୟ, ଉପସର୍ଗ ଦେଇ କଥା କହିଲେ ବି ଅଲକ୍ଷ୍ୟରେ ହେଉ କି ଜାଣିଶୁଣି ଦୁଃସାହସରୁ ଉଦ୍ଧାର ପିବାର ନବପନ୍ଥା ଆଉ ସାମାଜିକ ସଙ୍କୁଣାର ଗଣ୍ଡି ଭିତରୁ ମୁକୁଳିବାର ସଂଶୟ ଯୋଗୁଁ ହେଉ, ଅନେକ ସାରମଞ୍ଜ କଥା ଅନୁଚ୍ଚାରିତ ରହିଯାଏ । ଦେଶ ସ୍ୱାଧୀନ ହବାର ଚାଳିଶିଠି ସମ୍ବତ୍ସର ପରେ ବି କଲମ ଚଳଉଥିବା ଏଇ ଭୂଖଣ୍ଡର କତିପୟ ଦର୍ଶକ, କଳାକାରଙ୍କୁ ଏଇମିତି କମମାତ୍ର କାପୁରୁଷତା ଟିକକ ପକ୍ଷାଘାତ କରି ରଖିଛି । ପରସ୍ପର ଅର୍ବାଚୀନ ଅସଂହତ ଅନେକ ଅନୁଭୂତି ଘଟଣା ଚରିତ୍ର ପରିବେଶ ଗୋଟାଏ ଜୀବନ କାଳ ଭିତରେ ସମ୍ଭବ ଥାଏ । ସେ ସବୁକୁ ଗୋଟେଇ ସଜାଡ଼ି ଯୋଡ଼ି ମନୀଷାର ତୁଳିରେ ସମ୍ପର୍କିତ କରି ସହଜ ବୋଧଗମ୍ୟ ସ୍ୱର ତରଙ୍ଗଟିଏ ଫୁଟେଇବା ସହଜ ହୋଇନପାରେ । ତେବେ ପ୍ରାଜ୍ଞଙ୍କ ଉକ୍ତିରେ ଲେଖକର ଅସଲ କାରିଗରର ଚିହ୍ନଟ ହେଲା ସବୁ ଅସମାନ ଅସମ୍ପର୍କିତ କଥା ଭିତରେ ଯୋଗସୂତ୍ର ଥାପିବାର ସାମର୍ଥ୍ୟ । ଜାହାର ଅକ୍ତିଆରରେ ନଥାଇ ଗୁଡ଼ାଏ ଛିଣ୍ଡାଗୁଡ଼ିଙ୍କୁ ଏକାଠି କରି ନଭୋମଣ୍ଡଳରେ ବକାଳିକା ମାଳିକା ଗୁନ୍ଥିବାର ପ୍ରୟାସ ଅନ୍ତତଃ ମୁଁ କରି ଚାଲିଛି । ତରଳ ଆତ୍ମାର ସମ୍ବେଦନଶୀଳ ପାଠକଟିଏ ଭାରି ଜରୁରୀ । ମୋ ଭୂଇଁର ପାଠକ ସହ ଅପ୍ରିୟ ସତ୍ୟ ସମ୍ମୁଖ ହୁଏ, ଖାଲି ସ୍ୱୈରବାଦୀ ସ୍ୱପ୍ନଭୂକ୍ ହୁଏ, ମୁଁ ହତଭାଗା କାହାପାଇଁ ନବୋଳା ମୂର୍ଦ୍ଧନାପାତର ଭାଷା ଲେଖିବି !

ଦଶହରା

ଏହି ସଂକଳନରେ ସନ୍ନିବିଷ୍ଟ ଗଳ୍ପ ଗୁଡ଼ିକୁ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ କରିଥିବା ଭାବଗ୍ରାହୀ ସମ୍ପାଦକମାନଙ୍କୁ ତଥା ଏହି ପୁସ୍ତକଟିର ପ୍ରକାଶକ ସ୍ୱନାମଧନ୍ୟ 'କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର'ର ସ୍ୱତ୍ୱାଧିକାରୀ ଓ କର୍ମଧାରୀମାନଙ୍କୁ ମୋର ଅକୁଣ୍ଠ କୃତଜ୍ଞତା ଜଣାଉଛି ।

ନନ୍ଦାଚରଣଙ୍କ ପ୍ରଚ୍ଛଦ ଚିତ୍ର ପାଇଁ ମୁଁ ଅନୁଗୃହୀତ ।

—ଉମାଶଙ୍କର—

## ଲେଖକଙ୍କ ଅନ୍ୟାନ୍ୟ ପ୍ରକାଶିତ ଗଳ୍ପ ସଙ୍କଳନ

* ଉମାଶଙ୍କର ମିଶ୍ରଙ୍କ କାହାଣୀ ସ୍ତବକ

* ଶ୍ୱେତ ଅନୃତ

* ତ୍ରିଶଙ୍କୁ

* ବୋହୂ ବୋହୂକା



# ସୂଚୀ





# ନୂଆ ଶତାବ୍ଦୀର ଫଗୁଣ

ପ୍ରଥମ ଶବ୍ଦଟି ଉଚ୍ଚାରିତ ହେବା ସବୁଠୁଁ କଷ୍ଟ । କ'ଣ କେମିତି ବୁଝେଇବି ମୁଁ ତାକୁ । କହିବି ସହିବା ଲୋକ ବଡ଼ ଲୋକ । ଓଲଟି ଶ୍ରେଷ୍ଠ ହାଣିଲେ ମଣିଷର ଓଜନ, ପରିବାର ପଣିଆଁ ପ୍ରମାଣିତ ହୁଏ ନାହିଁ । ସବୁ ଅନ୍ୟାୟ ଅନାଚାରକୁ ନିର୍ବିରୋଧରେ ସହିଯା । ନୀରବରେ ଖାଲି ସମସ୍ତଙ୍କର ଏମିତି କି ସମାଜର ପରମ ଶତ୍ରୁମାନଙ୍କୁ କ୍ଷମା କରିଯା, କରୁଣା କରିଯା । ଏହା କ'ଣ ପୁରୁଷକାର ! ସେଦିନ ମୁହଁ ଥମ ଥମ କରି ଗାଲ ଉପରେ ଶୁଖିଲା ଲୁହ ଦାଗକୁ ପଣତ କାନରେ ପୋଛି ଆଣି ଏଡ଼େ ଏଡ଼େ ଡୋଳା ଆଖିରେ ମତେ ପରଖିନେଇ ପଚାରିଲା ବନ୍ଧ୍ୟା—

: ଏଇ କଣ ଶରି ଭାଇନା ଆପଣଙ୍କ ଏକବିଂଶ ଶତାବ୍ଦୀର ପ୍ରବେଶ ପଥ ?

ରାତି ସାଢ଼େ ଗୋଟାଏ । ଶୂନ୍‌ଶାନ୍ ଜଙ୍ଗଲ ଭିତର ଦେଇ ଯାଇଛି ଉତ୍ତରକୁ ଥିବା ଜାତୀୟ ରାଜପଥ ଉପରେ ଫରେଷ୍ଟ ଚେକ୍‌ଗେଟ୍ ଏପାଖେ ଟ୍ରେକର୍‌ଟା ଅଟକେଇ ଦେଇଛନ୍ତି ପୁଲିସ୍ । ତାଗିଦ୍ କରୁଛନ୍ତି ଆଉ ଆଗକୁ ଯାଅ ନାହିଁ, ଡକାୟତ, ସନ୍ତ୍ରାସବାଦୀ, ନକ୍‌ସଲ୍ ଆତତାୟୀଙ୍କ ସାମ୍ରାଜ୍ୟ ଏଇଠୁଁ ସୁରୁ ହୋଇଗଲା । ସଞ୍ଜ ଛଅଟା ପରେ ଯେତେ ବସ୍, ଲରି, ଯାନ-ବାହନ ଏଇଠୁଁ ପ୍ରାୟ ଛତିଶ କିଲୋମିଟର ରାସ୍ତାରେ ଯାଉଛନ୍ତି ସେଗୁଡ଼ାକୁ ଭାଙ୍ଗି ଜାଳି ଅଙ୍ଗାର କରି ଦଉଛନ୍ତି । ଲୁଟ୍‌ତରାଜ ଚାଲିଛି । ଜୀବନ ରହିବ ବୋଲି କିଛି ଗ୍ୟାରେଣ୍ଟି ନାହିଁ । ବୁଝିଲ । ପୁଲିସ୍‌ର ପହରା ଗାଡି ଦୁ' ଚାରିଟା ମଧ୍ୟ ପୋଡ଼ା ହେଲେଣି । ଏମାନଙ୍କର ଖାସ୍ ମଉଛବ ହେଲା ପୁଲିସ୍‌ଙ୍କ ଉପରେ ଛୁରୀ ଚଳେଇବା । ସିକ୍ୟୁରିଟି ବାଲାଙ୍କୁ ହାଣି ତାଙ୍କୁ ଗୋଡ଼ ଉପରକୁ ଆଉ ମୁଣ୍ଡ ତଳକୁ କରି ଏକାଠି ପନ୍ଦର କୋଡିଏ ଶବକୁ ବର ଓହଳରେ ତୋରଣ କରି ଝୁଲେଇବା । ବାଟୋଇମାନେ, ସମାଜପତିମାନେ ଦେଖନ୍ତୁ । ସାବାସ୍ କରନ୍ତୁ । ଯା' ହଉ ସକାଳ ନ ହେଲା ପର୍ଯ୍ୟନ୍ତ ଆଉ ଏ ବାଟରେ ଯାନବାହାନ

ନଯାଏ । ଡ୍ରାଇଭର କହିଲଣି ତା' ଆଖିଲାଗି ଆସୁଚ । ସେ ଆଗ ସିଟ୍‌ରେ ଶୋଇ ପଡ଼ିଲଣି । ସୂର୍ଯ୍ୟ ଫାଟିଲା ପରେ ଉଠିବ ଆଉ ଦୁ' କପ ଚା ପିଇ ପୁଣି ଯାତ୍ରା ସୁରୁ ହେବ । ବନ୍ଧ୍ୟା ଅସ୍ଥିର ହେଉଚ । ଏ ଯାଏଁ ଆଠଘଣ୍ଟା ମଟରଯାତ୍ରା ଭିତରେ ତା' ଆଖିରେ ପଲକ ପଡ଼ିନ । କେତେବେଳେ ସୁଁ ସୁଁ କରି କାନ୍ଦୁଚ । କେତେବେଳେ ଉନ୍ମାଦିନୀ ଭଳି ଚାରିଆଡ଼କୁ ଚକିତ ଚାହୁଁଚ । ସିଏ ଅଟକିବାକୁ ପ୍ରସ୍ତୁତ ନୁହେଁ । ଛୁଟିଆ ହୋଇ ଦମ୍ ମାରିବାକୁ ତା'ର ଫୁରୁସତ କାହିଁ । ତାର ପ୍ରାଣପିଣ୍ଡ, ଶୋଣିତର କୈବଲ୍ୟ, ନୟନ ପିତୁଳା ଗିରିଧାରୀ ପାଖରେ ନ ପହଞ୍ଚିଲା ଯାଏଁ ସିଏ ଅଟକି ପାରିବ, ଧାଲେଇ ପଡ଼ିବ କେମିତି । ଚାରିଘଣ୍ଟା ଭିତରେ ପହଞ୍ଚିବା ଟେଲିଗ୍ରାମ୍ ପହଞ୍ଚିଲା ଚାରିଦିନ ପରେ । ଗୋଟିଏ ବୋଲି ଧିଇ ଯା'କୁ ନେଇ ପାଠ ପଢ଼େଇ ବାପ ମା' ପରି ହେପାଜତ କରି କମ୍ପ୍ୟୁଟର ଇଞ୍ଜିନିୟର କରି ଏଇ ଦୂର ସହରରେ ଚାକିରି ପାଇଁ ଛାଡ଼ି ଦେଇଥିଲା । ତା'ର କଣ ଘରି ହେଲ ଖରାପ, ଖୁବ୍ ବିପଦ । କିଏ ସବୁ ତା'ର ପ୍ରାଣ ନେଇଯିବାକୁ ଜଗି ବସିଚନ୍ତି, ଛଅଣ ପରି ତା' ମୁଣ୍ଡ ଉପରେ ବନ୍ଦି ଦେଉଚନ୍ତି । ଅପା ମନେ ଆସି ଶୀଘ୍ର ନେଇ ଯା' ବୋଲି ତାର ଆସିଚ । ତା' ନିଜ ଅକ୍ତିଆରରେ ସିଏ ପଳେଇ ଆସି ପାରୁନି କାହିଁକି ? ସାଥି ସହୋଦର ବି କେହି କଣ ଏତେ ବଡ଼ ସହରରେ ନାହାନ୍ତି । ନିର୍ମୀଖି ପିଲାଟା କେଡ଼େ ବିକଳ ହତାଶ ହେଉଥିବ !

ପୁଣି ଗାଡ଼ି ଅଟକିଲା ଏଇଠି । ଆହୁରି ଆଠଘଣ୍ଟା' କଟିବ, ସକାଳ ହେବ । ତା'ପରେ ଯାଇଁ ପୁଣି ଗାଡ଼ି ଚାଲିବ । କି ଅନ୍ଧାରି ଯୁଗ ଇଏ ! କି ବିବଶ ହା ହୁତାଶର ସାମ୍ରାଜ୍ୟ । ଟେଲିଗ୍ରାମ୍‌ଟା ପାଇ ସାରିଲା ପରେ ବନ୍ଧ୍ୟା ଛୁଟିକି ଆସିଚ ମୋ ପାଖକୁ ଆଉ ମୋ ସାର୍ଟ କଲର୍ ଆଉ ବାହାରକୁ ଟାଣି ଓମୁଚି କହି ଚାଲିଚ—

: ଚାଲ ଚାଲମ । ମତେ ଟିକିଏ ପହଞ୍ଚେଇ ଦେଇ ଆସ । ଏକୁଟିଆ ସ୍ତ୍ରୀ ଲୋକଟା ମୁଁ, କଣ କରିବି ମତେ କହ ?

ଚୁପ୍‌ଚାପ୍ ଗମ୍ଭୀର ପ୍ରକୃତିର ଏ ଯାବତ୍ କୁମାରୀ ରହିଥିବା ପ୍ରଖର ଆତ୍ମପ୍ରତ୍ୟୟୀ ବନ୍ଧ୍ୟା ଆଜି ଚଞ୍ଚଳ ହେଉଚ । ମୁଁ ତା'ର ଶୁଭାନୁଧ୍ୟାୟୀ

ବନ୍ଧୁଟିଏ ବୋଲି ଭାବୁଚ । ମୋ ପାଖକୁ ଧାଇଁ ଆସିଚ ଆପଦ ବିପଦରେ ସରକାରୀ କଲେଜର ବେଶ୍ ନାଆଁ କରିଥିବା ଇଂରାଜୀ ଅଧ୍ୟାପିକା ବନ୍ଧ୍ୟା ଦାସ । ଘାବରା ନାଁ ରଘୁବୀରଙ୍କ ପରି ଏଇ ମୌକାରେ ମୁଁ ବଡ଼ାଇ ଦେଲି ପସ୍ତୁର । ଆଗଉଚ ଜଗତ ଉଦ୍ଧାର କରିବା ପନ୍ତ୍ରିଜରେ ।

ଡାହାଣ ପେଣ୍ଟ ପକେଟ୍‌ରେ ବନ୍ଧ୍ୟା ପାଖକୁ ଜଳନ୍ଧରରୁ ଆସିଥିବା ଦ୍ୱିତୀୟ ଟେଲିଗ୍ରାମ୍ ମୋଡ଼ା କାଗଜ ଉପରେ ହାତ ବୁଲଉଚ ମୁଁ । ଏଥିରେ ଖବର ସଂକ୍ଷିପ୍ତ ଆଉ ଭୟାନକ 'ଗିରିଧାରୀ ମରିଯାଇଚ । ତା'ର ଶବ ସତ୍କାରର ବ୍ୟବସ୍ଥା କର' । ସେଇଟା ବନ୍ଧ୍ୟାକୁ ଦେଖା ହେଉନି । ଆଉ କେଇଘଣ୍ଟା ଆଶା ଆଉ ବିଶ୍ୱାସର କୁହୁଡ଼ି ପଛରୁ ସିଏ । ଠକ୍ କରି ମୂର୍ଚ୍ଛା ଯାଇପିବ କାଇଁକି ? ମରିଯାଇଚ, ସରିଯାଇଚ କହି ଘଣ୍ଟାଟାକୁ ଦ'ଗଡ଼ କରି କାଟିଦେଲେ କଣ ଜୀବନ ଜାଇହୁଏ ! ବନ୍ଧ୍ୟା ପିଠିରେ ହାତ ଥାପୁଡ଼େଇ ମୁଁ ତାକୁ ହିମ୍ମତ ଦଉଚ ଯେ, ସବୁ ଗଡ଼ର ପୁଣି ସକାଳ ହୁଏ । ଟିକିଏ ବିଶ୍ରାମ ନେଇଯାଅ । ଅରୁଣ ଉଠିଲା ବେଳକୁ ତ ଗାଡ଼ି ଛୁଟେଇ ଦବା । ବନ୍ଧ୍ୟା ବୁଦ୍ଧିମତୀ ନିଜ ଗୋଡ଼ରେ ନିଜେ ଛିଡ଼ାହୋଇ ପାରିଥିବା କଲିଜାବାଲି ଅଧ୍ୟାପିକା । ଏମିତି ସେମିତି ନୁହେଁ । ତରଳି ଯାଇଥିଲେ ବି ପୁଣି ବଜ୍ରପରି ଚମକି ଉଠିଲାଣି । ଓଠରେ ଛୁଟାଏ ଅବଜ୍ଞାର ହସ ଝଟିଲାଣି । କହୁଚ—

: ଏଇ ନିଷିଦ୍ଧ ଛକଡଣି କଲୋମିଟର ଟପିଗଲେ ତା' ଆରପାଖେ ସେଇ ଖିଲାପୁରର ଦ୍ୟାବା ରଙ୍ଗଭୂମି । ନା । କଣ ? ଯେଉଁଠି ଏକବିଂଶ ଶତାବ୍ଦୀ ଓହ୍ଲେଇ ସାରିଚ । ଆଉ ଏ ପାଖେ ଖାଲି କମର କଷି ତା'ରି ଭିତରେ ପଶିବା ପାଇଁ ଆମେ ଛଟପଟ ହଉଚୁ ! ଲାଗୁଚ ସବୁ ରାସ୍ତାଟାଯାକ ଏକବିଂଶ ଶତାବ୍ଦୀର ଯୋଷଯାତ୍ରାର ପଥ ?

ମୁଁ ଅନ୍ଧାର ଭିତରେ ତା'ର ଚକଚକ ନେଳି ଡୋଳା ଦ'ଟାକୁ ଖୁଣ୍ଟିଲି । ସାପ ଆଖି ପରି ସିଜୁ ବୁଦା ଭିତରୁ ସିଏ ମତେ ସତେକି ଷ୍ଟେଟ ମାରିବା ପୂର୍ବରୁ ପରଖୁଥିଲି । କହୁଥିଲି ମୋ ରକ୍ତ ମିଠା ହେଇଥିବ ନା ଆମ୍ବିଳା ! ମତେ ଭୟ ଲାଗୁଥିଲି ଉତ୍ତର ଦବାକୁ ନୟ : ଡମ କଲିଜାର

ପୂର୍ବ ତାଙ୍କର ପରିଚିତି ଦେବା ଏଇ ବୋ'ଟା ବିକ୍ଷୋରକ ଦୈବବାଣୀରେ ଯଥା—ଗିରିଧାରୀ ଆଉ ନାହାଁନ୍ତି । ପଚାଶର ଗଲା ବଂଶ ଶତାବ୍ଦୀ ସାଙ୍ଗରେ । ତମେ ଏକୁଟିଆ-ଯୁଝିବ ନୂଆ ଶତାବ୍ଦୀ ସାଙ୍ଗରେ । ମୁଁ ବା କାହିଁକି ଏବେ ଏ କଥା କହନ୍ତି । ସୁଖରେ ହଉ କି ପ୍ରମାଦରେ ହଉ ବିନ୍ଧ୍ୟା ଯେ କିଛିଦୂର ମୋ ସାଙ୍ଗରେ ମୋ ବାହୁରେ ଝୁଲି ବାଟ ଚାଲୁ ଏଥିମୁଁ ଯୋଜନା କରିଥିଲି । ଆଜି ତା' ସମ୍ଭବ ।

## ( ଦୁଇ )

ଏମାନଙ୍କ ସାଙ୍ଗରେ ମୋର ପରିଚୟର କାହାଣୀ ଏଇମିତି । ପ୍ରାୟସବୁ ସଞ୍ଜରେ ସାତଟା ବାଜିବା ପାଖାପାଖି କ୍ଲବର ଲନ୍‌ରେ ପହଞ୍ଚି ଯାଆନ୍ତି ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତି; ହାତରେ ଦାମୀ କଳା ସିଙ୍ଗ ତିଆରି ମୋଡ଼ ମୋଡ଼କିଆ ସରୁକ ବାଡ଼ି । ନୂଆ ରୁଚିର ମାଲିକମାନଙ୍କୁ ମେଳ ଖାଉଥିବା ଟ୍ରାଉଜର, ଟି'ସାର୍ଟ, ନଇଲେ ଗୁଡ଼ାଏ ପକେଟ ଏଠି ସେଠି ଓ ପୁଳାଏ ବୋତାମ ଥିବା ରଙ୍ଗ ଉଡ଼ୁଥିବା ଅଳ୍ପ ଲମ୍ବର ଜାମା ପିନ୍ଧିଥିବେ । ବେଶପଟା କହିବା କୋଉଠି ସିଲେଇ ଫାଟି ଉଧାର ମାଗି ଆଣିଲା ପରି ଦିଶୁଥିଲେ ସୁଦ୍ଧା ଲୋକଟାର ଯେ ଏକଦା ଖାନ୍‌ଦାନ କାଏଦା ଥିଲା ଏବଂ ଏବେ ମଧ୍ୟ ଚଳଣିରେ ଗୋଟେ ନିଛକ ଅଭିଜାତ ଚେଷ୍ଟା ଅଛି, ମାନିବାକୁ ପଡ଼ିବ । ମୁଣ୍ଡବାଳ ସବୁ ଫରଫର ବଗପର ପରି ଧଳା ହୋଇଯାଇଥିଲେ ବି ମାଙ୍ଗ ଭାଙ୍ଗି କୁଞ୍ଚି କୁଞ୍ଚିଆ ଲହର ଦେଇ କୁଣ୍ଡା ହୋଇଥିବା ମୁହଁ, ଗାଲ' ଓଠ ଚମ ଧୂଡ଼ୁ ଧୂଡ଼ୁ ଧୂସର । ହେଲେ ଆଖି ହାଳଟାରେ ତେଜ ଅଛି । ଲାଜୁଆ ଲାଜୁଆ ମିଠା ହସ ପୁଣି କ୍ଷଣକରେ ଆପଣାର କରିନେଲା ଭଳି ଗୁହାରି ସିଏ ସମସ୍ତଙ୍କ ଆଡ଼କୁ ବାଣ୍ଟିଦେଇ ପାଦ ପକେଇ ଆସିବ ସଳଖ । ବାଁ'ଆଣ୍ଠୁ କେବେ ଜଖମ ହୋଇଥିଲା ବୋଧହୁଏ ସେଇଯୋଗୁଁ ବାଡ଼ିରେ ଭରଦେଇ ସାମାନ୍ୟ ଟେଙ୍ଗେଇ ଏକ ନିର୍ଦ୍ଦିଷ୍ଟ ସାଆନ୍ତିଆ ଭଙ୍ଗୀରେ ସିଏ ବାଟ ଚାଲନ୍ତି । ବାର୍‌ର ଶେଷମୁଣ୍ଡ କଣ୍ଟିଆଁ ଉଚ୍ଚ ଷ୍ଟୁଲ ଉପରେ ଲୁହିନ ହୋଇ ବସନ୍ତି ଘଣ୍ଟା ଘଣ୍ଟା ଧରି । କିନ୍ତୁ ଯେମିତି ସିଏ କ୍ଲବ ଆସରରେ ପହଞ୍ଚି ଯାଆନ୍ତି, ସମସ୍ତେ ଯେମିତି କିଛିଟା ଅପ୍ରସ୍ତୁତ ହେଲା ଭଳି କରିଛଡ଼ାଦେଇ ତାଙ୍କଠୁ ଦୂରେଇ

ବୁଡ଼ିରହି ରହନ୍ତି । ତାଙ୍କ ଆଡ଼କୁ ଚାହିଁ ଠାର୍‌ଠୁର୍‌ କଥା ହୁଅନ୍ତି । ତାଙ୍କୁ ହି ଉଦ୍ଦେଶ୍ୟ କରି ଚୁପା ଗଳାରେ ତମାମ୍‌ ବ୍ୟଙ୍ଗ ପରିହାସ ବି ହୁଏ । ବାର୍‌ମ୍ୟାନ୍‌ ମତେ ଚିହ୍ନେଇ ଦେଇଥିଲା ଯେ ଇଏ ହଉଛନ୍ତି ବିଷନ୍‌ ସାହେବ । ଖୁବ୍‌ ପଇସାବାଲା ବଡ଼ଲୋକ ଥିଲେ । ମସ୍ତ ମସ୍ତ କମ୍ପାନୀର ଲିଆଜନ୍‌ କରୁଥିଲେ । ଦିନ ଥିଲା କ୍ଲବ୍‌ ଗେଟ୍‌ ମୁହଁରେ ତାଙ୍କ ଗାଡ଼ି ପେଁ ପେଁ କଲାମାତ୍ରେ ମସ୍ତ ମସ୍ତ ହାକିମ ହୁକୁମା, ତାଙ୍କ ସ୍ତ୍ରୀ ପିଲାକବିଲା, ବିଜନେସ ବାଲା, ଖେଳୁଆଡ଼୍‌, ସହରର ନାଉଁଆ ବାରିଷ୍ଟର୍‌, ପ୍ରଫେସର୍‌, ଡାକ୍ତର, ଜଜ୍‌, କଣ୍ଟ୍ରାକ୍ଟର ଯେତେ କ୍ଲବ୍‌ରେ ଥିବେ ସବୁ ଦଉଡ଼ିବେ ଗେଟ ମୁହଁକୁ ବିଷନ୍‌ ସାହେବଙ୍କୁ ପାଛୋଟି ଆଣିବା ପାଇଁ । ପ୍ରତିଯୋଗିତା ଜମିଯାଏ କିଏ ତାଙ୍କ ସଙ୍ଗରେ ଆଗେ କରମର୍ଦ୍ଦନ କରିବ ବା କଣ୍ଠଲଗ୍ନ ହେବ । ଲୋକଟାର ହୃଦୟ ଆଉ କଲିଜା ଦି'ଟା ଯାକ ଭରି ଶକ୍ତ ଆଉ ଚଉଡ଼ା । ତା'ଠାଣିରେ କମିଆଁ ଥିଲା ଏମିତି ଯେ, ଲୋକେ ତା' ପାଖକୁ ଓଟାରି ହୋଇ ଆସୁଥିଲେ । ସବୁ ରାତିରେ ନଗଦ ହଜାରେ ଦି' ହଜାର ଖର୍ଚ୍ଚ କରି ଫୁର୍ତ୍ତିରେ ଉଡ଼େଇ ଦେବ । ସମସ୍ତଙ୍କୁ ଅଫର, ସମସ୍ତଙ୍କୁ ତୋଫା, ପ୍ରେଜେଣ୍ଟସ୍‌; ସବୁ ବଏ ବେଅରରଙ୍କୁ ଦଶ୍‌ ପଚାଶ୍‌ ରୁପେୟା ବକ୍‌ସିସ୍‌ । ହେଲେ ବୟସ ପଚାଶ ପୂରୁ ନ ପୂରୁଣୁ ସବୁ ଚାଲିଗଲା । ମାଲ୍‌ମତା, ଚାକିରି, କଣ୍ଟାକ୍ଟ୍‌, ଗାଡ଼ିସବୁ ଉଭେଇଗଲା । ଯୋଉ ମନ୍ତ୍ରୀ, ହାକିମ, ଏମ୍‌. ପି, ତାଙ୍କ ହାତ ପତରକୁ ଚାହିଁଥିଲେ ସେମାନେ ଏବେ ଚିହ୍ନିପାରୁ ନାହାନ୍ତି । ବାଟ ଫେରେଇ ଖସି ଯାଉଛନ୍ତି । ସହରର ଯୋଗଜନ୍ମା ବିଚନବାର୍ଯ୍ୟ ବିଷନ୍‌ ସାହେବ ଆଉ ପହିଲା ନମ୍ବର ଖେଳଓ୍ୱାଡ଼୍‌ ନୁହେଁ । ଦୁଣଖିଆ ରୋବଟ୍‌ ଠାଏ-ଠୁକ୍‌ ଠୁକ୍‌ ଚାଲୁଛି । ଧୀର ଗଳାରେ ପଦେ ଦି'ପଦ କଥା କହୁଛି । ଯେମିତି ଦୃଶ୍ୟାନ୍ତରାଳରେ ଥିବା ଆଉ ଗୋଟେ ଯାନ୍ତ୍ରିକ ରିମୋଟ୍‌ କଣ୍ଟ୍ରୋଲର ଇସାରାରେ ।

ସିଏ ଏବେ ଆସିଗଲେ ପାଖାପାଖି ସମସ୍ତଙ୍କୁ ଡର । କାଳେ ଉଧାର ମାଗି ଦବକି ! ଏମିତି ଓଜରେ କହିବ ଯେ ମନା କଲେ ନିଜ ଇଜ୍ଜତ୍‌ ଚାଲିଯିବ । ଡ୍ରିଙ୍କ୍‌ ମାଗିଦବ, ସିଗ୍ରେଟ୍‌ ମାଗିବ । ଗାଡ଼ିରେ ଲିଫ୍‌ଟ୍‌ ମାଗିବ ।

ଏଗୁଡ଼ା ଯେମିତି ତା'ର ପୁରୁଣା ପୁଞ୍ଜି ଲଗାଣର ଜବରଦସ୍ତ ଡିଭିଡେଣ୍ଡ୍‌, ଉଧାର ଅସୁଲ । ଏକ ରକମ ତା' ସେ ଠିକ୍ ନୁହେଁ ମନା ବା କିଏ କରି ପାରିବ !

ବିଶୁଦ୍ଧ ଇଂରାଜୀରେ ଘର ଥାଃଠ୍ ଉଚ୍ଚାରଣରେ ମତେ ସମ୍ବୋଧନ କରୁଚନ୍ତି—

: ଗୋଟାଏ ନୂଆ ମୁହଁ ଦେଖୁଚି । ପାରିବାର ଯୁବକ । ବିଚକ୍ଷଣ । ମୁଁ ତମର ବନ୍ଧୁତ୍ୱ ଲୋଡ଼େ । କଣ କହୁଚନ୍ତି ? ହ୍ୟାଭ୍ ଏ ଡ୍ରିଙ୍କ୍ ।

ସେଦିନୁଁ ମୁଁ ବିଷନ୍ ସିଂ ସାମନ୍ତଙ୍କ ସନ୍ନିକଟ ହେଲି ଆଉ ତାଙ୍କର ଭୂତ ବର୍ତ୍ତମାନକୁ ବିବକ୍ଷା କରିବାକୁ ତତ୍ପର ହେଲି ।

ବିଷନ୍ ସାହେବଙ୍କର ଦୁଇଟି ଅପତ୍ୟ । ବିନ୍ଧ୍ୟା ଅଉ ହିରଣ୍ଣଧ୍ୱା ! ପତ୍ନୀ ମୃତ ।

ମନ ଉଣା କରି ନିଜକୁ ଖାଲି ଶ୍ରେଷ୍ଠ ଗୌଣ ବୋଲି ଭାବନା ବିହ୍ୱଳ ହୋଇ ଘରୁ ଦାଣ୍ଡପିଣ୍ଡା, ଦାଣ୍ଡପିଣ୍ଡାରୁ ପାଚେରି ଦାଡ଼ ପୋଖରୀ ହୁଡ଼ା ଏପାଖ ସେପାଖ ବୁଲୁଚି, ଉଠ୍ ବସ୍ ହେଉଚି ବିନ୍ଧ୍ୟା । ବାପାଙ୍କର ଆଉ ଘର ସାଙ୍ଗରେ ସମ୍ପର୍କ ନାହିଁ । ଯେଉଁଦିନୁ ସେ ବେକାର ହୋଇଗଲେ, କମ୍ପାନୀ ବାଲାଏ କାମରୁ ଅଲଗା କରିଦେଇ ଲକ୍ଷେ ଟଙ୍କା ଏକତରଫା ମୁଣ୍ଡିମରା ପେନ୍‌ସନ୍ ଦେଇ ଦେଲେ । ଏତକ ପୁଞ୍ଜି ପୁଣି ସେଇ ପୁରୁଣା ଢଙ୍ଗରେ ଖର୍ଚ୍ଚ ଚାଲିଲା ଦ' ହାତିଆ । ଦିନ କେଇଟାରେ ପଇସା ଛୁ ଆଉ ଆଡ଼ମ୍ବର ଆଟୋପ କୁଆପଥର ପରି ମିଳେଇ ଗଲା ଶୁଖିଲା ଭୂଇଁରେ । ବିଷନ୍ ସାହେବ୍ ସକାଳ ସାତରୁ କୁଆଡ଼େ ପଳେଇ ଯାଆନ୍ତି । ଡେର୍ ରାତିରେ ପୁଣି ଟଳ ଟଳ ଘରକୁ ଫେରନ୍ତି । ଆଉ କଣ ଟିକିଏ ପାଟିରେ ପକେଇ ଲମ୍ବ ହୋଇ ଶୋଇ ଯାଆନ୍ତି । କହନ୍ତି ଝିଅ ହଉଚି ମୋର ଆଲ୍ଲାଦିନ୍ ଲାମ୍ପ୍, ଲକ୍ଷ୍ମୀ ଠାକୁରାଣୀ, ଏ ଘରର ମୂରବି । ଯୁଏଁ ଗୁଜୁରାଣ ମେଣ୍ଟିଯିବ । ସିଏ ଥିଲେ ସଂସାର ଠିକ୍ ଚାଲିବ ଠୁକୁ ଠୁକୁ । ପୁଣି ସିଏ ସାନ ଭାଇଟାକୁ ତ ମେଳକ୍ ଭଲ ମଣିଷ କରିଦବ । ବିଚକ୍ଷଣା ବିନ୍ଧ୍ୟା । ବିଷନ୍ ସାମନ୍ତର ଗେହ୍ଲା ଝିଅଟି । ଅନାଟନର ଚରମ ଦୁର୍ଦ୍ଦିନରେ ବିନ୍ଧ୍ୟା ମଥାକୁ, ଘୁଡକୁ ଟାଣକରି ପଦାକୁ

ବାହାରିଲା। ଏଠି ସେଠି ଦିନାକେତେ ଦି' ଘଣ୍ଟା ପାର୍ଟ ଟାଇମ୍ ସାନ ଗୃହକର କଲା। ଘର ଭରସି ଶିକ୍ଷାଯୁବତୀର ଶିଡ଼ି ଚଢ଼ିଲା। ବଡ଼ ବଡ଼ ଡ଼ିଗ୍ରୀ ଡକ୍ଟରେଟ୍ ପାଇଲା—ଆଜି ଏକନା ଅଧ୍ୟାପିକା। ସାନଭାଇ ଚଗଲା ଗିରିଧାରୀ ସାମନ୍ତ ବି ତା'ରି କାନ୍ଧରେ ଲଟକି ବଢ଼ୁଲାପରି ଉଠିଲା ଉପରକୁ। ଅବିକା କମ୍ପ୍ୟୁଟର ବିଜ୍ଞାନର ବେଶ୍ ଆସ୍ଥାବାନ ଯୁବ ଇଞ୍ଜିନିୟର୍। ବାପା ଏ ଦି'ଜଣଙ୍କୁ ଦେଖିଲେ କଷ୍ଟ କହନ୍ତିନ। ଖାଲି ଟିକିଏ ମୁରୁକି ହସି ଦିଅନ୍ତି। ପିଠି ମଥା ଆଉଁସି ଦେଇ ଦିଅନ୍ତି କେବେ କେମିତି। ତାଙ୍କର କାହା ପ୍ରତି କର୍ତ୍ତବ୍ୟ କଣ ଥାଇପାରେ ଆଉ ସିଏ ତ ସବୁଦିନର ଉଡ଼ାପକ୍ଷୀ। ଏବେ ଦିବାସ୍ୱପ୍ନକୁ ଉଖାରି ଗଲା ଦିନର ପାଉଁଶ ଅଣ୍ଡାଳୁଛନ୍ତି।

ସଂସାର ସାଙ୍ଗରେ ମୁହାଁମୁହିଁ ମୁକାବିଲା କରିବା ଆଗରୁ ଖୁବ୍ ତାଲିମ ପାଇଛି ସିଏ ପଲ୍ଲବୀଠୁଁ। ବାପାଙ୍କ ସଂଗରେ ବେଳେବେଳେ ଅଙ୍କଲ୍ ଅଙ୍କଲ୍ କହି ଗେହ୍ଲେଇ ହେଉ ଏଇ ପଲ୍ଲବୀ ଅପା ତାଙ୍କ ଘରକୁ କେତେଥର ଆସିଛି। ଘରି ଆଗଚଲା ଝିଅ। କଥା କହିବ ତ ବାଠୁଳି ବାଜିବନି। ବାପାଙ୍କର କୋଉ କୋଇଲା ବ୍ୟବସାୟୀ ସାଙ୍ଗ ମେହେଟା ବାବୁ ଥିଲେ। ଦଶବର୍ଷ ହେଲା ମଲେଣି। ଏବେ ତାଙ୍କର ବେଉସା ଏଇ ପଲ୍ଲବୀ ମେହେଟା ବୁଝନ୍ତି। ଏତେ ବଡ଼ ପରିବାର ଆଉ ଗୋଟା ଷ୍ଟେଟରେ ବିସ୍ତୃତ ହୋଇ ପଡ଼ିଥିବା ବିଜିନେସ୍‌ର ଝମେଲା ସବୁ ସେ ମୁଠି ଭିତରେ ସମ୍ଭାଳୁଛନ୍ତି। ବାପା ବି ତାଙ୍କର ଲିଆଜନ୍ କାମ କରୁଥିଲେ ଦିନାକେତେ। ବଡ଼ବଡ଼ିଆ ହାକିମ ହୁକୁମା, ରାଜମଣ୍ଡ କାର୍ପଟ୍‌ଦାରମାନଙ୍କ ସାଙ୍ଗରେ ପଲ୍ଲବୀ କମ୍ପାନୀର ଯୋଗାଯୋଗ କରିଚନ୍ତି, ଅସୁବିଧାକୁ ସୁବିଧା କରିଚନ୍ତି। ପିମ୍ପୁଡ଼ି ନ ଗଳି ପାରିବା ରାସ୍ତାରେ ହାତୀ ପାର କରେଇବାର ଟେକ୍ନିକ୍ ଶିଖେଇଚନ୍ତି। ସେଇ ଯୋଗେ ବାପାଙ୍କ ପାଇଁ ଝିଅଟାର ଏତେ ହମ୍ଦର୍ଦ୍ଦି। ବାପା ଅକାମୀ ହୋଇଗଲେ—କୋଇଲା ଡିଲ୍‌ରେ ବଦନାମ ହୋଇଗଲେ। ତେବେ ପଲ୍ଲବୀ ତାଙ୍କୁ ସାହା ହୋଇଛି ନିତାନ୍ତ ଅବେଳରେ, ଦୁର୍ଦ୍ଦିନରେ। କେବେ କେମିତି ଶହେ ଦି'ଶହ ତାଙ୍କ ପକେଟରେ ଗୁଞ୍ଜି ଦେଇଛି।

କିନ୍ତୁ ମନେ କରନା ଅଙ୍କଲ୍, ମୁଁ ବି ତମର ଝିଅ ବୋଲି ଭାବ । ବାପାଙ୍କ ଗମ୍ଭୀର ପରାସ୍ତ ମୁଖ ଠାଣିରେ ପଲ୍ଲବୀର ଉପସ୍ଥିତି ଯେମିତି ମୁରୁକି ହସାର ସମ୍ଭାବନା ଟିକିଏ ଉଙ୍କୁଠାଇ ଦିଏ ।

: ହଉ ଝିଅ । ବରାବର ଆସୁଥିବୁ । ବନ୍ଧ୍ୟାକୁ ଟିକିଏ ହିମ୍ମତ ଦେଉଥିବୁ । ମା ଛେଉଣ୍ଡ ପିଲାଟା । ଏତେବଡ଼ ସଂସାର ବୋଝ ତା'ର ଉପରେ ।

ପଲ୍ଲବୀ ସେଦିନ କୁଆଡ଼ୁ ଧଇଁ ସଇଁ ହୋଇ ଆସି କହିଲା—

: ବନ୍ଧ୍ୟା, ଆଇ ଆମ୍ ଡ୍ୟାମ୍ ଟାୟାର୍ଡ଼ । ମତେ ଗ୍ଲାସେ ଲେମ୍ବୁ ପାଣି ଦେ । ମୁଁ ରେସ୍ ସାଇକେଲ ଚଢ଼ି ଏଗାର କିଲୋମିଟର ଆସିଛି ପୁରା ଦମ୍‌ରେ । ଏକ୍‌ସର୍‌ସାଇଜ କରୁଛି । ଦେଖୁନୁ କେମିତି ଚର୍ବି ସବୁ ତରଳି ସ୍ଲିମ ହୋଇଗଲିଣି । ଭାରି ଦରକାର ପଡ଼ୁଛି ଫିଗରକୁ ସଲାମତ ରଖିବା ଏ ଯୁଗରେ ! ତୁ ମଉନ ମୁହାଁ ନାକ କାନ୍ଦୁଣୀ ଫିଲୋସଫର ଏସବୁ ବୁଝିବାକୁ ଡେରି ଲାଗିବ । ଅଣ୍ଟା ଭିଡ଼ି ବାହାରି ପଡ଼ ମୋ ସାଙ୍ଗରେ । ଦେଖିବୁ ଚକଚକିଆ ସହରର ଫାଳିକିଆ ହସ କେମିତି ତୋର ଅଣ୍ଟିରେ ମୁହଁ ଲୁଚେଇ ନିଆଶ୍ରା ବଧବାର ବାହାନା କାନ୍ଦ ପାଲଟି ଯାଇଛି । ସମସ୍ତେ ନାଚୁଛନ୍ତି ତୋ ଅଙ୍ଗୁଠି ଇସାରାରେ ।

ଦି' ଗ୍ଲାସ ଲେମ୍ବୁପାଣି ଢକ୍ ଢକ୍ ପିଇଦବା ଭିତରେ ବନ୍ଧ୍ୟା ପଦୁଟିଏ କଥା କହିଥିଲା ।

: ମୁଁ ମୋ ଯୋଜନା ଆରମ୍ଭ କରିବି ନିଜ ମର୍ଜିରେ, ନିଜ ବୁଦ୍ଧିରେ । ତମ ବୁଦ୍ଧିରେ ଘୋଡ଼ା ଚଢ଼ିବାର ବେଳ ଏଯାଏ ଆସିନି ।

: ଏତେ ଏତେ ଆଖି କରି ପଲ୍ଲବୀ ତା' ଆଡ଼େ ଚାହିଁଲା । ପୁଣି କଣ ଭାବି କେଜାଣି ଅସରାଏ ହସରେ ଉଚ୍ଛୁଳି ପଡ଼ିଲା, ବନ୍ଧ୍ୟାର କାନ୍ଧ ଧଇଟାକୁ ଜୋର୍‌ରେ ହଲେଇ ଦେଇ କହିଲା—

: ଦେଖ୍ ମୁଁ କିନ୍ତୁ ହର୍‌ଗିଜ ଲେମ୍ବୁ ପାଣି ପିଇବାକୁ ଏଇଠିକି ଆସିବି । ତୋର ପସନ୍ଦ ହଉ ନ ହଉ, ମୁଁ ଜାଣିବାକୁ ଚାହେଁ କେମିତି ତୁ ଆଗଉଚୁ ।

ଏକବାରେ ଶୂନ ସଂଖ୍ୟାରୁ । ଇଣ୍ଟରେଷ୍ଟିଂ, ଲୁ ମୋର ଗୋଟେ କେଶ୍ ଷ୍ଟଡ଼ି । ଯେତେବେଳେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ଯିବୁ, ଟାରଜେଟ୍‌ର ବୁଲ୍‌ସ୍ ଆଇକୁ ହିଟ୍ କରିବୁ, ସେତିକବେଳେ ଆମେ ଦୁହେଁ ଆପଣା ଆପଣାର ଟ୍ରେଡ୍ ସିକ୍ରେଟ୍ ଖୋଲିବା । ଡେର୍ ଗପିବା, କଥାହବା, ହିସାବ ଯୋଡ଼ିବା, ବାଲାନ୍‌ସ ସିଟ୍ ତିଆରି କରିବା, ଯୁଝିବାର, ଜିତିବାର, ପରାସ୍ତ ହେବ ର ନାଁ କଣ ।

ଝରଣ୍ୟାର ଫିକା ହସ ଏପର୍ଯ୍ୟନ୍ତ ଶତକଡ଼ା ଶହେ ଆତ୍ମପ୍ରତ୍ୟୟର ସଙ୍କେତ ଦେଉ ନ ଥିଲା । ତଥାପି ଜମୁଟ ଅଭିମାନରେ ତା'ର ହ ଟମୁଠା ହ'ଠା ଠାଣି ହୋଇ ଆସୁଥିଲା; ସେ ପାରିବ । ସବୁ ପାରିବ । କିନ୍ତୁ ପଲ୍ଲବୀ ପରି ଯମ୍ପତି ବୃନ୍ଦଆଦର ଅପ୍ରସର ଆଲିଙ୍ଗନ ଉର୍ଦ୍ଧ୍ୱରେ ସେ ରହିବାକୁ ବାଧ୍ୟ । ତା'ର ଅଝଟ ହବାକୁ ଗ୍ଲନ୍ ଷେମ୍ ନବାକୁ ବେଳ କାହିଁ, ମୌକା କାହିଁ । ଆରମ୍ଭରୁ ତ ମାସକର ଘର ଖର୍ଚ୍ଚ, ଭାଇର ପାଠପଢ଼ା ଖର୍ଚ୍ଚ, ବାପାଙ୍କ ଖର୍ଚ୍ଚର ବ୍ୟବସ୍ଥା ହବା ଦରକାର । ତା'ପରେ ଯାଇ ଆତସବାଜିର କଳ୍ପନା କରିଯାଇ ପାରେ ।

## ( ତିନି )

ଏକଲା ଝୁଲିବା ଭାରି କଷ୍ଟ । ତେବେ ହରନ୍ ବାବୁର ଝିଅ ବୋଲି ଜଣେ ଦୁ'ଜଣ କର୍ପୋରେସନ୍ ପରିଚାଳକ ତାକୁ ଚଳିଗଲ ଭଲ ମାସିକିଆ ଦରମାରେ ଏପ୍ରେଣ୍ଟିସ୍ ଭାବେ ଦପ୍ତର କାମରେ ଲଗେଇ ଦେଲେ । ପଢ଼ା-ପଢ଼ିରେ ଧାଠା ହେଲାନି । ଅଧ୍ୟାପିକା ହେଲା ପର୍ଯ୍ୟନ୍ତ ବେଦମ୍ ଅଫିସ୍ ଆଉ କଲେଜ ଦୌଡ଼ା ତା' ସାଙ୍ଗରେ ପୁଣି ଘରକାମ ତାକୁ ଅନ୍ତଃଶ୍ୱାସୀ କରି ପକଉଥିଲା । ହେଲେ ଭାରି ଚମତ୍କାର ଲାଗୁଥିଲା ଏଇ ସମୁଦ୍ର ମନ୍ଥନ । ପିୟୂଷ ବାହାରିଲା ତ । ହେଲେ ହଠାତ୍ ଅଧ୍ୟାପିକା ଝରଣ୍ୟା ଦାସ ଆବିଷ୍କାର କଲେ ଯେ ତାଙ୍କ ନୟନ ପିତୁଳା ଅଠର ବର୍ଷର ସାନଭାଇ ଅଧ୍ୟୟନ କଲେଜ ନଯାଇ ଆଉ କୋଉଠି ଡ୍ରଗ୍‌ସ୍ ଖାଉଚି କି ଫାଜଲାମି କରୁଚି । ତାଗିଦ୍ କଲାରୁ କହୁଚି—

ଆଉ ମିଣ୍ଡି ବାକ୍ୟ କହି ଲାଭ ନାହିଁ । ଦୁନିଆଁ କୁଆଡ଼େ ଗଲାଣି ଦେଖୁନ ! ଭବିଷ୍ୟତ ଗଢ଼ିବାକୁ ହେଲେ, ମଣିଷ ପରି ଇଜ୍ଜତ ଅର୍ଜିବାକୁ

ହେଲେ କ୍ଲାସ୍‌ରୁମ୍ ପୋଥି ବାଇଗଣ ଗ୍ରୁଡ଼ ଅସଲ ହଟଚମଟ କମିଆଁ ଅଧିଗତ କରିବାକୁ ପଡ଼ିବ । ପରୀକ୍ଷାରେ ଭଲ ନମ୍ବର ରଖି ପାଶ୍ କରିବାରେ ଅସୁବିଧା ନାହିଁ । ତା' ପାଇଁ ବ୍ୟବସ୍ଥା ହେଉଛି ଯେମିତି ଖାତାସବୁ ପରୀକ୍ଷା ହଲ୍‌ରୁ ଆସି ବାହାରେ ଲେଖା ହୋଇ ପୁଣି ପରୀକ୍ଷା ହଲକୁ ଫେରିଯିବ । ପରୀକ୍ଷକଙ୍କୁ ଧରାଧରି କରି ନରମ ଗରମ ବଦ୍ୟାରେ ଭଲ ନମ୍ବର ପଡ଼ିବାର ବ୍ୟବସ୍ଥା ହୋଇ ସାରିଛି । ତମେ ମୁଣ୍ଡ ଖରାପ କରନା ଅପା । ଏସବୁ ତମ ଭଳି ଅର୍ଥୋଡକ୍ସ କୂପମଣ୍ଡୂକ ସଂସ୍କାରୀ ଲୋକ ବୁଝି ପାରିବେନି । ଏଇ ଦେଖ ଆମର ଗୋଟେ ପରୋପକାରୀ ଭଲ୍ୟୁଣ୍ଟାରୀ ସଂସ୍ଥା କରା ହେଉଛି । ସହରରେ ଖୁବ ପପୁଲାର୍ ଏ ସଂସ୍ଥା । 'ୟଙ୍ଗ୍ ମେନସ୍ ଭିଜିଲ୍ୟାଣ୍ଟ' । ଲୋକମାନଙ୍କର କାମ ଧନ୍ଦା ଏତେ ଯେ ଦରକାର ବେଳକୁ ପ୍ରସେସନ୍ କରିବାକୁ କି ମାଇକ ଧରି ପ୍ଲାକାର୍ଡ ହଲେଇ ଆଖି ଦୃଶିଆ ଡେମନ୍‌ଷ୍ଟ୍ରେସନ୍ କରିବାକୁ ସେମିତିକା ଇଜ୍ଜତ୍‌ଦା'ର୍ ପୌରୁଷ ଥିବା ନୌଯବାନ୍ ଏ ଯୁଗରେ ମିଳୁ ନାହାନ୍ତି । ଆମ ସଂସ୍ଥାର ପ୍ରାୟ ତିନିଶହ ସଭ୍ୟ ଚବିଶି ଘଣ୍ଟା ପ୍ରସ୍ତୁତ ଅଛନ୍ତି । ମାଲ୍ ପକେଇବ ତ ଜଣ ପିଛୁ ଘଣ୍ଟାରେ ଦଶଟଙ୍କା, ଆମେ ଗୁଳିଲୁ ଧାଡ଼ି ବାନ୍ଧି ଥାଣ୍ଟ୍‌ରେ । ରାଜନୀତି ଦଳ ହୁଅନ୍ତୁ, ସରକାରୀ କି ବିରୋଧୀ ଦଳ, ବାବାଜି ହରିବୋଲିଆ, କୀର୍ତ୍ତନ ଭଜନ, ଖୋଳ ତାଳ, ଗଜେଶ୍, ମହେଶ୍, ଯେତେ ଭୋଗୀ ଯୋଗୀ ସ୍ୱଦେଶୀ କୃଷ୍ଣାବତାର ଆମଦାନୀ ଯାହା ତାହାର ଦରକାର ଶୋଭାଯାତ୍ରାର ଥାଉ ପୁରା କାୟମନବାକ୍ୟରେ ତାଙ୍କରି ଆଦର୍ଶ ଆଉ କୁହାଟକୁ ପକ୍କା ରିହର୍ସଲ୍ କରି ଏମିତି ପ୍ରସେସନ୍ ଛାଡ଼ା କରି ଦେବୁ ଯେ ଖବର କାଗଜ ବାଲା, ରେଡ଼ିଓ ଟି.ଭି. ବାଲା ତାଟକା ହୋଇଯିବେ ।

ବନ୍ୟା ହାତରୁ ପ୍ରାୟ ଦଶ ବାର ଥର ବ୍ରହ୍ମଗୁପୁଡ଼ା ଖାଇ ସାରିଲା ପରେ ମଧ୍ୟ ଗଲା ଦୁ' ବରଷ ଭିତରେ ଗିରିଧାରୀର କୌଣସି ଲକ୍ଷ୍ୟଣୀୟ ପରିବର୍ତ୍ତନ ନାହିଁ । ସିଏ ବି ତା' ବାଟରେ କଣଉକର୍ମା ହବ । କହୁଛି—

ଅପା, ତମେ ବ୍ୟସ୍ତ ହୁଅନା ! କିଛି କୁଆଡ଼େ ବିଗିଡ଼ି ଯାଏନି ସଂସାରରେ । ସବୁ ଅକର୍ମକୁ ସୁକର୍ମ ଫଳ ଦବା ପାଇଁ ମାର୍ଗ ତିଆରି ହେଇ ଯାଉଛି । ବେକାରମାନେ କେମିତି ସୁସ୍ଥ, ସମାଜିକ ନିଷ୍ଠାବାନ, ଉପାର୍ଜ୍ଜନକ୍ଷମ

ନାଗରିକ ହେବେ ତାର ବାଟ ସିଧା । ଗୁଣ୍ଡକରଟିଏ ପାଇବ, ଠିକଣାଟିଏ ପାଇବ, ବେଉସା କରିବାକୁ ତ ପଡ଼ିଲେ କିଛି ମୋଟା ମାଲ୍ ପଇଠ କରିବାକୁ ହେବ । ନଇଲେ ଭକ୍ତ ମାର୍ଗ । ବିଧାୟକ କି ମନ୍ତ୍ରୀ କି ପାର୍ଟି କାର୍ଯ୍ୟକର୍ତ୍ତାଙ୍କୁ କେବେକେବେ ହାତ କରିବାକୁ ହେବ । ସୁପାରିଶ ଆଣିବାକୁ ହେବ । ସେତିକିରେ ହେବନି । ଯୋଉ ହାକିମ ଲୋକ ବାଛିବା ପାଇଁ ଇଣ୍ଟରଭ୍ୟୁ କରିବ କି ପରୀକ୍ଷା କରିବ ତାକୁ ବି ଭଲ କରି ଧମକ୍ ଚମକ୍ କରିବା ଦରକାର । ସାଙ୍ଗକୁ କିଛି ମୋହମତ ହାତ ପଇଠ କରି ପାରିଲେ ଭଲ । ଅସଲ୍ କଥା କଣ କୁହ ଅପା । ଏକବିଂଶ ଶତାବ୍ଦୀ ଏଇ ପହଞ୍ଚି ଗଲା ଧର । ନେତାମାନେ, ମହନ୍ତ ମହାରାଜା-ମାନେ କହୁଚନ୍ତି ଯେ, ନୂଆ ଶତାବ୍ଦୀରେ ମଣିଷର ଭୋକ, ଭେକ ହାବଭାବ ସବୁ ପାଲଟି ଯିବ । ରେଳଗାଡ଼ି ଠିକ୍ ସମୟରେ ଚାଲିବ । ଡାକତାର ଯୋଗା-ଯୋଗ ଟିପ ମାଇଲା ମାତ୍ରେ ହୋଇଯିବ । ବଡ଼ଲୋକ, ସାନଲୋକ, ଏତେ ସଲମ ଜିନିସ, ଗୋଳିଆ ଧପଡ଼ାବାଜୀ, ଲାଞ୍ଚ ଉକୋଚ, ଧରାଧରି, ଚାଞ୍ଚଠେରି ପର୍ସେଣ୍ଟେଜ୍ ଫରକ ସବୁ ଉଭେଇଯିବ । ଖବର୍‌କାଗଜ ବାଲାଏ ଆଉ କାଙ୍କୁ ଫାନ୍ଦରେ ପକେଇ ମାଲ୍ ଖସେଇ ନପାରି ଗୁଡ଼ାଏ ଏଣ୍ଡୁତେଣ୍ଡୁ ବଦ୍‌ନାମ ଖଞ୍ଜିବାର ଖୋରାକ ପାଇବେନି, ଠକଠାକ୍ ମରିଯିବେ । ବାର୍, ମଦ ଦୋକାନ, ପଞ୍ଚ ତାରକାଯୁକ୍ତ ହୋଟେଲ ସବୁ ଯେହେତୁ ବନ୍ଦ ହୋଇ ଯାଇଥିବ, ମାହାଳିଆ ଖାଇବା ପିଇବା ଅଯୁସ କରିବାକୁ କାଁ ପାଖରେ ଚୋରାମାଲ୍ ଅଧିକା ଥିବ ଯେ ଦବ ! ପୁଣି ଦରକାର ଅନୁସାରେ ମାସୁଆରି ସଉଦା ସମସ୍ତଙ୍କ ଘରେ ସର୍କାରୀ ଗାଡ଼ିରେ ପହଞ୍ଚି ଯିବ । ଯେତେ ଟୋକା ଏବେ ରାସ୍ତା ଘାଟରେ ସାଲୁବାଲୁ ହଉଚନ୍ତି ତାଙ୍କୁ ବଡ଼ବଡ଼ କାରଖାନା, କଲେଜ, ସ୍କୁଲ, ବନ୍ଦୀନାଗାରରେ ବନ୍ଦ କରି ଦିଆଯିବ । ଆଉ କୁହାଯିବ ଯେ ମୁଫତ୍ ଖାଇବାକୁ ମିଳିବ, ପିନ୍ଧିବାକୁ ମିଳିବ । ଖେଳ କସରତ ବି ହେବ । କିନ୍ତୁ ଆଠଘଣ୍ଟା ଦୈନିକ ଅଲବତ୍ କାମ କରିବାକୁ ହେବ । ବଳରେ କି ଶିଳ୍ପରେ ହଉ ।

: ଆଉ ସବୁଠୁ ମଜା କଥା କଣ ହେବ ଜାଣିଚ ଅପା ? ବିଧାନସଭା କି ଲୋକସଭାରେ ଯେତେ ଗର୍ଜନ ତର୍ଜନ ଶୁଭୁଚି, ଟେବୁଲ୍ ଗୋଡ଼, ଚପଲ ଫଟକା ବୋମା ଦୁଇ ବିରୋଧୀ ଦଳ ଭିତରେ ଫୋପଡ଼ା ଫିଙ୍ଗା ହଉଚି ସେ

ସବୁ ହୋଇପାରିବନି । କାଇଁକନା ଅଧ୍ୟାପକମାନେ ଏଭଳି ମୋଟା, ପେଟୁଆ, ଚନ୍ଦା, ଗୋଲଗାଲ, ତାଜା, ବଳୁଆ ହୋଇ ଆଉ ନଥିବେ । ସବୁ କୃଶ ହୋଇଯିବେ ଚ୍ୟବନ ଋଷିଙ୍କ ପରି । ଖାଲି ଦେଶର କଥା ସମାଜ କଥା ଭାଲି ଭାଲି । ଏବେ ଯେମିତି ଜଣେ ଖବରକାଗଜ ସମ୍ପାଦକ କେଉଜଣ ପାରିବାର ଅଧ୍ୟାପକଙ୍କୁ ଷ୍ଟେର ଡକ୍ଟର ବୋଲି କାର୍ଟୁନ୍ କରି ଛାପିବାରୁ ପରାକ୍ରମୀ ବିଧାନସଭା ତାକୁ ଛ'ମାସ ମାମୁଁଘରେ ଭର୍ତ୍ତି କରିଦେଲେ ସେ ଯାଏଁ କଥା ଯିବନି । ହେଲେ ନୂଆ ଶତାବ୍ଦୀର ମୂଳଦୁଆ ତ ଏଇ ଶତାବ୍ଦୀରେ ପଡ଼ୁଚି । ବଦଳିବ କ'ଣ ଛତ୍ରୁ ।

ବନ୍ଧ୍ୟା ମନେମନେ ମାନୁଥିଲି ଯେ ଗିରିଧାରୀ ଯା' ପ୍ରଳାପ କରି ଗଲାଣି ସେଥିରେ ବିବ୍ରତ ହେବାର କିଛି ନାହିଁ । ନିତିଦିନିଆଁ ଘଟୁଚି । ଏମିତିକି ଏଇ ଅଧ୍ୟାପନା ଗୃହକର୍ମ ଖଣ୍ଡେ ପାଇବା ପାଇଁ ବିଜନ୍ ସାମନ୍ତର ପୁରୁଣା କରିସ୍ଥା ସତ୍ତ୍ୱେ ତାଙ୍କୁ ଅନେକ ପ୍ରକାର ମୂଲ୍ୟ ଦେବାକୁ ବାଧ୍ୟ କରାଯାଇଥିଲା । ହେଲେ କିଛିଟା ପ୍ରଭୁତ୍ୱର ଆଳ ଦେଖାଇ ସେ ଖସି ଯାଇଚି । କିନ୍ତୁ ଏପର୍ଯ୍ୟନ୍ତ ପ୍ରମାଦ ମୁକ୍ତ ନୁହେଁ । ଯା' ହେଉ ପଲ୍ଲୀର ଅପାର ମସୁଧା ଆଉ ସ୍ୱାସ୍ଥ୍ୟ ତାକୁ ବଞ୍ଚେଇ ଆଣିଚି ଏଯାଏଁ । ତେବେ ସେ ଗୋଟିଏ ଅନୁନୟ କରିଥିଲି ଭାଇ ପାଖରେ—

: ଦେଖ ଧନ, ତୁ ଯାହା ବିଚାରିଚୁ କର । ଯେମିତି ଭବିଷ୍ୟତ ଗଢ଼ିବୁ, ଉପରକୁ ଉଠିବୁ, ଏକବିଂଶ ଶତାବ୍ଦୀରେ ପଶିବୁ ସେଥିରେ ମୋର କିଛି କହିବାର ନାହିଁ । ଖାଲି ଦୁଇଟା କଥା । ନିଶା କି ବଟିକା ଛୁଁଅନି ! କାହିଁକି ନା ସେଥିରେ ଜିଇବାର ତାକତ ନାହିଁ । ଆଉ କଲେଜରେ ନଇଲେ ନାହିଁ, ଘରେ ହଉ ପାଠଟା ଯେମିତି ହେଲେ ଭଲକରି ପଢ଼ି ଜ୍ଞାନ କମେଇ ଯା । ଅସଲ ଜୀବନ ଗଢ଼ିଲା ବେଳକୁ ଦାନା କମେଇଲା ବେଳକୁ ଦରକାର ପଡ଼ିବ ।

ଗିରିଧାରୀ ସୁନା ପିଲାଟି ପରି ମୁଣ୍ଡ ଲଡ଼ଉଲା । ହଁ ସିଏ ଏଇ ଦୁ'ଟା କଥା କରିପାରିବ । କିଛି ଅସୁବିଧା ନାହିଁ ଏଥିରେ ତା'ର ମୂଳ ଯୋଜନା

ରୂପାନ୍ତରିତ ହେବାରେ । ଗୁହ୍ମି ଗୁହ୍ମି ଗିରିଧାରୀ ବି ମଣିଷ ହେଇଗଲା । ଆଜି କଷ୍ଟରେ ହଉ କି ଭାଗ୍ୟରେ ହଉ ଦୂର ରାଜ୍ୟର ସହରରେ କମ୍ପାର୍ଟର ଇଞ୍ଜିନିୟର ଚାକିରୀ ପାଇଗଲା । ତେବେ ସେଇ ସହରରେ ବା ରାଜ୍ୟରେ ଅନ୍ୟ ରାଜ୍ୟରୁ ପିଲା ଆସି ଚାକିରୀ ପାଇଗଲେ ଘୋର ବିରୋଧ । ଯେଉଁ ରାଜ୍ୟର ପିଲା ସେମାନେ, ପଢ଼ିଲେ ନିଜ ରାଜ୍ୟରେ ନିଯୁକ୍ତି ପାଇବେ । ବାହାର ଲୋକେ 'ହିନ୍ଦୁସ୍ତାନୀ ହମାରା, ଡାକ ଦେଇ ଏ ରାଜ୍ୟର ଭିଟାମାଟିରେ ଚମ୍ପୁ ପୋତି ପାରିବେନି । ସ୍ୱରାଜ ଦର୍ଶନରେ ଉଦ୍‌ବୁଦ୍ଧ ଏଇ ନେତାମାନେ ଏମିତି ଉତ୍ପାତ ଆରମ୍ଭ କରିଦେଲେ ଯେ ଏ ରାଜ୍ୟ ପିଲାଙ୍କୁ ସେ ରାଜ୍ୟରେ ନିଯୁକ୍ତି ପରୀକ୍ଷାକୁ ଯିବା ପୂର୍ବରୁ ଛେଚା ଖିଆଗଲା । କିଏ କିଏ ଜୀବନ ବିକଳରେ ପଳେଇ ଆସିଲେ । କେଇଜଣ ଯେ ନିଯୁକ୍ତି ପାଇଗଲେ ତାଙ୍କ ବିରୁଦ୍ଧରେ ଶୀତଳ ସଂଗ୍ରାମ ଚାଲିଛି । ହଇରାଣ ହରକତ କରାଯାଉଛି । ବନ୍ଧ୍ୟା ସେଇଦିନୁ ଡରି ଯାଇଥିଲା ଯେତେବେଳେ ଶୁଣିଲା ଯେ, ଏଇଥର ଗିରିଧାରୀ ପ୍ରମୋଶନ୍ ପାଇଯିବା ବର୍ଷ ଆଉ ତାଙ୍କୁ ରୋକିବା ପାଇଁ ଅନ୍ୟ ସ୍ଥାନୀୟ ଇଞ୍ଜିନିୟରଙ୍କ ଭିତରୁ କେଇଜଣ ଟାଣୁଆ ଚକ୍ରାନ୍ତ ଚଳେଇଛନ୍ତି । ବିଶ୍ୱାସ ନାହିଁ—ଜଖମ କରି ଦେଇପାରନ୍ତି । ଦେଖୁ ଦେଖୁ ଟେଲିଗ୍ରାମ୍ ଆସିଗଲା । ସିଏ ଆଉ ମୁଁ ନିର୍ଦ୍ଧାରିତ ସହର ପ୍ରବେଶ ଦ୍ୱାରରେ ଆତଙ୍କରେ ବସିଛୁ ! ସକାଳ କେତେବେଳେ !

## ( ଚାରି )

ସେଦିନ ଘରି ଜୋର୍ ବର୍ଷା ହଉଥାଏ । ପାଖାପାଖି ଅପରାହ୍ନ ପାଞ୍ଚ ସାଢ଼େ ପାଞ୍ଚ । ଟିଣ ଛାତ ଢ଼ି ପହରିଆ ଗରମ ଘରେ ଅନ୍ତେ ଥଣ୍ଡା ହଉଛି । ମୁଁ ଏରୁଣ୍ଡି ବନ୍ଧରେ ଗୋଡ଼ ଦେଇଛି କି ନାହିଁ ପଲ୍ଲବୀ ମେହେନ୍ତା ଆସି ମୋ ବସାଘର ବାରଣ୍ଡା ଉପରେ । ହାତରେ ଫୁଲପକା ନାଇଲନ୍ ବର୍ଷାତି । ହେଲେ ମୁଣ୍ଡଟା ଓଢ଼ଣି ସମେତ ପୁରା ଓଦା ।

: କଣ ଛତା ଭୁଲିଗଲେ ନା ବାଟ ଭୁଲିଗଲେ ? ପଲ୍ଲବୀ ଥଣ୍ଡାରେ ନାକ ସୁଁ ସୁଁ କରି କହୁଛି—

: ବ'ଣ୍ଟା ପ'କ । ଏଇ ଆପଣଙ୍କର ବସାଘରେ; ଜାଣିଥିଲେ ଆଗରୁ ବ କେବେ ଆସିଥାନ୍ତି । କହୁ କହୁ ଟିକିଏ ଲାଜେଇ ଗଲା ।

ଆମେ ଦୁହେଁ ଏକାଠି ଆଇ. ଏ. ପଢ଼ିଥିଲୁ । ତା'ପରେ ମୁଁ ପାଠ ଛାଡ଼ିଲି । ଯାହା'ହେଉ ଏବେ ଅବଶ୍ୟ ସହରର ବେଶ୍ ନାମକରା ଔଷଧ ଦୋକାନର ମାଲିକ, ଆଉ ପୈସାବାଲାର ଝିଅ ପଲ୍ଲବୀ ଦିଲ୍ଲୀ ଯାଇ କୋଉ ଗୋଟେ ବଡ଼ କଲେଜରେ ଶିଳ୍ପ ବ୍ୟବସାୟ ମ୍ୟାନେଜମେଣ୍ଟ ପଢ଼ିଲା, ତା' ବାପାଙ୍କ ବେପାର ବାଣିଜ୍ୟ ବୁଝିବ ବୋଲି । ସିଏ ସେତେବେଳେ ମତେ ଓ ମୁଁ ତାକୁ ଭଲ ଲାଗୁଥିଲୁ କାରଣ ଆମର ଗୁଲ୍ ଗପର ଗୋଟାଏ ସାଧାରଣ ନିର୍ଦ୍ଦର କ୍ରମ ଥିଲା । ମାନେ ପ୍ରଥମେ ଗ୍ରହ ଅନ୍ତରୀକ୍ଷ, ତା'ପରେ ବିଶ୍ୱର ନାମକରା ଦେଶମାନଙ୍କ ଖଣ୍ଡି ଉଡ଼ା ରାଜନୀତି ପ୍ରଭୃତି ବିଦ୍ରୂପ, ତା'ପରେ ଶିକ୍ଷକ ଅଧ୍ୟାପକମାନଙ୍କ ନକଲ ଏବଂ ପରିଶେଷରେ ସିନେମାରେ ଯେଉଁ ପ୍ରକାରେ ପ୍ରେମ ହେଉଛି ସେ ପ୍ରକାର ପ୍ରେମର ବ୍ୟବସ୍ଥା କାହିଁକି ସଚରାଚର ଦେଖା ଯାଉନାହିଁ ତା'ର ପ୍ରବଳ ବୌଦ୍ଧିକ ତର୍ଜମା । ଛାଡ଼ନ୍ତୁ ସେ ସବୁ ବହୁ ବିସ୍ମୃତ ଅଧ୍ୟାୟ । ତାଜା କଥା ହେଲା ଯେ ଯେତେବେଳେ ମୁଁ ଓ ସନ୍ଧ୍ୟା ଟ୍ରେକର୍ ଚଢ଼ି ଆସିବାକୁ ବାହାରିଲୁ ସେତେବେଳେ ପଲ୍ଲବୀ ସନ୍ଧ୍ୟାକୁ ବିଦାୟ ଦେଲାବେଳେ ତା' ପିଠି ଥାପୁଡ଼େଇ ଆଉ ମୋ ଆଡ଼େ ଅର୍ଥପୂର୍ଣ୍ଣ ଦୃଷ୍ଟିରେ କଟାକ୍ଷ ହାଣି କହିଲା—

: ସାଧାରଣ ଟେଲିଗ୍ରାମଟାକୁ ଏତେ ଭୟ । ମଣିଷ କେହି କାହାର କିଛି କରି ପାରିଲାଣି ନା କରିବ । ସବୁ ହଉଛି ପରିବେଶ ଜଳବାୟୁର ହିଚର୍ । ଆମେ ପସ୍ୱ ଶତାବ୍ଦୀ ପାରି ହଉଚେ । ସେଥିପାଇଁ କଳିଜା ଦରକାର । ସନ୍ଧ୍ୟାଟା କଣ ପାରିବ । ଛୁଇକୁ ଡରିବା ଝିଅ । ହେଲେ ଆର ଶତାବ୍ଦୀରେ, ନୂଆ ଭୂଖଣ୍ଡରେ ମୁଁ ତମକୁ ଭେଟୁଚି ନିଶ୍ଚୟ । ପଛ ବାକ୍ୟଟି ସିଏ ମୋ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା ଆଉ ଫିକ୍କରି ହସିଦେଇ ଚାଲିଗଲା । ଅବଜ୍ଞାରେ ତ !

: ଚାଲନା, ଉଠ, ଉଠ ସକାଳ ହେଇ ଗଲାଣି—ଡ୍ରାଇଭର ମୁହଁ ଧୋଇଲାଣି, ଗାଡ଼ି ଚାଲୁ ଏଥର । ତାକୁ କହ ।

ଗାଡ଼ି ଚାଲୁଛି ଏଥର ।

ପାହାନ୍ତା ହେଲା ବେଳଠୁଁ ଗାଡ଼ିଟା କେମିତି ବିଜୁଳି ବେଗରେ ଘାଟିଗୁଡ଼ା ପାରହୋଇ ପୂର୍ବ ଉତ୍ତର କଲୋନିଟର ଅତିକ୍ରମ କରିଗଲା ଜଣା ପଡ଼ିଲାନି । କୋଉଠି କିଛି ପ୍ରତିବନ୍ଧକ ପ୍ରମାଦ ଆସିଲା ନାହିଁ । ସର୍ ସର୍ ଚାଲିଚି ଗାଡ଼ି । କୁଆଡ଼େ ଗଲେ ଲୁଟେଲେ ଗାଁର ଆତତାୟୀମାନେ ଅଥଚ ଆମେ ହାତେ ଖୁରୁଖୁରୁରେ ପହଞ୍ଚିଗଲୁ ଠିକଣା ସାମ୍ରାଜ୍ୟରେ । ଏ ସହରରେ ଏବେ ଏକବିଂଶ ଶତାବ୍ଦୀ ଉଙ୍କିମାରୁଚି । ଲୋକବାକ, ଯାନ ବାହନ ସବୁ କେମିତି ଗୋଟେ ଦୃଷ୍ଟି ଛଟା ଉଲ୍ଲାସରେ ମତଗର୍ବରେ ଉଲ୍ଲସିତ ହଉଚନ୍ତି । ସିଏ କୁଆଡ଼େ ଯିବାକୁ ଚାହୁଁଚି ଯାଉଚି । ଯାହାକୁ ଧରିବ, ଯାହାକୁ ଅଧିଗତ କରିବ ଭାବୁଚି କରୁଚି । ଚୌଦିଗରେ ପ୍ରମତ୍ତ ସ୍ୱେଚ୍ଛାଚାରିତା । ମନ, ସ୍ୱପ୍ନ, ଆବେଗ ସବୁ ସ୍ୱେଚ୍ଛାଚାରୀ । ଅଙ୍ଗୁଆ ହେଲେ ବି ଏଇ ସହରଟି ଭଲ ଲାଗୁଚି । ଉଚ୍ଛ୍ୱାସ ଲାଗୁଚି । ସନ୍ଧ୍ୟା କହୁଚି—

: ଭାଇନା ଏଠେଇଁ ପହଞ୍ଚିଲା ପରେ ଆଉ ମନ କରୁନି, ଫେରିବା ପାଇଁ, ନାଇଁ ?

ମୁଁ ଗୁମର କଥାଟା କହିଦେଲି ଟ୍ରେନରୁ ଓହ୍ଲେଇ ପାନ୍ଥଶାଳାକୁ ମୁହାଁଇଲାବେଳେ—

: ଯଦି ତୋ ଭାଇ ଶିରଧାରୀ ଜୀବନରେ ନଥିବ ତା'ହେଲେ କଣ ଏଇ ନୂଆ ଭୂଖଣ୍ଡକୁ ବି ତୁ ଭଲ ପାଇବୁ ଲୋ ବୋକୀ ଝିଅ ?

ସନ୍ଧ୍ୟା ମୁହଁ ଭାରି କଲାଣି—

: ସେମିତିକା କାଳକୁଣ୍ଡିଆ କଥା କାହିଁକି କହୁଚ । ମୋ ପକେଟରେ ଟେଲିଗ୍ରାମ୍ କାଗଜ ଉପରେ ହାତମୁଠା ଟାଣହୋଇ ଆସୁଛି । ଅଥଚ ମୁଁ ବୁଡ଼୍ ବକ୍ ପାଗଳ ପରି ହିଁ ହିଁ ହୋଇ ହସୁଚି । ଶୀତ ତାପ ନିୟନ୍ତ୍ରିତ ଟ୍ରେନରେ ବସି ଆମେ ଯାଉଚୁ ଶିରଧାରୀର ୱାଇ. ଏମ୍. ସି. ଏ. ହଷ୍ଟେଲକୁ

ତାଙ୍କୁ ଭେଟିବାକୁ—ହେପାଜତ କରିବାକୁ । ସେଠି ପହଞ୍ଚି ଦେଖୁଚି ଯେ ଜଣେ ବାବୁରୀ ବାଳ ବିମଣ୍ଡିତ ଗୋରା ତକତକ ଯୁଆନ ଗୋଟେ ପ୍ରକାଣ୍ଡ ରଙ୍ଗିନ୍ ଟି. ଭି. ସେଟ୍ ଆଗରେ ସ୍ପ୍ରିଂ କୁଶନ ଆରାମ୍ ଚେୟାର ଉପରେ ଆଉଜି ହାତରେ ୱାଇନ୍ ଗ୍ଲାସ୍ ଧରି ଚାହିଁ ଦେଖୁଚି । ଟି. ଭି. ରେ ସେତେବେଳେକୁ ମୁନ୍‌ମୁନ୍ ସେନ ଏମିତ ଆଉ ଦି' ଗୁରିଣ୍ଟା ଗୋରୀ ଗୋରୀ ସୁନ୍ଦରୀ ଝିଅ କଳକଳ ହସ ଖୁସିରେ ବିଭିନ୍ନ ସାବୁନ୍‌ରେ ଗାଧୋଇ ଲାଗିଚନ୍ତି ଆଉ କହୁଚନ୍ତି ପ୍ରକ୍ଷେପିତ ସାବୁନ୍‌ଗୁଡ଼ିକୁ ମାଖିହୁଅ । ଜୀବନ ସାବୁନ୍ ସର୍ବସ୍ୱ ପ୍ରମାଣିତ ହେଉ ଇତ୍ୟାଦି ।

ବିନ୍ଧ୍ୟା ଆବେଗରେ ବିସ୍ମୟରେ ଚିତ୍କାର କରି ଉଠିଲା—

: ହାଇରେ ଧନମଣି--ଗିରିଧାରୀ । ତୁ ସହିସଲାମତ ଅଛୁଟି ? ମୋ ଭାଇ କେଡ଼େ ସୁନ୍ଦର, କେଡ଼େ ତେଜସ୍ୱୀନ ଦିଶୁଚି, ଦେଖି ଭାଇନା । ମତେ ତ ଖାଲି ଟେଲିଗ୍ରାମ କରି ଡରେଇ ଦେଲା ପାଜି ଶୟତାନ୍ ! ସବୁବେଳେ ଏମିତି ବ୍ୟସ୍ତ କରି ପକେଇବ ।

ଭାଇ ଭଉଣୀ ଦିହେଁ କୋଳାକୋଳି ହୋଇ ଅପୂର୍ବ ଆନନ୍ଦରେ ମୋ ଆଡ଼କୁ ଚାହୁଁଚନ୍ତି ମୃଦୁ ହାସ୍ୟରେ । ମୁଁ ଭ୍ରୂକୁଞ୍ଚନ କରି ଟେଲିଗ୍ରାମ୍ କାଗଜ ଟୁକୁରାଟା ପେଣ୍ଟ ପକେଟରୁ ବାହାର କରି ଗିରିଧାରୀକୁ ଦେଖାଇଲି ଆଉ କହିଲି—

: ତୁ ଯଦି ମରିନାହୁଁ—ଏଇଟା କ'ଣ ଫାଜିଲାମି ?

: ମଲା ମଲା, ଏଇଟା ଗୋଟେ କଥା ! ଟେଲିଗ୍ରାମ୍‌ଟା ସତ । ମୁଁ ମରିଥିଲି ଗଲା ବିଂଶ ଶତାବ୍ଦୀର କୌଣସି ପାଞ୍ଚ ତାରିଖରେ । କିନ୍ତୁ ଏକ ବିଂଶ ଶତାବ୍ଦୀରେ ଆଉ ଶବ ନାହାନ୍ତି ସମସ୍ତଙ୍କର ପୁନଃପ୍ରାଣ ପ୍ରତିଷ୍ଠା ରିସେରେକ୍ସନ୍ ହୋଇଚି । ସିଧା କଥା । ଏଇ ପ୍ରଚଣ୍ଡ ଜୀବନକାଳ ସମୟକୁ ଆଘ୍ରାଣ କରି ମୁଗ୍ଧମତ୍ତମାନେ । ଏଠି ସବୁ ଅନିର୍ବାଣ—ସବୁ କାଳଜୟୀ ଶାଶ୍ୱତ । ଅପାକୁ ଡକେଇ ଆଣିଚି ; ଘୁଣଖିଆ ନଶ୍ୱର ଶତାବ୍ଦୀରୁ ମୁକୁଳି ଆସିବା ପାଇଁ । ଆଗେ କଫି ଖାଅ । ଗାଧୁଆ ପାଧୁଆ ସାରି । ତା'ପରେ ଦେଖିବ ମୁଁ ଏଇଠି ତମରି ଅଭିନନ୍ଦନ ପାଇଁ କଣ ବନ୍ଦୋବସ୍ତ କରିଚି ।

ସନ୍ଧ୍ୟାର ଦୃଶ୍ୟ ବଦଳିଛି । ଘର କମରାସ୍ଥ ଡନ୍ଲପ୍ ରୂପଶ୍ରୀ ଝଟକୁଛି ତା'ର ଠାଣିରେ, ଭଙ୍ଗୀରେ । ମନେ ଗୁହାରି କରୁଛି —

: ଦେଖୁଛ ତ ମୋ ଘରର କଥାରେ କାନରେ କେମିତି ଅମୃତ ମିଶି ହେଉଛି । ମୋ ଭାଗଟି ?

ଟି. ଭି. ସ୍କ୍ରିନ୍‌ରେ ଏଇ ସମୟରେ ସମ୍ବାଦ ପରିବେଷଣ ହେଲା । ଏଇ ସମୟରେ ।

ମୁଁ ଆଜି ସନ୍ଧ୍ୟା ଅବାକ୍ ହୋଇ ଗୁହାଁରୁ । ସମ୍ବାଦ ପଢ଼ୁଛି ଖୋଦ୍ ପଲ୍ଲବୀ । ଏ ରାଜ୍ୟକୁ ତାଙ୍କ ଆଗରୁ କେତେବେଳେ ଆସି ଦୂରଦର୍ଶନ କାର୍ଯ୍ୟକ୍ରମରେ ମୁଖ୍ୟତ୍ୱନ ହୋଇ ସବୁକିଛି ଜାଣିବା ମୁସ୍କିଲ । କେତେବେଳେ ଜୁକୁଜୁକୁ ଗୁହାଁ, କେତେବେଳେ ଆଖିକୁ ଓଠକୁ ନଚାଇ ନିର୍ମଳ ବଂଶୀଗୀତର ଗାଇ ଯାଉଛି, ଅସଲ ମଜ୍ଜା ମଜ୍ଜା ଜାଣିବା ଖବର । ଏ ରାଜ୍ୟର ଡଲଫିନ୍ ଫେସନ ମୁତାବକ ବେଶ ପିନ୍ଧିଛି । ଦେହରେ ଖାକି ପଶମର ଡିଲ୍ ଜାମା, ସେଥିରେ ପୁଣି ଧୂନାପରି ଚକ୍ ଚକ୍ କରୁଥିବା ଏତେ ଏତେ ପିତଳିଆ ବୋତାମ । ବୋତାମ ଉପରେ ବିଭିନ୍ନ ସମାଜପତି ଆଉ ନେତାମାନଙ୍କ କଟାମୁଣ୍ଡ ମୋହର ଭଳି ଲଗା ହୋଇଛି । ଆରମ୍ଭରୁ ସ୍କାଉଟମାନଙ୍କ ପରି ଗୋଟେ ହାତ ଆଙ୍ଗୁଳିଆ ସଲାମ ଦେଇ କହିଲା ଯେ --

! ଆଜି ରାଷ୍ଟ୍ରମୁଖ୍ୟ ଏକବିଂଶ ଶତାବ୍ଦୀ ପାଇଁ କଲ୍ୟାଣ ମୂଲ୍ୟବୋଧ ତଥା ଜନନାୟକ ନିର୍ବାଚନର ନୂତନ ମନ୍ତ୍ର ଘୋଷଣା କଲେ । ଏତଦ୍ୱାରା ଗଣତାନ୍ତ୍ରିକ ପରମ୍ପରାର ଯେଉଁ ଅଭ୍ୟାସ ଧରିଥିଲା, ଯେଉଁ ଜମାଳିଆ ପରମ୍ପରା ସୃଷ୍ଟି ହୋଇଥିଲା ସେସବୁ ଅପସୃତ ହୋଇ ଲୋକ ଶାସନ ଦୋରସ୍ତ ହେବ । ରାଷ୍ଟ୍ରମୁଖ୍ୟ, ନ୍ୟାୟାଳୟ ମୁଖ୍ୟ ତଥା ସର୍ବାଗ୍ରୀ ମନ୍ତ୍ରୀମାନେ ଏଣିକି ପୁରୁଷାନୁକ୍ରମେ ସ୍ୱୀକୃତ ପାଇବେ । ଅର୍ଥାତ୍ ସ୍ୱାଧୀନତା ସଂଗ୍ରାମୀ ବୁଢ଼ାନେତାମାନଙ୍କ ପୁଅ, କନ୍ୟା, ପୌତ୍ରାଦି କେବଳ କାଳକ୍ରମେ ଉକ୍ତ ପଦବୀମାନଙ୍କ ପାଇଁ ପ୍ରାର୍ଥୀ ହୋଇ ପାରିବେ ଓ ନିର୍ବାଚିତ ହେବେ । ଏହାର ବିରୁଦ୍ଧ ଘଟିଲେ ଅନୁଶାସନ ପର୍ବ ଓରଫ ଇମର୍ଜେନସି ଘୋଷିତ ହେବ ।

ଦେଶର ମସ୍ତ ମସ୍ତ ନାଟୁଆ ପିଲ, ଗୋଟିପୁଅ, ସିନେମା ଷ୍ଟାର୍‌ମାନେ, ଯେଉଁମାନେ ବିଭିନ୍ନ ସମୟରେ ହରେକ ପ୍ରକାର ବେଶ ପାଗ ପିନ୍ଧି ପାରନ୍ତି, କେତେ କିସମର ହିରୋ, ମହାପୁରୁଷ, ମହାନ୍ତ, ଗୁଣ୍ଡା, ପାଜି, ଶୟତାନ, ବିଦୂଷକ, କମେଡ଼ିଆନ୍ ଭୂମିକାରେ ନାଚ ପାରନ୍ତି ସେମାନଙ୍କୁ ମଧ୍ୟ ଜନନେତା, ନେତା ଆଉ ସମାଜପତି ନିର୍ବାଚନରେ ପ୍ରାଧିକାର ଦିଆଯିବ । ଯେହେତୁ ଏଇ ସୁଆଙ୍ଗ ବାଲାଏ ବିଷର୍ଣ୍ଣ ହତାଶ ଜନତାଙ୍କୁ ରଙ୍ଗମଞ୍ଚରେ କି ସିନେମା ପରଦାରେ କେତେ ଭେଳିକି ଦେଖାଇ ଆନନ୍ଦ ଉଲ୍ଲାସ ଦେଇଥାନ୍ତି, ସେଇମାନେ ହିଁ ସଭା ସମିତିରେ ଫୁଲମାଳ ପିନ୍ଧି ଠିକ୍ ଭାବରେ ଜଗତ ଉଦ୍ଧାର କଲେନ୍ତ ଅଭିନୟ କରି ପାରିବେ । ପୁନଶ୍ଚ, ରାଷ୍ଟ୍ରନାୟକମାନେ ଏଣିକି ମଟର କାର ବଦଳରେ ଅତ୍ୟାଧୁନିକ ଇଞ୍ଜିନ ଚାଳିତ ଶୀତତାପ ନିୟନ୍ତ୍ରିତ ଗୋଟିଏ ଗୋଟିଏ ପୌରାଣିକ ବିମାନ ଚଢ଼ି ବୁଲାଚଲା କଲେ ଦେଶବାସୀ ଆନନ୍ଦ ପାଇବେ । ଏଇ ରଥମାନଙ୍କ ନାମ ଚୈତନ୍ୟ ରଥ, କୌଟିଲ୍ୟ ରଥ, ପୁଷ୍ପକ, ଦାନବ ଦଳନ ଇତ୍ୟାଦି ହୋଇପାରେ ।

ସ୍ଥା' ପର ଖବର । ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ ଉଦ୍ଦିଷ୍ଟ ମାସୁଆଭତ୍ତା ପାଇବା ପାଇଁ ଉଚ୍ଚ ଶକ୍ତିସମ୍ପନ୍ନ କମିଟିଙ୍କ ସୁପାରିଶ ଅନୁସାରେ ଯେଉଁ ଯୋଗ୍ୟ ବ୍ୟକ୍ତିମାନଙ୍କ ତାଲିକା ପ୍ରସ୍ତୁତ ହୋଇଥିଲା ସେଥିରେ କେତେକ ଷୋଳ ବର୍ଷରୁ ବାଇଶି ବର୍ଷ ପର୍ଯ୍ୟନ୍ତ ଯୁବକ ଯୁବତୀଙ୍କ ନାମ ଥିବାରୁ କେତେ ଜଣ ଚପଳମତି ଗୌଣ ଲୋକ ଏହାର ସମାଲୋଚନା କରି ସର୍ବୋଚ୍ଚ ନ୍ୟାୟାଳୟ ଯାଏଁ ମାମଲା ଉଠେଇଲେ । ଉକ୍ତ ନ୍ୟାୟାଳୟ ତାଙ୍କର ନଗଦ ବିଚାରକ ନିଷ୍ପତ୍ତି ଆଦେଶନାମାରେ କହିଛନ୍ତି ଯେ, ତାଲିକା ଠିକ୍ ଅଛି । କାରଣ ଏଇ ତାଜା ଯୁବକ ଯୁବତୀମାନେ ସ୍ୱାଧୀନତା ସଂଗ୍ରାମ ବେଳେ ଜନ୍ମ ହୋଇ ନଥିଲେ ମଧ୍ୟ, ଲଜପତ୍ ରାଏ, ବାଲ୍ ଗଙ୍ଗାଧର ତିଳକଙ୍କ ଠୁଁ ଗାନ୍ଧୀ ମହାତ୍ମା ପର୍ଯ୍ୟନ୍ତ ଲୋକଙ୍କ ନାଁ ନ ଶୁଣିଥିଲେ ମଧ୍ୟ ଯାହା ତାଙ୍କ ଚେତିବାରୁ ଜଣା ପଡ଼ୁଛି ସେମାନେ କଣ ହେଲେ ଗୋଟେ ସଂଗ୍ରାମ ସିନେମା ବା ଡିସ୍କୋ ତାଣ୍ଡବରେ କରିବେ ବୋଲି ଚବଶ ଘଣ୍ଟା ଉତ୍ସାହିତ ହେଉଛନ୍ତି । ତାଙ୍କ ରକ୍ତ କୋଷରେ ସଂଗ୍ରାମର ସ୍ଫୁଲିଙ୍ଗ ଅଛି । ସେମାନେ ହେଲେ ଏକ ବିପ୍ଳବ ଉନ୍ମୁଖ ସଂସ୍କୃତିର ଦାୟାଦ । ପୁଣି ସରକାରୀ ଓକିଲଙ୍କ ବଳିଷ୍ଠ ପୌରାଣିକ ଯୁକ୍ତି ଯେ, କ୍ଷତ୍ରିୟ ପତ୍ନୀର ଗର୍ଭରେ ସନ୍ତାନ ହୋଇ ଜନ୍ମନ୍ତୁ ଏ । ଯଦା ହିନ୍ଦୁ ଧର୍ମର

ବିଶ୍ବାସ । ସେ ଯୋଗୁଁ ପତ୍ନୀଙ୍କୁ ଜୟା କୁହାଯାଏ । ଏଣୁ ତ ଲିଙ୍କାଭୁକ୍ତ ଯୁବ ସ୍ୱାଧୀନତା ସଂଗ୍ରାମୀମାନେ କୌଣସି ନା କୌଣସି ପୂର୍ବ ପୂରୁଷ ଅସଲ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପୁତ୍ର ପୌତ୍ର ରୂପରେ ଯେ ନବ କଳେବର ଧାରଣ ନ କରିଛନ୍ତି ତା' କହି ହେବ ନାହିଁ । ଏଣୁ ସମକାଳୀନ ନେତୃବର୍ଗ ସେମାନଙ୍କୁ ଗାନ୍ଧୀ ନୀତିକୁ ସ୍ୱାଧୀନତା ସଂଗ୍ରାମୀ ହିସାବରେ ଚିହ୍ନଟ କରିବାରେ ବାଧା ନାହିଁ ।

ପଲ୍ଲବୀ ଏବେ ଠିକ୍ ଏ ଆଖି ମିଟିକା ମାରି, ସ୍ୱରରେ ହସ ଚହଟେଇ ଆଉ ଗୋଟେ ଚମକପ୍ରଦ ଖବର ପାଠକଲା । ଯେହେତୁ ନୂତନ ଶିଳ୍ପନୀତି ମତ ଅନୁସାରେ ନିଜକୁ ଦରିଦ୍ର ବେକାର ଅଥଚ କର୍ମଠ ସମର୍ଥ ପ୍ରାର୍ଥୀ ବୋଲାଇ ବହୁ ଉଚ୍ଚ ସରକାରୀ କର୍ମଚାରୀ ତଥା ପୁଞ୍ଜିପତିଙ୍କ ଅଯୋଗ୍ୟ ସନ୍ତାନମାନେ କୋଟି କୋଟି ଟଙ୍କା ସରକାରୀ ମୁନାଫା ସହ ବ୍ୟାଙ୍କରୁ ଉଠାଇଛନ୍ତି ଏବଂ ସେମାନଙ୍କର ସର୍ବାଧିକ ତାଲିକାଭୁକ୍ତ ନୂଆ ଶିଳ୍ପ ପ୍ରକଳ୍ପ ଗୁଡ଼ିକ ପୁଣି ଅକାମୀ ହୋଇ ପଡ଼ିଛି । ସରକାର ଋଣ ଆଦାୟ ନକରିପାରି ପର୍ଯ୍ୟନ୍ତ ଖଣ୍ଡ ସହୁଛନ୍ତି, ଏପରି ଅଡୁଆକୁ ବ୍ୟବସ୍ଥିତ କରିବା ପାଇଁ ଆଉ ଏକ ଚତୁର ପଦ୍ଧତି ଘୋଷଣା କରାଗଲା । ବିରୋଧୀ ଦଳର ସଭ୍ୟମାନେ ଯଦି ଏହି ରୁଗ୍‌ଣ ଶିଳ୍ପ ଗୁଡ଼ିକୁ ଅଳ୍ପ ମୂଲ୍ୟରେ ନିଲାମ୍ ନେବାକୁ ଚାହାନ୍ତି ତା'ହେଲେ ସେମାନଙ୍କୁ ତାହା ଅଗ୍ରାଧିକାର ଭିତ୍ତିରେ ଦେଇ ଦିଆଯିବ । କିନ୍ତୁ ଗୋଟାଏ ସର୍ତ୍ତରେ ଯେ, ସେମାନେ ସବୁଦିନେ ସଂଖ୍ୟାଲଘୁ ରହିବେ ବୋଲି ଏକ ଚୁକ୍ତିନାମା ସ୍ୱାକ୍ଷର କରିବେ ।

ଟି.ଭି. ସ୍କ୍ରିନ୍‌ରେ ସମ୍ବାଦ ପଢ଼ିବାକୁ ବସିଥିବା ଆରଜଣକ ଉପରେ ଏବେ ଆଲୁଅ ପଡ଼ିଲା ! ଅସମ୍ଭବ କଥା ! ଇଏତ ବିଷନ ସାମନ୍ତ ! ଇଏ ବି କଣ ରାଜ୍ୟପାଳ ହୋଇ ପଳେଇ ଆସିଛନ୍ତି ପଲ୍ଲବୀ ସାଙ୍ଗରେ ଆଉ ତାଙ୍କ ପାଇଁ ଏଠେଇଁ ଖବର ପଢ଼ିବା ଚାକିରୀ ଥୁଆ ହେଇଥିଲା ! ଯା'ହେଉ ବିଷନ୍ ସାହେବ ପ୍ରଫୁଲ୍ଲ ଦିଶୁଛନ୍ତି । ମୁଖରେ ଚୋଟ ପରି ବାବୁରୀ ବାଳକୁ ଚିକ୍କଣ କଳା କରିଛନ୍ତି । ତାଙ୍କ ଖାକି ଟେରିନ୍ କୋଟ୍ ବୋତାମରେ ଅନ୍ତ ଟାଇପିନ୍ ଉପରେ ମଧ୍ୟ ମୋହର ପରି ନେତାମାନଙ୍କ ମୁଣ୍ଡ ଗ୍ରୁପ । ସାହେବ ତାଙ୍କ ପାଟିରେ ଓଠ ଚିପି ଚିପି ଗମ୍ଭୀର ଭାବରେ ତାଙ୍କ ଖବର ପଢ଼ା ସୁରୁହେଲା ।

ଏ ରାଜ୍ୟର ନୂଆ ଶ୍ରମମନ୍ତ୍ରୀ ଅନୁସାରେ ଯେତେ ଟ୍ରେଡ୍ ୟୁନିଅନ୍ ଆଉ ଶ୍ରମିକ କାର୍ଯ୍ୟଦାର ସଂସ୍ଥା ଅଛି ସେମାନଙ୍କ କର୍ମଧାରୟ ଓ ମୁଖ୍ୟ ପୁରୋଧାମାନଙ୍କୁ ସରକାର ନିଜ ଖର୍ଚ୍ଚରେ ବାସଭବନ, ମଟରଗାଡ଼ି ଓ ପଞ୍ଚତାରକାଯୁକ୍ତ ଆୟୁସର ବ୍ୟବସ୍ଥା କରିବେ । ଶ୍ରମିକମାନଙ୍କଠୁଁ ବିପୁଳ ଚାନ୍ଦା ଉଠାଇ ମାଲିକ ଓ ସରକାରଙ୍କ ସହିତ ମଧ୍ୟସ୍ଥି ବା ଦଲାଲି କରି ଶ୍ରମିକ ନେତାମାନେ ଏବେ ଚୈନାକ୍ତ ମାଲିକ, ମନ୍ତ୍ରୀ, ହାକିମଙ୍କଠୁଁ ଆଉରି ବର୍ତ୍ତୁଳ ଓ ଚିକ୍କଣ ଦିଶିଲେଣି । ତଥାପି ବିଭିନ୍ନ ଶ୍ରମ ଅନୁଷ୍ଠାନ ଭିତରେ ଯେଉଁ ହାଣକାଟ କଳି ଟକରାଳ ଚାଲିଛି ତା'ମୁଖ୍ୟତଃ ଭିନ୍ନ ଭିନ୍ନ ଟ୍ରେଡ୍ ୟୁନିୟନ ନେତାମାନଙ୍କ ଝୋରିକ ଫାଇଦା ଆଉ 'ଷ୍ଟାଟସ୍'ର ପାର୍ଥକ୍ୟ ଯୋଗୁଁ ଘଟିଥିବାରୁ ସରକାର ଏମାନଙ୍କୁ ସମାନ ଭାବରେ କ୍ୟାବିନେଟ୍ ପାହ୍ୟା ଦେଇ ସମସ୍ୟାର ସମାଧାନ କରି ପାରନ୍ତି । ତତ୍ ସଙ୍ଗେ ସଙ୍ଗେ ଯେହେତୁ ପ୍ରାୟ ସମସ୍ତ ସରକାରୀ ଉଦ୍ୟୋଗରେ ଚୁକ୍ତିଆ ଶ୍ରମିକ ମିଛ ସତରେ ପ୍ରାୟ ପଚିଶ ଭାଗ ଓଭର ଟାଇମ୍ ଆଉ ପଚିଶି ଭାଗ ମୋଟେ କାମକୁ ନଆସି ଦରମା ପାଇ ଆସୁଛନ୍ତି ତାହା ଏ ଯାବତ୍ ଚୁକ୍ତି ସର୍ତ୍ତାବଳୀର ଅଙ୍ଗୀଭୂତ ହୋଇ ସାରିଛି ବୋଲି ଧରାଯିବ । ଏହାର କୁପରିଣାମକୁ ନିୟନ୍ତ୍ରିତ କରିବ ପାଇଁ ନିଷ୍ପତ୍ତି କରାଯାଇଛି ଯେ, ସବୁ ଚୁକ୍ତିଆ ମଜୁରିଆଙ୍କୁ ସମାନ ଭାବରେ ଏଣିକି ଶତକଡ଼ା ଅଶୀ ଭାଗ ଓଭର ଟାଇମ୍ ଦିଆଯିବ । କାମ କରନ୍ତୁ ବା ନ କରନ୍ତୁ । ମୃତ ବା ଜୀବିତ ।

ବିଭିନ୍ନ ସମ୍ବାଦପତ୍ରର କୃଷ୍ଣ ସମ୍ପାଦକମାନଙ୍କର କେତେକ ସମସ୍ୟା ସରକାରଙ୍କ ଦୃଷ୍ଟିକୁ ଆସିଛି । କେତେକ ସ୍ୱେଚ୍ଛାଚାରୀ ମହଲରୁ ସମାଲୋଚନା କରାଯାଉଛି ଯେ, ଯଦିଓ ଗୋଟିଏ ଦିଓଟି ସମ୍ବାଦପତ୍ର ସେମାନଙ୍କ ସମ୍ପାଦକ ଓ ତାଙ୍କ ବାପା, ମା', ପୁଅ, ଝିଅ, ଜୋଇଁ ଓ ବୋହୂଙ୍କ ଚିତ୍ର ପ୍ରାୟ ପ୍ରତିଦିନ ଭାଷ୍ୟ ଓ ଟୀକା ସହିତ ଛାପୁଛନ୍ତି, ଅନ୍ୟ ସମ୍ବାଦପତ୍ରମାନଙ୍କ ପରିଚାଳନା କର୍ତ୍ତୃପକ୍ଷ ସେମାନଙ୍କ ସମ୍ପାଦକ କିମ୍ବା ତାଙ୍କ ବିରାଦରଙ୍କୁ ଅନୁରୂପ ସୁଯୋଗ ଦେଉ ନାହାନ୍ତି । ଏଣୁ ସେମାନଙ୍କର ପ୍ରତିଭା ଓ ଗୁଣାବଳୀ ଠିକ୍ ଭାବରେ ପ୍ରକାଶିତ ହୋଇ ପାରୁନାହିଁ । ଉଚ୍ଚ ନେତୃବର୍ଗଙ୍କ ପରି ସମ୍ପାଦନା କ୍ଷେତ୍ରରେ ମଧ୍ୟ ସମସ୍ତ ସମ୍ବାଦପତ୍ରରେ ଉତ୍ତରାଧିକାର ଓ କୁଳରକ୍ଷା ହେଉନାହିଁ । ଦେଶ

ଓ ଜାତିର ଯେତେଗୁଡ଼ିଏ ସମାଜସେବା ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ଅଛି ସେମାନଙ୍କ ସଭା ସମିତିର ଫଟୋ ଓ ବିବରଣୀ ପ୍ରକାଶରେ ପାତର ଅନ୍ତର ଘଟୁଛି; କାରଣ ଏସବୁରେ ପୌରୋହିତ୍ୟ କରିବା ପାଇଁ ଯଥେଷ୍ଟ ସଂଖ୍ୟକ ସମ୍ପାଦକ ବା ସେମାନଙ୍କର ପୁଅ, ଝିଅ, ସ୍ୱାମୀ ଇତ୍ୟାଦି ନାହାନ୍ତି । ଏହି ବୈଷମ୍ୟ ଦୂର କରିବା ପାଇଁ ସରକାର ନିର୍ଦ୍ଧାରଣ କରିଛନ୍ତି ଯେ, "ସମ୍ବାଦ ପତ୍ରମାନେ ସମ୍ପାଦକ ବା ତାଙ୍କର ଜ୍ଞାତି କୁଟୁମ୍ବଙ୍କ ଫଟୋ ଓ ପ୍ରବଚନ ଅନ୍ୟୁନ ଦୈନିକ ସଂସ୍କରଣରେ ଯଥାକ୍ରମେ ଦୁଇଥର ଓ ଦୁଇ କଲମ ଛାପିବେ । ଯଦି କୌଣସି ସଭାସମିତିକୁ ଅଳଙ୍କୃତ କରିବାକୁ ସମ୍ପାଦକ ଅଭାବ ପଡ଼ନ୍ତି ତା'ହେଲେ ସେହି ସଭାର ବିବରଣୀ ପ୍ରକାଶ କରି ତା'ସହିତ ପ୍ରତ୍ୟାଶିତ ଅଥଚ ଯୋଗଦେଇ ନପାରୁଥିବା ଜଣେ ସମ୍ପାଦକଙ୍କ ଫଟୋ ମଧ୍ୟ ଛପା ହେବାକୁ ବାଧ୍ୟ ।

ବିଧାନ ସଂସଦମାନଙ୍କରେ ଆଲୋଚନାର ମର୍ଯ୍ୟାଦା ଆଉ ସଭ୍ୟ-ମାନଙ୍କର ଆଚରଣ ବ୍ୟବହାରରେ ଶାଳୀନତା ରକ୍ଷା କରିବାଲାଗି କେତେକ ଦୃଢ଼ ମତଗତ ନୀତି ନିଆ ଯାଇଛି । ପ୍ରଜାକୁଳର ଉତ୍ପୀଡ଼ନର ନିରାକରଣ ନିମିତ୍ତ ଦେଶଭକ୍ତିରେ ଉତ୍‌କ୍ଷିପ୍ତ ହୋଇ ଉଭୟ ବିରୋଧୀ ଦଳ ଓ ସରକାରୀ ଦଳର ସଭ୍ୟମାନେ କେତେକ ବିଧାନସଭାରେ ଜୋତା, ଚପଲ, ଅଣ୍ଡା, ଚଉକି, ଷ୍ଟୁଲ ପରସ୍ପର ଉପରେ ଫୋପାଡ଼ା ଫିଙ୍ଗା କରିବାର ବହୁ ନଜିର୍ ସଂସଦ ବିବରଣୀ ବହିର୍ଭୂତ ହେଲେସୁଦ୍ଧା ଦେହସୁଦ୍ଧା ଆଚରଣରେ ପରିଣତ ହୋଇଛି ।

ଏହାଛଡ଼ା ବ୍ୟକ୍ତିଗତ ସ୍ତରରେ ବିଭିନ୍ନ ସଭ୍ୟ ବିଶେଷ କରି ମନ୍ତ୍ରୀ ଓ ନାଉଁଆ ନେତାମାନଙ୍କ କ୍ଷୁଧା ପ୍ରଚୁର ପାଇଁ କେତେକ ନୂତନ ପଦ୍ଧତି ଆବିଷ୍କୃତ ହୋଇଛି । କିନ୍ତୁ ନମିଳିଲେ ଯୌନ ସମ୍ପର୍କିତ କଳ୍ପିତ ସ୍ଖଳନର ସାମାନ୍ୟ ସୂଚନା ଟିକିଏ ଦେଇଦେଲେ ଯେ ଉତ୍କଟ ସରଗରମ ହୋଇ ଉଠିବ, ଯୌନ ତୃଷାର୍ତ୍ତ ମେଣ୍ଢିଆ ଅଜ୍ଞ ରାଜ୍ୟବାସୀ ଯାବତ୍ ଗୁଜବକୁ ଶୋଷିନେଇ ମାତି ଉଠିବେ; ସାମାଜିକ, ଅର୍ଥନୈତିକ ସବୁ ସମସ୍ୟା ବିଷୟର ଆଲୋଚନାକୁ ବିସର୍ଜନ ଦେଇ କଞ୍ଚିତ ଜଳ୍ପ ଓ କାଳ୍ପନିକ

ଲୋମହର୍ଷଣକାରିତାରେ ବିବଟ ହେବ । ନିଜ ଭିଟା ଭୂଇଁର ସଂସ୍କୃତିର ଅସ୍ମିତା ସ୍ୱାଭିମାନକୁ ଗୋଇଠାମାରି ଅନ୍ୟରାଜ୍ୟର ଅନ୍ୟ ଦେଶର ବଙ୍କା ହସ ତାଚ୍ଛଲ୍ୟ ଅବଜ୍ଞାକୁ ନିର୍ଲଜ୍ଜ ଭାବରେ ଅଙ୍ଗୀଭୂତ କରିନେବା ଅବଶ୍ୟ ଆମର ଚଉଡ଼ା ହୃଦୟର ପ୍ରମାଣ ଦେଉଛି । ବାଃରେ ଏଇ ହତଭାଗ୍ୟ ସମାଜର ଜଳବାୟୁର ବ୍ୟାଧି । ଯାଁ'କୁ ସଜାଡ଼ିବାକୁ ରାଷ୍ଟ୍ରମୁଖ୍ୟ ଏକବିଂଶ ଶତାବ୍ଦୀରେ ନୂଆ ନିୟମ ଲାଗୁ କରିଚନ୍ତି । ଯଥା :—ନିହାତି ଅତି ଅକ୍ତିଆର ଉତ୍ୟକ୍ତ ଅବସ୍ଥାରେ ସଂସଦ ସଭା ଗୃହରେ ଜଣେ ସଭ୍ୟ ଗୋଟିଏ ସେସନ୍‌ର ବୈଠକମାନଙ୍କ ମଧ୍ୟରେ କେବଳ ଦୁଇହଳ ଜୋତା କିମ୍ବା ଚପଲ ଅନ୍ୟର ଦିଗକୁ ନିକ୍ଷେପ କରି ପାରିବେ । ତା'ଠାରୁ ଅଧିକ ନୁହେଁ । ଯଦି ଅବୈଧାନିକ ଏବଂ ଅଶ୍ଳୀଳ ଭାଷାରେ କାହାକୁ କେବେ ଗାଳି ଦେବା ଆବଶ୍ୟକ ମନେହୁଏ ତା'ହେଲେ କି କି ଭାଷା ବା ଶବ୍ଦ ପ୍ରୟୋଗ କରି ସେ ଗୁଲଜ କରିବାକୁ ଚାହାଁନ୍ତି ତା'ର ଏକ ଲିଖିତ ନୋଟିସ ଚବିଶି ଘଣ୍ଟା ପୂର୍ବରୁ ବାଚସ୍ପତି ଓ ଉଦ୍ଦିଷ୍ଟ ସଭ୍ୟଙ୍କୁ ଦେବେ । ଏତଦ୍‌ବ୍ୟତୀତ ପ୍ରତିପକ୍ଷ ସମ୍ଭବତ ଓଲଟ ଗାଳିମନ୍ଦର ବ୍ୟବସ୍ଥା କରିପାରିବେ । ପ୍ରତି ବୈଠକରେ ନିର୍ଦ୍ଧାରିତ ଏକଘଣ୍ଟା କେବଳ ପରସ୍ପର ପ୍ରତି ଉଦ୍ଦିଷ୍ଟ ଗାଳିମନ୍ଦ ପାଇଁ ନିରୂପିତ ହେବ ଏବଂ ତାହା ବିବରଣୀଭୁକ୍ତ ହେବନାହିଁ । ଖବର କାଗଜମାନେ କିନ୍ତୁ ତାହା ଛାପି ପାରିବେ । ନଚେତ୍ ସଂପୃକ୍ତ ବିଧାୟକମାନଙ୍କର ଆପ୍ୟାସ ଓ ସ୍ତୁତି ଦଣ୍ଡିତହେବ । ଯେହେତୁ ବିଧାୟକ ପରିବେଶ ଏକ ସମ୍ମାନନୀୟ ବୈଧାନିକ ସଂସ୍ଥା, ଏ ଭିତରେ ଯେତେ ଯାହା ବର୍ବରତା ବିଭତ୍ସତା ଘଟିବ ସେ ସବୁର ମଧ୍ୟ ନିଛକ୍ ଆଭିଜାତ୍ୟ ଅଛି । କିନ୍ତୁ ପଦଲୋକ ସାଧାରଣ ଗୌଣ ମଣିଷ ଯଦି କେବେ କେଉଁଗୋଟେ ବିଧାନସଭା ବ୍ୟାପାରକୁ ନାପସନ୍ଦ କରି କି ନାକ ଟେକିଲା ତା'ହେଲେ ତାକୁ ସ୍ୱାଧିକାର ଭଙ୍ଗପାଇଁ ଛଅମାସ ଜେଲରେ ଠୁଙ୍କି ଦେବାରେ କୌଣସି ବାଧାନାହିଁ ।

ଖବର ଶେଷ ଅଂଶଟି ପଢ଼ି ଶୁଣାଇବା ପୂର୍ବରୁ ବିଷନ୍ ସାହେବ ଚଷମା ଖୋଲି ରୁମାଲରେ ରଗଡ଼ି ପୋଛିଲେ ଆଉ ଦର୍ଶକମାନଙ୍କ ଆଡ଼କୁ ଦରହସା ଆଖିରେ ଚାହିଁ ଭରି ଗୋଟାଏ ମଉଜିଆ ଭଉଁ ଶବ୍ଦ କରିଆରେ ନୂଆ ଶତାବ୍ଦୀରେ କେମିତି ପ୍ରକାଣ୍ଡ ବସ୍ତୁରପତି ଫଟାଫଟ୍ ନ୍ୟାୟ ବସ୍ତୁର

ଦେଇ ପାରନ୍ତି ତା'ର ନମୁନା ଦେଖେଇଲେ । ଆମେ ଗୁହାଁରୁ । ରାଜା ମହାରାଜାଙ୍କ ଦରବାର ହଲ୍ ପରି ଗୋଟେ କୋର୍ଟ ରୁମ୍ । ସେଠି ମଧ୍ୟ ଯୁଗୀପୁ କ ସାମନ୍ତବାଦୀ ଠାଣିରେ ଏତେ ଏତେ ସୁନା ରୂପା ଜରୀର କାମକୂଠ ଖମ୍ବ, ସ୍ୟାଣ୍ଡେଲପୁର୍ ଅତିକାୟ କ୍ୟାଣ୍ଡେଲ୍ ଷ୍ଟାଣ୍ଡ ଇତ୍ୟାଦି ଟଙ୍ଗା ହେଇଚି । ସେ ରାଜ୍ୟର ରାଜା ସିଏ କି ଖୋଦ୍ ହାଇକୋର୍ଟ ସିଏ ଆସୁଚନ୍ତି । ମୁଣ୍ଡରେ ପାଠ ଠେକା, ତା' ଉପରେ ମୁକୁଟ । ଡାହାଣ ହାତରେ ରୂପା କଲେଇ କରା ହାତୀ ଦାନ୍ତର ଶାସନ ଦଣ୍ଡ । ବାଁ କାଖରେ ଫୁଟେ ଲମ୍ବ ଥାକୁଲୁ ଥାକୁଲୁ ଲମ୍ବା ଧଳା ଲୋମ ପରିବୃତ୍ତ ବିଦେଶୀ କୁକୁର ଛୁଆଟିଏ ଜାକା ହେଇଚି । ଦୁ' ପାଖରେ ଦୁ' ଜଣ କୋର୍ଟ ପିଆଦା ଆଲଟ ଚାମର ଧରିଚନ୍ତି । ପଛରେ ଆଉ ଦୁ' ଜଣ ପିଆଦା ଗୋଟାଏ ଲମ୍ବ ନାଗେସାପ ପରି ନଳ ଲଗିଥିବା ମସ୍ତ ରୂପାର ଗମ୍ଭୁଜ ପରି ସୁନା କଳସଟିଏ ବୋହୁଚନ୍ତି । ନ୍ୟାୟଧୀଶ ଆଠ ଫୁଟ ଉଚ୍ଚା କୋର୍ଟ ଡାୟସ୍ ଉପରେ ବଙ୍କେଇ ହେଇ ସମ୍ରାଟ ଠାଣିରେ ବସିଲେ । ମଝିରେ ମଝିରେ ଗୁଡ଼ୁ ଗୁଡ଼ୁ ଶବ୍ଦ କରି ହୁକା ପିଆହେଲା । କୁକୁର ପିଲାଟା ଭୌ ଭୌ କରି ଦୁ' ଚାରିଥର ଭୁକିବାରୁ ତାକୁ 'ନୋ ନୋ ପିଙ୍କି, ଇଟ୍ ଇଜ ନଟ୍ ଡନ୍' କହି ଚାଟିଦ୍ କରାଗଲା । ନ୍ୟାୟାଧୀଶଙ୍କ ଇସାରାରେ ଏବେ କୋର୍ଟ ସୁରୁ ହେଲା । ଦୁ'ପକ୍ଷର ଓକିଲ ମହକିଲ ଯୋଉମାନେ ଯୋଡ଼ ହସ୍ତ ହେଇ ଠିଆ ହୋଇଥିଲେ ସେମାନେ ଅଣ୍ଟାବଙ୍କି ନଇଁକରି ରହିଲେ କୋର୍ଟ ଉଠିବା ପର୍ଯ୍ୟନ୍ତ । ମୂଉଳି ନାଚ ସଖୀ କଣ୍ଢେଇଙ୍କ ପରି ହାତ ଗୋଡ଼ ଲଡ଼ ଲଡ଼ କରୁଥିବା ଜଣେ ଠାକୁଆ ପେସ୍କାର ହୁଜୁରଙ୍କ କାନରେ ଦୁ' ପଦ କ'ଣ ଫୁସ୍ ଫାସ୍ କହିଲା, ଯା'ର ମର୍ମ ହେଲା ଯେ—ଏପାଖ ପକ୍ଷ ନ-ହକ୍ ବାଲା ହାଙ୍କେ ଠ କଟେଇ । ଆଉ ସେପାଖ ଲୋକ ବେଆଇନ୍ ନିଶା ଜିନିଷ ବିକୁଚି । ଦୁ' ଜଣଙ୍କର କଜିଆ ହେଇଚି ଯେ କିଏ ସରପଞ୍ଚ ହେବ । ଦୁହେଁ ସମାନ ଭୋଟ ପାଇଚନ୍ତି । କୋର୍ଟ ଆଉ ଦମେ ଜୋର୍‌ରେ ହୁକ୍କା ଶୋଷାଡ଼ି ରାୟ ଦେଇଦେଲେ ଯେ—ଇଏ ହେଉଚି ପ୍ରତିଯୋଗୀତାର ଯୁଗ । ଜଣକେ ପାଞ୍ଚ ପାଞ୍ଚ ଓଭର ବୋଲିଂ କରିବେ ଆଉ ଜଣକୁ । ଯା'ର ଅଧିକ ରନ୍ ହେବ ସେ ହେବ ସରପଞ୍ଚ । ଅସଲ ଜଜ୍ ଅଫ୍ ଏକ୍ସନ୍‌ର ଶୁଣାଣି ଫୁଣାଣି ଆଉ ଦରକାର ନାହିଁ ।

ଏହି ବୈପ୍ଳବିକ ନ୍ୟାୟ ବିଚାର ଶୁଣି ସମବେତ ଜନତା ଦୁ' ହାତରେ କରତାଳି ଦେଇ ନ୍ୟାୟାଧୀଶଙ୍କର ଜୟ ହେଉ ବୋଲି ଜଣାଇ ଦେଲେ ।

ସମ୍ବାଦର ମର୍ମ ବୁଝେଇ ବାଷନ୍ ସାହେବ କହିଲେ—

: ନିରୋଳା କମନ୍‌ସେନ୍‌ସ ବା ଉଚିତ ଉପସ୍ଥିତ ବୁଦ୍ଧି ହେଉଛି ଅସଲ ନ୍ୟାୟ ବିଚାରର ଉତ୍ସ ।

ତିନି ଆଙ୍ଗୁଠିଆ ସଲାମ ସମେତ ଟିକିଏ ଟିକିଏ ଦାନ୍ତ ନିକୁଟି ବାଷନ୍ ସାହେବ ସମ୍ବାଦ ପରିବେଷଣ ଶେଷ କଲେ ।

ବନ୍ଧ୍ୟା ମୋ' ଆଡ଼କୁ ଚାହିଁଚି ଆଉ ମୁଁ ତା' ଆଡ଼େ ! ଏଇ ବିଂଶ ଶତାବ୍ଦୀ ଆମ ଦୁ' ଜଣଙ୍କୁ ପ୍ରେମ ଶ୍ୱାସରୁଦ୍ଧ କରି ଆସୁଚି । ଆମେ ଦୁ'ଜଣ ତ ଗାଡ଼ିଚଢ଼ି ଏ ରାଜ୍ୟରେ ପଶିଲୁ । କିନ୍ତୁ ଆମ ଆଗରୁ ବାଷନ୍ ଆଉ ପତ୍ନୀଙ୍କ କାପ୍ତାପଲଟ୍ ରୂପ ଏ ଭୂଇଁରେ ଉଭୁରିଲା କେମିତି । ସବୁ ରକମ ସମାନ ଖାବଡ଼ା ଚରିତ୍ର ସବୁ ଯୁଗରେ ଆଚରଣ କରିବାକୁ ବାଧ୍ୟ କି ?

( ପାଞ୍ଚ )

ରାତି ସାରା ଅନିଦ୍ରା । ପୁଣି ଯାହାର କ୍ରମ । ଆମେ ଦୁ'ଜଣ ଦିନ ଗୋଟେରୁ ଶୋଇ ଯାଇଚୁ ଯେ ନିଦ ଭାଙ୍ଗିଲା ବେଳକୁ ରାତି ଦୁ' ଘଡ଼ି । କିଏ କବାଟରେ ଆୱାଜ ଦଉଚି । ପାଖ କମରାରୁ ବନ୍ଧ୍ୟା ଆଖି ମଳି ମଳି ଉଠିଲା । ଗୋଟାଏ ଚକଚକିଆ ଡ୍ରେସିଂ ଗାଉନ୍ ପିନ୍ଧି ଗିରଧାରୀ ମୋ ଆଗରେ ଠିଆ । ବାହାକୁ ହଲେଇ କହିଲା—

: ଉଠ ଶୀଘ୍ର ଭାଇନା । ଆମେ ତିନିହେଁ ନଗର ପରିକ୍ରମା କରିବା । ତମକୁ ଏବଠୁ ସବୁ ଖୋଲି ନ କହିଦେଲେ, ସବୁକଥା ସମଝେଇ ନ ଦେଲେ ଏ ରାଜ୍ୟର ଚଳଣି କାଇଦା ତମ ଦୁ' ଜଣଙ୍କୁ ଅନ୍ଧ କରିଦେବ । ତାଜ୍ଜବ୍ କରିଦେବ ।

ପଚାରିଲି : ରାତିଟାରେ କୁଆଡ଼େ ଯିବା ?

: କ ଗତି ? ଏ ରାଜ୍ୟରେ ତ ରାତିରେ ଇ ଲୋକ ଆତଯାତ ହୁଅନ୍ତି । ଅସଲ କାମର ଶ୍ରମର ସମସ୍ତ ହେଲା ରାତି । ଦିନଯାକ ମଧ୍ୟଗୁଳ ନିଦ ଓ ଆରାମ୍ ।

ବନ୍ଧ୍ୟା କହୁଚି —

: ହଉ ଚାଲ, ଉଠ । ରାସ୍ତାଯାକ ତ ଉଜ୍ଜ୍ୱଳ ଆଲୁଅ । ଲୋକବାକ ଭରପୂର । ମଟର, ଟ୍ରାମ୍, ସିନେମା, ବଜାର ସବୁ ଉଚ୍ଛୁଳୁଚି । ମତେ କେମିତି କେମିତି ଲାଗୁଛି । ଚାଲ ଦେଖିବା ବୁଲି ଆସିବା ।

ତିନିହେଁ ବାହାରି ପଡ଼ିଲୁ । ଗିରିଧାରୀର ନୂଆ ମଡ଼େଲ ମଟର ଗାଡ଼ିରେ ବସିଲୁ । କହିଲି ଯେ—

: ବଜାର ହଟ୍ଟଗୋଳ ଛାଡ଼ି ଗୋଟାଏ ଏମିତି ଜାଗାକୁ ନେଇ ଯା ଯେଉଁଠି ଗୋଟେ ବଡ଼ ପୋଖରୀ କୂଳ ଉପରେ ଘାଷ ଥିବ, ସୁଲୁ ସୁଲୁ ପବନ ବୋହୁଥିବ, ସେଇଠି ବସି ଗପ କରିବା । ଏ ରାଜ୍ୟରେ ପରା ସବୁ ଋତୁ ଫଗୁଣ ।

ମଟର ଚାଲିଚି । କୈଫିୟତ ଦଉଚି ଗିରିଧାରୀ—

: ଅପା, ତୁ ଭାବୁଥିବୁ ମୁଁ ମିଛୁଆଟେ ବୋଲି । ସତରେ ମୁଁ ଆସି ଏଠି ଚାକରୀ ପାଇଗଲି ପରେ ଏଠା ପିଲାଏ ମତେ ଧମକ ଦେଲେ ଯେ ବାହାରର ଅନାର୍ଯ୍ୟ ଅପାଂକ୍ତେୟ ଲୋକେ ତାଙ୍କ ରାଜ୍ୟରେ ତମ୍ବୁ ପକେଇ ପାରିବେନି । ମୁଁ ବି ଟିକେ ଦାଦାଗିରି ଦେଖେଇଲି । ପୁଲିସ୍ ମାଜିଷ୍ଟ୍ରେଟ୍‌ଙ୍କୁ କହିବି ବୋଲି କହିଲି । ସେମାନେ କାହିଁକି ପରୱା କରନ୍ତେ । ପୁଲିସ୍ ହାକିମ ମତେ କହିଲେ ଯେ, ଏଠି ଏତଲା ଦିଆହୁଏ ନାହିଁ । କିଏ କାହା ବିରୁଦ୍ଧରେ ଅଭିଯୋଗ କରେ ନାହିଁ । ଯା'ର ଅଧିକ ବଳ, ଅଧିକ ବୁଦ୍ଧି, ଯିଏ ଅଧିକ ପରିବାର ସେଇ ତ ଶେଷରେ ରାଜୁତି କରିବ । ଚିରନ୍ତନ "ନ୍ୟାଚୁରାଲ ଜଷ୍ଟିସ୍" 'ଲ ଅଫ୍ ନେଚର', 'ସର୍ଭାଇଭାଲ ଅଫ୍ ଦି ଫିଟେଷ୍ଟ' । ଆଦିମ କାଳରୁ ଏ ଯାବତ୍ ଏଥିରେ କ'ଣ ବ୍ୟତିକ୍ରମ ହେଲାଣି ନା ହବ । ଏଇ ଐଶ୍ୱର୍ଯ୍ୟମୟୀ ଫାଲ୍‌ଗୁନୀ ନଗରରେ ପୁଲିସ-ପଲଟଣ କାହା ମର୍ଜିରେ କ କାମରେ ହସ୍ତକ୍ଷେପ କରିବା ମନା । ତମେ ଯଦି ସ୍ୱୟଂ ଅପାରଗ ମରିଯାଅ, ମ୍ୟୁନିସିପାଲିଟି ଡେଥ୍ ରେଜିଷ୍ଟରରେ ନାଁ

ଚଢ଼େଇ ଦିଅ, କାମ ଫତେ । ସେଇଠୁଁ ଅପା ମୁଁ ଯୁଦ୍ଧ'ର ସମାଧାନର ସୁରାକ୍ ପାଇଗଲି । ପୁଲିସ୍ ବାବୁଙ୍କୁ ସଲାମକରି ସିଧା ଗଲି ମ୍ୟୁନିସିପାଲ୍‌ଟି ଅଫିସକୁ । ତାଙ୍କ ଇନ୍‌ସ୍‌ପେକ୍ଟର୍‌ଙ୍କୁ ପଚିଶ ଟଙ୍କା ଡ଼ାଡଗୁଞ୍ଜା ଦେଲି ଆଉ କହିଲି ମୁଁ ମରିଯାଇଚି । ସିଏ ତାଙ୍କ ଚମଡ଼ାବନ୍ଧା ମୋଟା ରେଜିଷ୍ଟରରେ ଲେଖିଦେଲେ ଯେ, ଆର ରାଜ୍ୟରୁ ଆସିଥିବା ଗିରିଧାରୀ ସାମନ୍ତ ମରିଗଲା । ଆଉ ମୁଁ ଏବେ ଜନ୍‌ସୋନ୍ ରସିନ୍ । ଏଇ ଦେଶର ଲୋକ ଜାହାଜରେ ପଳେଇଥିଲି ବିଦେଶ । ଏବେ ଫେରି ଆସିଚି । ତା'ପରେ କମ୍ପ୍ୟୁଟର୍ ଡାଇରେକ୍‌ଟରଙ୍କୁ ଟେବୁଲ ତଳେ ପନ୍ଦର ହଜାର ଟଙ୍କା ବଢ଼େଇ ମୃତ ଗିରିଧାରୀ ସାମନ୍ତ ଜାଗାରେ ମତେ ଚାକିରି କରେଇ ଦବାକୁ କହିଲି । ସିଏ ମୋ ଆଡ଼କୁ ଚାହିଁ ମୁରୁକି ହସିଲେ । କହିଲେ ଗିରିଧାରୀ ଭାରି ଦକ୍ଷ ଇଞ୍ଜିନିୟର ଥିଲା । ତମେ ତା' ଭଳିଆ ପାରିବାର ହବାକୁ ଚେଷ୍ଟା କର । ଚାକିରି ହେଇଗଲା । ମୋ ସାଙ୍ଗରେ ହେଇଦିନୁ ଆଉ କେହି ଗଣ୍ଡଗୋଳ କରୁନାହାନ୍ତି । କ'ଣ ବୁଝିଲୁ ଅପା ?

ସେଇ ପୁରୁଣା ଲୋକ ଅଛନ୍ତି, ଅନ୍ଧକାର ସମେତ ନାଁ । ବଦଳେଇ ଦେଲେ । ଭେକ ବଦଳେଇ ଦେଲେ ଠିକଣା ବଦଳିଗଲେ । ଆତ୍ମାପୁରୁଷ ବଦଳିଗଲେ । ଶତାବ୍ଦୀ ବଦଳିଗଲା । ସାବାସ୍ !

ରାତିରେ ବନ୍ଧ୍ୟା ମୁହଁରେ ରକ୍ତ ଉଙ୍କୁଟିଚି । ଓଠରେ ଅବଜ୍ଞା—

. ଗୋଟେ ନବରଙ୍ଗ ଲଗିଚି ଏଠି । ନାଇଁ ? ଖାଲି ତାମସା କରୁଚ । ଅଭିନୟ କରୁଚ !

ଗିରିଧାରୀ ଚୁପ୍ ହେଇଯାଇଚି । ଅସ୍ତ୍ର ଧର ଅସ୍ତ୍ର ଧର ବୋଲି କହି ମୁଁ ବନ୍ଧ୍ୟାର ପିଠି ଆଉଁସିଲି । ସିଏ ମୋ ଛାତିକୁ ଆଉଜି ଆସି ସୁଁ ସୁଁ ହେଇ କାନ୍ଦି ଲାଗିଚି । ତା'ର ଜାଗତିକ ସମ୍ଭାର ଆଉ ନୈତିକତାର ପ୍ରତ୍ୟୟ ଆଜି ଏଇ ନୂଆ ଭୂଖଣ୍ଡରେ ବିପନ୍ନ । ଏଠି ସମସ୍ତେ ଅଭିନୟ ସର୍ବସ୍ୱ ! ଆତ୍ମାରେ ତଲ୍ଲୀନତା କାହିଁ !

ଫଗୁଣ ରାତି । ଆକାଶରେ ଛିଣ୍ଡା ମେଘ । ସତକୁ ସତ ମାଳାମୁଣ୍ଡି ଚଳିକାପରି କେଡ଼େ ସୁନ୍ଦର ଆଉ ବିରାଟ ହ୍ରଦଟିଏ । ଜହ୍ନ ଆଲୁଅ ଘୋର ଘୋର

ହୋଇ ପଡ଼ିଚି ପାଣିରେ । ଢେଉ ସବୁ ନୂଆ ଭୂଆସୁଣୀ ପମ୍ବଲ ପାଳ ବୋହୂପରି ଚିକ ଚିକ ହସ କାନ୍ଦରେ ଓଲଟ ପାଲଟ ହଉଚନ୍ତି । ଆମେ ତିନିହେଁ ତା'ର କୂଳରେ ପ୍ରାମାଣାଖ୍ୟ ମହାବଟ ମୂଳରେ ବସିପଡ଼ିଲୁ । ହୃଦୟ ଉଶ୍ବାସ ହଉଚି । କିନ୍ତୁ ମନ ଭିତରେ ଅସୁମାରି ଅସମାହିତ କନ୍ଦଳ । ହ୍ରଦର ଆର କୂଳରେ ଦୁଇଟି ଗୁଇ ଉଠି ଆସୁଛନ୍ତି ଆଉ ଏ ଆଡ଼କୁ ଆଗଉଛନ୍ତି । ପାଖ ହୋଇଗଲାରୁ ମୁଁ ଚହ୍ନିଲି । ଇଏ ତ ପଲ୍ଲବୀ ! ରୂପ ଗରବଣୀ ସଂସାରକୁ କାବୁ କଲା ଭଳି ବିରାଟ ଶିଳ୍ପସଂସ୍ଥାର ଅଭିଜାତ ମେନେଜିଂ ଡିରେକ୍ଟର । ତା' ପଛକୁ ବିଚକ୍ଷଣ ପାରିବାରି ହଟେଚମଟ ବିଦ୍ୟାର ପାରଙ୍ଗମ ପରାସ୍ତ ପୁଞ୍ଜିପତି ଦଲାଲ୍ ବାଣିଜ୍ୟର ବାପା ସ୍ବପନ୍ ସାମନ୍ତରାଏ । ଦି'ଜଣଯାକ କାକୁସ୍ଥ ଭଙ୍ଗୀରେ ଆମ ଆଗରେ ଠିଆ । ଜହ୍ନ ଆଲୁଅରେ ଠିକ୍ ମୁଁ ବାରିପାରୁଚି ସେମାନଙ୍କ ଖାକି ପଶମ ପୋଷାକ ରଙ୍ଗ ଉଡୁରା ଦୂଣଖିଆ ଚିରା ଫୁଟା ଅକାଳ ଦାରିଦ୍ର୍ୟ ପରି ଛିଣ୍ଡି କର୍ଦ୍ଦମକ୍ତ ହୋଇ ଓହଳୁଚି । ହାତ ଗୋଡ଼ ଶୀର୍ଣ୍ଣ, ଦେହରେ, ମୁହଁରେ ଅସ୍ଥି କଙ୍କାଳ ଛଡା ଆଉ କିଛି ନାହିଁ । ଟି. ଭି. ସମ୍ବାଦ ପ୍ରଜ୍ଞାପକଙ୍କ ନୂଆ ରାଜ୍ୟର ଓଜସ୍ବିନୀ ପତ୍ନୀଙ୍କ କୁଆଡ଼େ ଉଭେଇ ଯାଉଚି ।

ସ୍ବପନ୍ ସାଆନ୍ତ ଶୁଖିଲା ହସ ହସି ଆମକୁ ସଙ୍କେତ କରି କହୁଚନ୍ତି—

: ପିଲାମାନେ ଭୁଲ୍ ବୁଝିବନି । ଇଏ ଆଉ ଏକରକମ ରଙ୍ଗଭୂମିର ଅଭିନୟ । ଅପରିଗ୍ରହ ଦାରିଦ୍ର୍ୟ କେମିତି ଦେହକୁ, ଆତ୍ମାକୁ ଓହ୍ଲାଇ ଆସେ ସେଇଆ ମୁଁ ବୁଝଉଥିଲି ମୋର ଏଇ ଅଲଅଳ ସଖୀ କଟଣୁଇ ପଲ୍ଲବୀକୁ । ଯୋଉ ଯୁଗ, ମନ୍ବନ୍ତର, କି ଶତାବ୍ଦୀ ହେଉ, ବଂଶ ହଉ, ଆତ୍ମାମାନେ ଖାଲି ଖୋଳପା ବଦଳେଇ ଅଭିନୟ କରି ଚାଲିବେ । କିଏ ସେଇ ନବଜିଆ ଯୁଗ ପୁରୁଷ କହିଥିଲା ଯେ, ପୃଥିବୀ ଏକ ରଙ୍ଗମଞ୍ଚ, ଆଉ ଆମେ ସବୁ ଖାଲି ଖାଲି କିଛିସମୟ ସାମୟିକ ଅଭିନେତା ଅଭିନେତ୍ରୀ । ଯାହା ଚାଲିଚି । ସୁଆଙ୍ଗ ଚାଲିଚି । ମୁଁ ଏବେ ଅଧ୍ୟାତ୍ମ ବିଦ୍ୟାରେ ରତ । ସାଂଖ୍ୟ ଓ ପାତଞ୍ଜଳ

ଶାସ୍ତ୍ରରେ କୁଶଳୀ ସୌନକ ନାମକ ବ୍ରାହ୍ମଣର କାୟା ପ୍ରବେଶ କରିଛି । ନାଁ । ଠିକଣା ବଦଳେଇ ଦେଇଛି । ଆମର ମହାତ୍ମା ଜନକଙ୍କ ଆତ୍ମା ସୈର୍ଯ୍ୟ ଗାଥା ଗାୟନ ପରି ଦ୍ୱିବିଧ ଦୁଃଖ । ଗୋଟିଏ ହେଲା ମନ ଆଉ ଦେହ ସମ୍ଭବ । ଆଉ ଗୋଟିଏ ଆଧ୍ୟାତ୍ମିକ ଓ ଆଧିଭୌତିକ । ବିଷୟ ଚିନ୍ତା ଓ ବିଷୟାନୁରାଗର ଉତ୍ତି ଭୂମି ସ୍ନେହ । ଏଣୁ ରେ ମୃତ ମତ ଆତ୍ମାମାନେ ନିର୍ବୈର ଓ ସ୍ୱାଧୀନ ହୋଇ ରହ । କାଷ୍ଠ ଯେପରି ସ୍ୱକୀୟ ଅବୟବରୁ ଜାତ ହୁତାଶନ ଦ୍ୱାରା ବିନଷ୍ଟ ହୁଏ, ସେପରି ଅକୃତାତ୍ମା ଚଞ୍ଚଳ ମତି ପୁରୁଷମାନେ ସ୍ୱୀୟ ଦେହଜାତ ଲୋଭ ଦ୍ୱାରା ବିନାଶ ପ୍ରାପ୍ତ ହୁଅନ୍ତି । ଏଇ ଯେଉଁ ନୂଆ ଦ୍ୱଂଶ୍ରି ହେଉ ବା ପରବର୍ତ୍ତୀ ଶତାବ୍ଦୀ ହେଉ ଆମେ ସବୁ ଆତ୍ମାର ସେଇ ନିଗୂଢ଼ ଚମକପ୍ରଦ ସଞ୍ଜୀବନୀ ଅଟେରଗ୍ରହ ଜପମନ୍ତ୍ରଟି ଗାଇଚାଲିବ । ମୁଁ ଓ ଅଧୁନାତମ ସବୁ ବିଦ୍ୟାରେ ପାରଙ୍ଗମ ପଣ୍ଡିତ ବିହେଁ ଯୋଗୀ ଯୋଗିମା ସାଧିବାକୁ ତିଆର । ମାର୍‌ଗୋଲି ଏଇ ଏକବିଂଓ ଦ୍ୱାବିଂଶ ତ୍ରୟୋବିଂଶ ଶତାବ୍ଦୀମାନଙ୍କର ଆକସ୍ମିକ ଉତ୍ତରଣକୁ । ଅଭିନୟ ଶେଷ ହେଲା । ଯାତ୍ରା ସୁଆଙ୍ଗରେ ଯବନିକା ପଡ଼ିଯାଉ । ତମମାନଙ୍କୁ ଆମେ ବିହେଁ ବର୍ଜନ କଲୁ । ଉଭେଇ ଯାଉଚୁ ଏବେ ।

ଏତିକିବେଳେ ଗିରିଧାରୀ ହିଁ ହିଁ ହୋଇ ବିକଟାଳ ହସ ହସିଲା । କହୁଚି—

: ନୂଆ ଶତାବ୍ଦୀରେ ବିବାକ୍ ସବୁଲୋକ ଯେ ଏମିତି ପାଗଳ ଉନ୍ମାଦ ନ ହେବେ କିଏ କହି ପାରିବ !

କେଜାଣି କାହିଁକି ବିନ୍ଧ୍ୟାର ଜଡ଼ସଡ଼ ତନୁଯଷ୍ଟି ଏକା ବିଭସ୍ର ବେପଥୁରେ ଥରିବାକୁ ଲାଗିଲା । ତୋଳା ଓଲଟେଇ ଓଷ୍ଠାଧାର ଆଉ ନାସାଗ୍ରକୁ ପ୍ରକମ୍ପିତ କରି କହୁଚି ସିଏ—

: ଭାଇନା ପଳେଇବା । ଏ ରାଜ୍ୟ ଗୁଣ୍ଡ଼ ଝଅଠ ଆମ ଘରକୁ ପଳେଇଯିବା । ସମୁଦ୍ରର ଓଲଟା ଦିଗରେ । ମୁଁ ଏକବିଂଶ ଶତାବ୍ଦୀ ପାଇଁ ନିତାନ୍ତ ଅପ୍ରସ୍ତୁତ !

— ୦—

# କାନି

## —ଏକ—

ଗାଁ କନିଆଁର ଅସଜଡ଼ା ରୂପଶ୍ରୀ ପରି ଦୁଣ୍ଡିଆ ଜହ୍ନର ବଙ୍କା ଧନୁ ଝି' କାନରେ ଝି'ଖଣ୍ଡ ଛିଣ୍ଡା ମେଘର ଝୁମ୍ପା ଓହଳାଇଥିଲେ ବି ଏଇ ଝରକା ଭିତରୁ ଘର ନବେଳା ଚହ୍ଲା ଚହ୍ଲା ଆପଣାର ଲାଗୁଚି ତାକୁ । ଏଇ ପରି ତାଙ୍କ ଗାଁର ଜହ୍ନ । ଆଉ ଖଣ୍ଡ ମଣ୍ଡଳରେ ଏମିତି ଜହ୍ନ କେବେ ଉଇଁ ନଥିବ । ତା'ର ନିଜ କଥା ଦେଖାଯାଉ । ଖରାଦିନିଆଁ ଜଙ୍ଗଲର ଖୁଦ୍ରାଖଢ଼ ଗହଳ ଗଛ ବୃକ୍ଷରୁ ଶୁଖିଲା ପତ୍ର ଗଦା ଗଦା ହୋଇ ପଡ଼ିଚି ତଳେ । କୁଆଡ଼ୁ କେମିତି ନିଆଁ ଧରିଲା ଜଣାନାହିଁ । ସବୁତକ ପତ୍ର ହୁଳସ୍ଥୂଳ ହୋଇ ପୋଡ଼ୁଥିଲାବେଳେ ଗୋଟାଏ ବୋଲି ଓସ୍ତପତ୍ର ଖସି ଚାଲି ଆସିଛି ନିଆଁ ଧାସରୁ । ବଞ୍ଚିତ ଯାଇଛି । ଶୁଣିଥିଲେ ବି ଉଡ଼ି ତ ପାରୁଚି । ସିଏ ନିଜେ ସେଇପତ୍ର ବକଟେ ପତରେ କି ? ନିଜର ପରିଚୟ କ'ଣ ? ଏମିତି ଗୋଟେ ଘମାଘୋଟ କୁଆରିଆ ନଈ ସୁଅରୁ ଉଭେଇ ଯାଉଥିବା କୁନି ଲହଡ଼ିଟିଏ—ବା ଅମେଇସା ରାତିର ଅଣେରୁଣ ବାଆ ବତାସ ବର୍ଷାରୁ ଖସି ଯାଉଥିବା ଭୟାର୍ତ୍ତ ଜ୍ୟୋତିରିଙ୍ଗଣ ବିନ୍ଦୁଏ । ଯାଇ ହେଲେ ବି - ଯେତେ ଶ୍ରେଷ୍ଠ ସ୍ଥାନମାନ ହେଲେ ବି ତା'ର ଆକାର ଅଛି, ଅବସ୍ଥିତି ଅଛି, ଚେତନା ଅଛି—ମାଟିରେ ପଦଚିହ୍ନ ଅଛି । ଏଇ ହେଲା ହରନାଥ । ଯାହା ଘରେ ରହୁଚି, ସିଏ ତା'ର କେହି ନୁହନ୍ତି । ଆଶ୍ରା ଦେଇଛନ୍ତି । ଜଗତରେ ସବୁ ଅଲୋଡ଼ା ଅପଦାର୍ଥ ପାମରମାନଙ୍କୁ ଆଶ୍ରୟ ମିଳିଯାଏ । କା'କୁ ଗଛତଳେ, କା'କୁ ଫୁଟ୍‌ପାଥ୍‌ରେ କା'କୁ ଅଖାଡେଇ ଷ୍ଟେସନ ଦାଣ୍ଡର ସିଗ୍‌ନାଲ ହାଉସ୍ ପାଟେଶ ସନ୍ଧିରେ । ଏଇ ଅଧମକୁ କିନ୍ତୁ ଖୋଲା ଭୂଇଁରେ ସାଉଁଟି ଆଣି ଯୋଉ ସାନ ଗାଁର ଚିକ୍‌କଣ ଗୋବର ଲିପା ଖୋଷିଦିଆ ମାଟି କାନ୍ଥର—ନଡ଼ା ଛପର ଘରେ ଆଶ୍ରା ଦିଆ ହୋଇଚି—ତା'ର ଝରକା ଭିତରୁ ଏଇ ଗାଁର ନିଛକ ସ୍ୱତନ୍ତ୍ର

ଠଣିରେ ଶୋଭା ପାଉଥିବା ଲଜ୍ଜକୁଳୀ ଜହ୍ନ ଦେଖାପଡେ ସବୁ ଘଡିରେ ବରାବର । ମାନେ ଯୋଉ ତିଥିରେ ଜହ୍ନ ମୁହଁ ଦେଖାଇବାକୁ ବାଧ ସେଇ ଘଡିଗୁଡ଼ିକରେ ଅନନ୍ଦରତ ।

— ଧୂଳି —

ହରନାଥର ଆଉ ପାଠି ଫିଟୁନି । ପଲ୍ଟ କଥା ବ ତା'ର ମନେ ନାହିଁ । ଡାକ୍ତରଖାନାରୁ ଖଲାସ ହେଲାବେଳେ ତାକୁ ଅପରେସନ୍ କରି ଆରୋଗ୍ୟ କରିଥିବା ସର୍ଜନ କହିଲେ ଯେ ଗୋଟେ ମସ୍ତବଡ଼ ଦୁର୍ଘଟଣାରୁ ସେ ରକ୍ଷା ପାଇଯାଇଛି । ହାତରୁ ଖଣ୍ଡେ କାଟିବାକୁ ପଡ଼ିଲା; କିନ୍ତୁ ବାକି ପୁରା ଶରୀରଟା ଗୋଟାକୁ ରହିଛି । ଲେଭେଲ କ୍ରସିଂଠି ମଟରରେ ଆଉ ଟ୍ରେନ୍‌ର ଧକ୍କା ହେଇଗଲା । ବସ୍ ଡ୍ରାଇଭର୍ ବେହୁସିଆର୍ ରେ ଥିଲା । ଖଣ୍ଡ ଆ ଖାବରା ହେଇଥିବା ଆଉ ମରିଥିବା ସବମୋଟ ଚଉଦ ଜଣଙ୍କ ଭିତରୁ ହରନାଥ ଜଣେ । ସେ କାହିଁକି ସହରକୁ ଆସିଥିଲା, କୋଉଠି ତା'ଘର, ତା'ର ବାପା ମା' ଭାଇ ଭଉଣୀ ସବୁ କଏ—କିଛି ତା'ର ମନେ ନାହିଁ । ମସ୍ତିଷ୍କ ଭିତରେ କ'ଣ ଗୋଟାଏ ପୁର୍ଜା ଅଚଳ ହୋଇ ପଡ଼ିଛି ଯେ ଆକ୍ସିଡେଣ୍ଟ ପୂର୍ବର ସମସ୍ତ ସ୍ମୃତି ତା'ର ସଫା ହେଇ ଯାଇଛି । ପାଠ ପଢ଼ିଥିଲା ନିଶ୍ଚୟ, କାରଣ ହାସ୍ପାତାଳରୁ ବାହାରି ଆଗ ଦି' ଗୋଟିଖଣ୍ଡ ଓଡ଼ିଆ ଇଂରାଜୀ ଖବର କାଗଜ ପୁରୁଣା ଅଭ୍ୟାସବଶତଃ କିଣି ପକାଇଲା । ଆଉ ପାଖ ଦୋକାନରୁ ଗୋ'କପେ ଧରି ବସିପଡ଼ିଲା । ମଜା ଖବର ସବୁ ବାହାରିଥିଲା ମନେ ପଡ଼ୁଛି । ଷ୍ଟକ୍‌ହୋମ୍‌ର ଜଣେ ମସ୍ତବଡ଼ ଧନୀଲୋକ ମଲାବେଳକୁ ତା'ର ସମସ୍ତ ସମ୍ପତ୍ତି ଉଇଲ୍ କରି ଦେଇଗଲା ପୋଷା କୁକୁର । ରେସ୍‌କୋର୍ସର ଘୋଡ଼ା ଆଉ ଗୁରି ଛଅଟା ପୋଷା ଚଢ଼େଇଙ୍କ ନାଆଁରେ । ଉଇଲ୍‌ରେ ଲେଖିଲା ଯେ ଏଇମାନେ ହଉଚନ୍ତି ମଣିଷଠୁ ଅଧିକ ବିଶ୍ୱାସଯୋଗ୍ୟ, ଅଧିକ ଅନୁରକ୍ତ ବନ୍ଧୁ । ଏମାନେ କେବେହେଲେ ତା'ର ପୁଅ, ବୋହୂ, ଭାଇ ଓ ବନ୍ଧୁଙ୍କ ପରି ତାକୁ ଯଥାଶୀଘ୍ର ପାଗଳା ଗାରଦକୁ ବା ଯମପୁରକୁ ପଠେଇ ଦବାକୁ ତତ୍ପର ହେବେ ନାହିଁ । ପାଇବା ପୂର୍ବରୁ ହଜଯାଇଥିବା ସାନ୍ତ୍ୱନାମାନଙ୍କୁ ଅଣ୍ଡାଳ

ଅଣ୍ଡାଳ ଏତେବଡ଼ ମାଲ୍‌ଦାର୍ ଲୋକଟା ଠୋ କରି ମରିଗଲା ବିଚରା ! କେଡ଼େ ଦୁଃଖ ଲାଗିଥିବ ! ଆହା ! ତା'ର ଉତ୍ତରାଧିକାରୀ ଅପତ୍ୟମାନେ ଯେଉଁମାନେ ଛଦାମ୍‌ଟେ ହେଲେ ସମ୍ପତ୍ତିରୁ ଭାଗ ପାଇଲେନି !

ପୁଣି ଆଉ ଏକ ଜବର ଖବର । ଦଶ ବାରବର୍ଷ ତଳେ ମରି-ଯାଇଥିବା ଜଣେ ଅସମାନ୍ୟ ରୂପସୀ ଫିଲ୍ମ ଅଭିନେତ୍ରୀଙ୍କର ଅନ୍ତର୍ବାସ ଦୁ'ଖଣ୍ଡ ତାଙ୍କ ପୁରୁଣା ପେଡ଼ିରୁ ଉଦ୍ଧାର କରି ସ୍ୱପୁତ୍ର ତାଙ୍କର ପ୍ରାପ୍ୟ ଦେଢ଼ ଲକ୍ଷ ଡଲାର ମୂଲ୍ୟରେ ନିଲାମ କରିଦେଲେ । ସେଦିନ ପୁଣି ନିଲାମ ଗୃହରେ ବଡ଼ ବଡ଼ ଲଢ଼ୁଆ 'ଆଣ୍ଟିକ୍‌ସ୍' ଆଉ ଆର୍ଟ କଲେକ୍ଟର୍‌ଙ୍କର ଭିଡ଼ ଦେଖିବ କିଏ ! ଇଏ ବି ଏକ ଖବର । ମହୀଶୂର ବିଧାନସଭା ବିଷାକ୍ତ ନକଲି ମଦ ପିଇ ପଞ୍ଚତ୍ୱ ଗତ ହୋଇଥିବା ଅଢ଼େଇଶ ଲୋକଙ୍କର ଆତ୍ମାର କୁଶଳାର୍ଥେ ତିନି ମିନିଟ ନୀରବ ପ୍ରାର୍ଥନା କଲେ ।

ସବୁଠୁଁ ଚଟକା ଖବର—ଯୁବକ ଏମ୍. ଏଲ୍. ଏ ତାଙ୍କ ଶାଳୀଙ୍କୁ ହରଣଚାଲ କଲେ । —ତା ତଳେ କିଏ ପେନ୍‌ସିଲ୍‌ରେ ଲେଖିଦେଇଛି—ଆଉ କିଏ ଶାଶୁଙ୍କୁ ହରଣଚାଲ କରିଥାନ୍ତେ ?

ଏଗୁଡ଼ାକ ହରଦିନ୍ ଘଟିଲା ଭଳି ଘଟଣା ନୁହେଁ ବୋଲି କାହିଁକି ତାର ବିଶ୍ୱାସ ଆସୁ ନଥିଲା; କାରଣ ସଂସାରରେ କେମିତି ସବୁ ଘଟଣା ଘଟେ ତାର ଦେହଘଷିଆ ଅଭିଜ୍ଞାନ ଆକସିଡେଣ୍ଟ ଦିନଠୁଁ ଲୋପ ପାଇଯାଇଥିଲା । ପଢ଼ି ପାରୁଥିଲା, ଶୁଣି ପାରୁଥିଲା ସିଏ ସବୁ । କିନ୍ତୁ ବାକ୍ ଶକ୍ତିରହିତ ହୋଇ ମୁହଁରେ ଭାଷା ଉଛୁଟି ନଥିବାରୁ ଯାହା ସେ କହିବାକୁ ଚାହୁଁଥିଲା ତାହା ଠାରରେ ଜଣାଇ ଦେଉଥିଲା । ସେଇଥିପାଇଁ ତାର ସଚଳ ଡାହାଣ ହାତଟିର ଆଙ୍ଗୁଠିର ବିଭିନ୍ନ ମୁଦ୍ରା ବେଶ୍ କାମ ଦଉଥିଲା । ବାଁ ହାତଟା ତ କହୁଣୀଠୁ କଟା । ହାସ୍‌ପାତାଳରୁ ଫେରିଲା ବେଳେ ତାର ଚମଡ଼ା ମୁଣିରେ ବାକି ଯାହା ପଚିଶ୍ ତିରିଶ୍ ଟଙ୍କା ବଳିଥିଲା, ସେଇଥିରୁ ଖର୍ଚ୍ଚ କରି ସେ ଚାରିଦିନ ସହରରେ ଗଳିକନ୍ଦି ବୁଲିଲା । କେହି ଗୋଟିଏ ଲୋକ ତାକୁ ଚିହ୍ନିବାର ସଂକେତ ଦେଲେ ନାହିଁ—କି ସିଏ କା' ସାଙ୍ଗରେ ସମ୍ପର୍କ ଯୋଡ଼ି

ପାରିଲା ନାହିଁ । ତାର ଦୟୁମାୟୁ ଭାବେ ଲଟିକିଥିବା ଅଧାହାତଟି ଅବଶ୍ୟ ସମସ୍ତଙ୍କ କୌତୁହଳର ବସ୍ତୁ ହୋଇଥିଲା । କିନ୍ତୁ ସେଥିରେ ଲାଭ କଣ ? ଜ୍ଞାତ ପରିଚୟହୀନ ମୂଳ ଅଧା ପଙ୍ଗୁ ଲୋକଟାଏ ବା କାହାର କାମରେ ଆସିବ ଯେ ତାକୁ ପେଟ ପୋଷିବା ପାଇଁ ଧନ୍ଦା ମିଳିବ ।

— ତିନି —

ଟାର ଦୁର୍ଦ୍ଦିନତମ ଦୁର୍ଦ୍ଦିନ ଆସିଗଲା । ସେଇଦିନ ଯେତେବେଳେ ପାଖରେ ଅଉ ପଇସାଟିଏ ନାହିଁ ଓ ପ୍ରବଳ ଭୋକ ହଉଚି ବୋଲି ସେ ମୁହଁ ଖୋଲି କାହାକୁ କହିବାର ଯୁ' ନାହିଁ । ଭଗବାନ ଅବଶ୍ୟ ବେଳେ ବେଳେ ଆଶ୍ଚର୍ଯ୍ୟ କଥା ସବୁ କରିଥାନ୍ତି । ସେମିତି କଥାଟାଏ ଘଟିଲା । ହ'ଠା ଜବ୍‌ବର ପଣ୍ଡ୍ରା ଯୋଚା ହୋଇଥିବା ଆଉ ଝୁଲି ଝୁଲି ଗଡ଼ୁଥିବା ଡୋଳି ଶଗଡ଼ଟିଏ ସହରର ଗୁଡ଼ ଗାଁ ମୁହାଁ ଧରିଚି । ଏଇ ଲୋକଟିକି ଦେଖି ଘଟକେଇ ଶଗଡ଼ିଆ ହ' ହ' କରି ଗାଡ଼ି ଅଟକେଇଲା । ପଚାରିଲା—

"ଯିବୁ କିରେ ?"

ଏଇ ଲୋକଟା କଟମଟ ଭୋକିଲା ଆଖିରେ ଚାହିଁ ରହିଥିବାର ଦେଖି ତାର ଖଣ୍ଡିଆ ହାତଟାକୁ ଟିକେ ଆପୁଡ଼େଇ ଦେଇ କୋଉ କାଳରୁ ଲାଗୁଆ ନିଜ ହଳିଆ ପଟି କହିଲା—

"ଚାହିଁଚୁ କଣ ବା ! ଉଠିପଡ଼ ବଦ୍ । ସେଇ ଗାମୁଛାରେ ବନ୍ଧା ହୋଇଚି ଚୁଡ଼ା ଛତୁଆ ଟେନ୍ତୁଚ । ଯେତିକି ଖେବାଇବୁ ଖେବା ।"

ଗୁଡ଼ୁରୁ ଗୁଡ଼ୁରୁ ହୋଇ ଗଡ଼ି ଚାଲିଲା ଶଗଡ଼ । ଆଉ ସେ ସିଧା ପହଞ୍ଚିଲା ଏକ ପରିଚ୍ଛନ୍ନ ଚନ୍ଦ୍ରଉଦିଆ ସାନ ଗାଁଟିର ହୁଗୁଳା ବାହୁପାଶର ଅଙ୍ଗନରେ ।

ଶଗଡ଼ିଆ ଭାଇ ତାକୁ କହିଲା ଯେ—

"ଭଲ ଘରର ପିଲା ପରି ଦିଶୁଚୁ । ବାହାପିଠା କାମ ତ କରି ପାରିବୁନି । ମୁହଁ ତ ଖୋଲୁନୁ । ହେଲେ ତୁ ଜାଣିଥା, ଜଗା ରଖା କାମଟା

ତୋର । ଏ ଘରକୁ ଜଣେ ସବୁଦିନଆଁ ଅତିଥି ଆସେ । ଘର ଅଝଟ କଳାହୁଡ଼ୀ ସିଏ । ମୁଁ ତାକୁ 'ମା' ଡାକିବି । ତୁ ବି ତାକୁ ସେମିତି ଦେଖିବୁ । ତାରି କଥା ତତେ ଲାଗିବ । ଆଜିଠୁଁ ଏଇ ଘର ମୋର ବି, ତୋର ବି, ଆଉ ସେଇ ଯେ ସବୁଦିନଆ ରଙ୍କୁଣୀ ମା ବୁଢ଼ୀ ତା'ର ବି ।

## ଗୃହ

ଶଗଡ଼ଆ ତା' କାମରେ ଗଲାପରେ ଦିନସାରା ଘର ବାଡ଼ି ଏପଖ ସେପାଖ ବୁଲି ହରନାଥ ଖୋଜିଲା କାହିଁ କୁଆଡ଼େ ଗଲା ସବୁଦିନଆ ଅତିଥି । କାହାର ତ ସୋର୍ ଶବ୍ଦ ନାହିଁ । ରାତି ଓହ୍ଲେଇ ଆସିଲା । ମେଘ ଖସିଲା । ଝିରିଝିରି ବର୍ଷା ଅସରାଏ ବି ହୋଇଗଲା । ତା'ପରେ ମେଘ ଫାଙ୍କରେ ଦେଖାଦେଲା ଏଇ ସୁନ୍ଦର ବଙ୍କା ଜହ୍ନଟି ।

ହରନାଥର ପୁରୁଣା କଥା ଜମାରୁ ମନେ ପଡ଼ୁନ ଥିଲେ ବି ସିଏ ତ ଠିକ୍ ଚିହ୍ନି ପାରୁଚି ଏଇ ଜହ୍ନକୁ । ଏଇ ନିଗିଦ ଉଶ୍ୱାସ ଉଲଗ୍ଗ ଅନ୍ଧାର ଆଉ ମନ ଉଲୁସା ହାଓ୍ୱାର ମର୍ମରକୁ । କାହିଁ କେତେଦିନର ଜଣାଶୁଣା କୋଳାକୋଳି ଦିହ ଘଷିଆ ଏଇ ଗାଁଟି ତାର । ଏଇ ନୁଆଁଣିଆଁ ନଡ଼ା ଛପର ଘରଟି ଆଉ ଏଇ ନାକ କାନ୍ଦୁରା ଜହ୍ନଟି ବି । ଝର୍କା ଭିତରୁ ସିଏ ଅପଲକ ଚାହିଁ ରହିଚି ।

ତାର ଖିଆଲ୍ ନାହିଁ କେତେବେଳୁ କଳା ଛାଇଟାଏ ଝରକାଠୁଁ ଗୃହ-ଖୋଜ ଦୂରରେ ଆସି ଠିଆ ହୋଇଚି । ବଉଳ ଗଛକୁ ଆଉଜିଚି । ଫିସ୍ ଫିସ୍ କରି କଣ ମନକୁ ମନ କହୁଚି । ହରନାଥର ମନ ହଉଚି ପଚାରି ଦବ ବୋଲି "ତୁ କିଏ ?" କିନ୍ତୁ ପାଟି ତ ଫିଟୁନି । ପୁଣି ଦିଶୁଚି ସେଇ ଛାଇଟା ଦି' ହାତ ଆଗକୁ ଟେକି କଣ ସବୁ ଘରର ଓଳି ଗୃହପଟରେ ଗଛପତ୍ର ଏ ପାଖର କଳେଇ ଗଦା ଆଉ ରାସ୍ତା ଯେଉଁଠି ପାହାଡ଼ ସନ୍ଧିରେ ଭେଦିବ ସେଇ ଆଡ଼କୁ ଇଶାରା କରି କାଳିମା ହାଙ୍କି ଲା ପରି ଆଗ ପଛକୁ ଦୋହଲୁଚି । ହରନାଥ ସେଇ ଛାଇ ପାଖକୁ ଚାଲିଲା । କଥାଟା କଣ ଦେଖାଯାଉ । ଛାଇଟି

ସ୍ତ୍ରୀ ଲୋକଟି । ବୟସ ପଚିଶ ପାଖାପାଖି ହେବ୍ ଅଗ୍ରସରେ ବଢ଼ିଥିଲା ଲୋକର ଚକ୍‌କଣ ସ୍ୱାସ୍ଥ୍ୟ । ହେଲେ ଧନ କେଉଁଠାରେ ଭାଙ୍ଗି ରୁଜ ଗ୍ଳଲଚ ଯେମିତି ତା ଅବୟବର ପ୍ରତିଟି ତନ୍ତ୍ର । ଆଖିତଳେ ମେଞ୍ଚାଏ ଲେଖାଏଁ କାଳ ବୋଳ ହେଲଣି । ମୁହଁ ଟାଙ୍କ ସବୁ ଉତ୍ତୁର ପଡ଼ଲଣି ଅଧାପୋଡ଼ା ତରକ ରୂପା ପରି । କହଗ ବାକ ଫୁର ଫୁର୍ ଉଡ଼ୁଚ ବାୟୁାଣୀ ପରି । ବାଁ ପାଦଟା ଘା' ଢଉଡ଼ ହେଇ ପ୍ରାୟ ଗୋଟା ହବା ଉପରେ । ହରନାଥ ଚାହିଁଚ ନବାକ୍ । ସ୍ତ୍ରୀ ଲୋକଟି କାହିଁଟା ପ୍ରକୃତସ୍ଥ ହେଲାଭଳି ତାଙ୍କୁ ଦଣ୍ଡେ ଚାହିଁ ରହିଲ । ସେ ଚାହାଣିରୁ ଉକୁଟି ଥିଲ ପାଗଳରେ ପରଶିଲ ଭଳି କାହିଁ ସ୍ନେହ, କାହିଁଟା ବନ୍ଧୁତ୍ୱ । କଣ ଭାବିଲ କେଜାଣି—ସେ ତାର ଦ' ହାତରେ ଖୁବ୍ ସଗଗରେ ଆଉଁଷି ଅଣିଲ ସ୍ୱା'ର ଖଣ୍ଡିଆ ହାତଟିକୁ, ଆଉ ପୁଣ ମୁହଁ ବେକ ଗୁଡ଼ିତ ପିଠି । ପୁଣି ଗେଲ କଲ ପରି ପଚାରିଲ—

"ହଇରେ ତୁ କେତେବେଳେ ?"

ହରନାଥର ଓଠ ଥରିଲ । କହି ତ ପାରିବ ନ । ଖାଲି ହାତ ଆଉ ମୁହଁର ଠାରରେ ଜଣାଇ ଦେଲ ଯେ ତାର ପାଟି ଫିଟୁନ । ସ୍ତ୍ରୀ ଲୋକଟି ହୋ ହୋ ହସି ପକେଇଲ । କହିଲ—

"ମୁଁ କଣ ଜାଣିନ କ ? ତୋର କେବେ ପାଟି ଫିଟୁଥିଲ କ ? ସବୁବେଳେ ତ ଗୁମ୍ ମୁହାଁ ଢଙ୍ଗ । ହେଲେ ଭାରି ଗ୍ଳଲାକ୍ ।"

ହରନାଥ ଏ କଥାରୁ କାହିଁ ଠଉରେଇ ପାରୁନ । ସ୍ତ୍ରୀ ଲୋକଟି ତା ହାତଧରି ଘର ଆଡ଼କୁ ଟାଣିଲଣି ।

"ଗ୍ଳଲ୍ ଗ୍ଳଲ୍ ନଅରକୁ ଗ୍ଳଲ୍ । ଆଉ ସେଇଁଠା କୁଆଡ଼େ ଗଲ । ଯେତେ ତାକୁ କହୁଚ ତୁ ଏମିତି ଚବଶି ଘଣ୍ଟା ବୁଲନା, ଘରେ ବସି ଖାଇ ପିଇ ଆରାମ୍ କର—ମୋଟେ କାନ ଦେଲନ । ନରସିଂପୁର୍ ଜେମା ସାଙ୍ଗରେ ତ ପ୍ରସ୍ତାବ ପକ୍କା । ସେ କଣ ଶୁଣୁଚ ! ସବୁବେଳେ ତ ବୁଲୁଚ ! ବାତରଟା ।"

ଘର ଭିତରକୁ ପଶିଯାଇ ଲଥ୍ କରି ଦଉଡ଼ିଆ ଖଟଟା ଉପରେ ବସି ପଡ଼ିଲେ ବୁଢ଼ୀ । ଶୁଣ୍ ଏବେ—

"ସିଏ ମୋ କଥା ମାନୁନ ବୋଲି ମୁଁ ଏ ଘରେ ପଶୁ ନଥିଲି । ଭୁ ତ ଆସିଲୁଣି, ମୁଁ ଆଉ ଜନ୍ମରୁ କୁଆଡ଼େ ଯିବିନ । ଏଇଠି ରହିବି । ଆସୁ, ବିଷ ଦେଉ ଆସୁ ! ବଡ଼ ଦେଉ ସାନ ଦେଉ ହେଁଟା ଯାକ ପିଲି ମୋ ର ଅସଲ ବଦ୍‌ମାସ୍ ।"

ଏ ସବୁ କଥାର ପୂର୍ବାପର ପ୍ରସଙ୍ଗ ନିର୍ଦ୍ଧାରିତ ହେବା ପୂର୍ବରୁ ହରନାଥ ବାବାଙ୍କ ଘରେ ସେଇ ସ୍ତ୍ରୀ ଲୋକଟିର ଉଷୁମ୍ କୋଳରେ ନିବୁଜ ବାତ୍ସଲ୍ୟର ଉତ୍ସଙ୍ଗରେ ବନ୍ଦୀ ହୋଇ ସାରିଥିଲେ । ସତ ମା' କୋଳପରି ଏଇ ଇଲାକାଟି ଥିଲି ସୁକୋମଳ କରୁଣ ଆଉ ସ୍ନେହକାଙ୍ଗାଳ । ମା' ଦେହର ପରଶ ଆଉ ଘାଣ ତାଙ୍କ ସ୍ମୃତିରେ ହଠାତ୍ ଉଲ୍‌କା ପରି କ୍ଷୀଣ ଭାବରେ ପ୍ରକଟିତ ହୋଇଗଲି ଯେପରି !

## ପାଞ୍ଚ

ମା' ବୋଲିଉଥିବା ସ୍ତ୍ରୀ ଲୋକଟି ଶୋଇଛି ମଝିଘର ପିଣ୍ଡାରେ । ଶାଗଡ଼ିଆ ଘାଇ ସଜନା ଗଛ ମୂଳେ ସଉପ ପାରିହୋଇ ଗଡ଼୍‌ପଡ଼୍ ହଉଛି । ବଡ଼ ଝାଣ୍ଟୁଛି । ହରନାଥ କୁଆଡ଼ୁ ଖଣ୍ଡେ ଛିଣ୍ଡା ପୁରୁଣା ଇଂରାଜୀ ପତ୍ରିକା ସଂଗ୍ରହ କରି ଲଣ୍ଠନ୍ ଆଲୁଅରେ ପଢ଼ିବାକୁ ଚେଷ୍ଟା କରୁଛି । ହଠାତ୍ ବୁଢ଼ୀ ବାଳିବାକେଇଲି ପରି କହି ଉଠିଲେ—

"ନାଇଁ ନାଇଁ ମୁଁ ରହିବିନି । କା'ଠଉଁ ମଗା ଯଉ ଉଧାର କରି ସ୍ନେହରେ ମୁଁ ସନ୍ତୁଳ ହେଇ ରହିବି ନ । ସିଏ ଯାଇ ବଲନ୍ତରେ ମଉଜ କରିବ, ଆଉ ମୁଁ ଏଇଠି ଖଳା ଖମାର ଉଆସ ବୁଝୁଥିବି । ଦେଖୁ ସିଏ ଆସି । ହେଁଟାଯାକ ପିଲି ବିଷ ଖାଇ ପାର୍ କରିଦେଲେ । ମାଳକଣ୍ଠ କରି ପୁଣି ଆସି ଉଆସରେ ବାଜେ ହେଲେଣି । ମତେ ଏଡ଼େଢ଼ିନ ଠେଲିଦେଇ ପଳେଇ ଗଲେ । ଆଉ ଏବକୁ ଆସୁଚନ୍ତି ମୋ ଗନ୍ଧାଦରକୁ ହାତ କରିବାକୁ । ଘର ସିଆଣିଆ ନାଇଁ ।

ଏତକ କହିଦେଇ ବୁଢ଼ୀ ପୁଣି ଶୋଇଗଲେଣି ଖୋଲା ବାରଣ୍ଡାଟା ଉପରେ । ମସିଣା ଖଣ୍ଡେ ନାହିଁ କି ତକିଆ ଖଣ୍ଡେ ନାହିଁ ।

ଏତେବେଳକୁ ଆଉ ଝରକା ଆରପାଖେ ଚନ୍ଦ୍ର ନାହାଁ । ପ୍ରାୟ ତିନ ପ୍ରହର ରାତି । ଚାରିଆଡ଼ ନିସ୍ତବ୍ଧ, ବାଷ୍ପରୁଦ୍ଧ । ରାତିର ସମ୍ପୂର୍ଣ୍ଣ ଶୂନ୍‌ଶାନ୍ ଆବେଶରେ କାନ ଅତଡ଼ା ପଡ଼ୁଥିବା ଭଳି ଝାଇଁ ଝାଇଁ ଝନକ୍ ଝନକ୍ ନୂପୁର ସିଞ୍ଜନ । କିଏ ତା' ପିଠିରେ ହାତଦେଇ ଆ' ଆ ବୋଲି ଡାକୁଛି । ଆଖି ମଳିଦେଇ ଉଠି ଠିଆହେଲା ହରିନାଥ । ତା'ର ଆଗରେ ଦେବୀ ପ୍ରତିମା ପରି ଉଦ୍ଭାସିତ ଏଇ ମା' ବୋଲିଡାକୁଥିବା ନାରୀ ମୂର୍ତ୍ତିଟି । ଏ କାନରୁ ସେ କାନଯାଏ ଓସାରି ନେଫଡ଼ ହୋଇଯାଇଛି ବିମଳ କରୁଣା ଆଉ ଉଚ୍ଛଳ ସ୍ନେହର ହସ । ମନ୍ତ୍ରରେ ବଶ ହେଲାଭଳି ତା'ର ପଛେ ପଛେ ସେ ଚାଲିଲେ ବାହାରକୁ । ନାରୀ ମୂର୍ତ୍ତିଟି ତାଙ୍କୁ ଆଗେ ଆଗେ ବାଟ କଢ଼େଇ ନେଉଛି । ଧାନକ୍ଷେତ ମଶାଣି ପଦା ଗହ୍ଳା ପଡିଆ ଏସବୁ ପାରିହୋଇ ଏକ ଅଜବ୍ ଜାଗାରେ ଅଟକିଗଲେ ସେ । କୌଣସିଆଡ଼ୁ ଆଲୁଅ ଆସୁଥିବାର ଟିକିଏ ସୂଚକ୍ ନ ଥିଲେ ମଧ୍ୟ ତାଙ୍କୁ ପରିଷ୍କାର ଦିଶୁଛି କୋଉ କାଳରୁ ଭଙ୍ଗାରୁଜା ହୋଇ ପଡ଼ିଥିବା ଏକ ବିରାଟ ପ୍ରାସାଦ ଚଉରର ଭିତ୍ତି ଚିହ୍ନ କେବଳ । ହାତେ ବୋଲି କାନ୍ଥ କୋଉଠି ଆଉ ନାହାଁ । ଥୁଣ୍ଟା ଦାନ୍ତ ନିକୁଟିଛି ଏଠି ସେଠି ନୀଆଁ ଖଣ୍ଡେ, ତଳେ ଗଡ଼ୁଥିବା ପଥର ଖୁଣ୍ଟି ଖଣ୍ଡେ—ଏମିତି ।

ସ୍ତ୍ରୀ ଲୋକଟି ଫୁସୁଲେଇଲା ଭଳି କଅଁଳେଇ ଡାକୁଛି—"ଆଃ ମୋ ଗଣ୍ଠି ଧନ । ମୁଁ ତତେ'ଇ ସବୁ ଭଣ୍ଡାର ଲୁଟେଇ ଦେଇଦେବି । କାହାକୁ କହିବୁନି । ଭାଇକୁ କହିବୁନି । ବିଷ ଦେଇଦେବ କି ଗାଡ଼ ମଡ଼େଇ ଦବ ! ସିଏ ବି ତେ! ବାପପରି ବଳିତ୍ର ପକେଇବ ଯେ ଆଉ ଫେରିବନି । ଏ ଉଆସ ବିଭବ ସବୁ ଉଜୁଡ଼ି ଯିବ । ମୁଁ ବି ଉଜୁଡ଼ି ଯିବି । ତୋର ତ ହାତଟେ ନାହିଁ । ତୁ ବି ତ ଛୁଙ୍ଗାଟିଏ । ତୁ ଥିବୁ ମୁଁ ଥିବି ସେଇ ଭଲ । ତତେ'ଇ ମୁଁ ସଅଁପି ଦେବି ।"

ଖୁବ୍ ଡରିଗଲେଣି ସେତେବେଳକୁ ହରିନାଥ । ବୁଢ଼ୀ ଏବେ ଇଏ କ'ଣ କରୁଛି । ହାତଟେ କଢ଼େଇ ଦେଲା । ତା' ପାପୁଲିରେ ଯେମିତି ହାଓ୍ୱାରୁ

ଭିଆରି ହେଇ ଆସି ଗୋଟେ ଜଳନ୍ତା ରୂପାର ମାଠ ଥୁଆ ହେଇଗଲ । ଆଉ ହାତରେ ବଡ଼ କଷ୍ଟରେ କୁଚ୍ଛେଇ ମୁଚ୍ଛେଇ ଝେଙ୍କ ଭୁଇଁରୁ ଗୋଟେ ମାଙ୍କଡ଼ା ପଥର ଉପରକୁ ଟେକିଦେଇ ଦୂରକୁ ଫିଙ୍ଗିଦେଲ । ସେଠି ଗୋଟାଏ ଗାତ । ତା' ଭିତରୁ ଟେକି ଆଣିଲ ସିଏ କୋଉ କାଳରୁ ପୁରୁଣା ସାନ କଳଙ୍କି ଲଗା ଟିଣ ବାକ୍ସଟିଏ ।

"ନେ ଯାକୁଇ ନେ, ଏକମୁହାଁ ହେଇ ଘରକୁ ପଳେଇ ଯାଆ, ଏଇଟା ଆଜିଠୁଁ ତୋର ।"

ବାକସଟାକୁ ମୁଣ୍ଡ ଉପରେ ଥୋଇ ପଛକୁ ଗୁହାଁଇଲ ବେଳକୁ ଆଉ ବୁଢ଼ୀଙ୍କର ଦେଖା ନାହିଁ । ଏତିକବେଳେ ସୁ ସୁ ପବନ ମାଡ଼ିଆସିଲ । ଗୁହ ଛଅଟା ଆମ୍ବ ପଣସ ଗଛ ଝଡ଼ ଜୋର୍‌ରେ ଦୋହଲିଲେଣି । ଯେମିତି ଏଇନା ସବୁ ଉପୁଡ଼ି ପଡ଼ିବ । ହରନାଥ ଏକା ନିଃଶ୍ୱାସରେ ଗାଁ ଆଡ଼କୁ ଦଉଡ଼ିଲେ ।

— ଛଅ —

ରାସ୍ତାରେ କିଏ ତାଙ୍କୁ ଜାକି ପକେଇ ଧପ୍‌କିନା ଅଟକେଇ ଦେଲ । "ଡରିଲୁ କିରେ ? ମୁଁ ଜାଣେ ପରା ସିଏ ତୋ' ସଙ୍ଗରେ ବି ଏମିତି ହରକତ୍ କରିବ । ତତେ ବି ସେ ଟିଣ ବାକ୍ସ ଧରେଇଚି ନା ? ଦେଖ୍ ଦେଖ୍ କ'ଣ ତା' ଭିତରେ ଅଛି ।"

ଶଗଡ଼ିଆ ଭଲ ଜୋର୍‌କରି ବାକ୍ସଟା ଟାଣି ଖୋଲିଦେଲ । ସେ ଭିତରେ ନାଲି ପାଟସୂତାରେ ଝୁଲୁଥିବା ଗୋଟାଏ ଦାମୀ ଧାତୁରେ ଚକଚକ ତାବିଜ ।

"ବୁଝିଲୁ ଏଇଟା ହଉଚି ତା' ଟେରସ୍ତର ଭୂତଆଦ୍ୟ ସନ୍ତକ । କୋଉକାଳେ ଏଇଠି ଗୋଟେ ଗଡ଼ ଥିଲ । ସେଇ ରଜାର ସାନଭାଇ ଗ୍ଲେଟରଏର ରାଣୀ ଇଏ । ଗ୍ଲେଟରଏ ଯାକୁ ଗୁଡ଼ି ପଳେଇଗଲ । ପିଲ ଦି'ଟା ବି କୁଆଡ଼େ ପଳେଇଲେ କାହିଁକି । କିଏ ଜାଣି ନାହାନ୍ତି । ତା' ବଡ଼ ପୁଅ କୁଆଡ଼େ ସାନ ପୁଅକୁ ବିଷ ଦେଇଥିଲ ସମ୍ପତ୍ତି ନବ ବୋଲି ।"

ବାକ୍ସଟାକୁ ଓଲଟେଇ ଦେଲାବେଳକୁ ସେ ଭିତରୁ କୋଉ କାଳର ପୁରୁଣା ଉଇଖିଆ ହଳଦିଆ ପଡ଼ିଥିବା ସାନ ଫଟୋ ଖଣ୍ଡେ ଖସିପଡ଼ିଲା । ସେଥିରେ ବହୁ ପ୍ରକାର ଅଳଙ୍କାର ପିନ୍ଧି ବୋହୂଟିଏ ଠିଆ ହୋଇଛି । ଓସାରିଆ ଓଢ଼ଣା ତଳୁ ମୁହଁ ଦିଶୁନି । ଗୁଲୁଗୁଲିଆ ସାନ ଛୁଆଟିଏ କାଖେଇଛି । ସେ ପିଲାର ବାଁ ହାତଟା କହୁଣୀଠୁଁ ଆଉ ତଳକୁ ନାହିଁ । ଶଗଡ଼ିଆ, ହରନାଥ କାବାହୋଇ ଚାହିଁଛନ୍ତି ଇଏ ତା' ମୁହଁକୁ ସିଏ ଯା' ମୁହଁକୁ । ଶଗଡ଼ିଆ ଭାଇ ଏବେ ଟିକେ ହସିଦେଲା । କହିଲା—

"ହଉ ଯା' ଘରକୁ ପଳା । ଡରନି, ଇଏ ପାଲି ତ ସବୁଦିନେ ଲାଗିଥିବ । ମୁଁ ଯାଉଛି ବାକ୍ସଟା ପୁଣି ସେଇ ଜାଗାରେ ରଖିଦେଇ ଆସିବ । ନହେଲେ ପୁଣି ବୁଢ଼ୀ ଆଉ ଥରେ ହଲପଟା ଆରମ୍ଭ କରିଦବ । ତୁ ଯା' ସିଧା ଘରକୁ ଚଳେଇ ଯାଆ ।"

ହରନାଥ ଚାଲିଛି । ଝିମେ ସୁନ୍ଦର ଫାଟିଲା । ସୂର୍ଯ୍ୟ ଉଠିଲା । ଦିନ ଆଲୁଅରେ ଭୂଇଁ ଆକାଶ ବସ୍ତି ଜନପଥ ସବୁ ଉଲଗ୍ନ ହୋଇଗଲେ । କିନ୍ତୁ ଗାଁକୁ ରାସ୍ତା ଯେ ସରୁନି । ଦିନ ଯାଇ ମଧ୍ୟାହ୍ନ ହେଲା । ଅପରାହ୍ଣ ହେଲା । ସୂର୍ଯ୍ୟ ଡୁବିଲା, ଗୋଧୂଳି ଆସିଲା । ମୁହଁ ସଞ୍ଜ ହେଲା । ଉତ୍ତୁରି ଆସିଲା ସବୁଦିନ ପରି ରାତିର ଘଞ୍ଚ ଅନ୍ଧକାର । ସିଏ ତ ଚାଲିଛି । ହେଲେ ଗାଁ କାହିଁ ! ଆଉ ସେ ଘରଟି ଏଇଠି ଥିଲା କି କ'ଣ—କୁଆଡ଼େ ଗଲା ? ଯାହାର ଝୁମ୍ପି ଝରକାଟିର ନେପଥ୍ୟରେ ସେଇ ପରିଚିତ ସବୁଦିନଆଁ ଲାଜକୁଳୀ ଜହ୍ନଟିର ହସ ତାକୁ ପୂରା ଜୀବନକାଳ ବିଭୋର କରିଛି !

—ଃ✻ଃ—

# ଋତୁ ବସନ୍ତ

ଚଢ଼େଇ ପରି ଗୀତ ଗାଇବାକୁ ମନ ହଉଚି । ପ୍ରେ'କ ଅଜବ ରକମର ପକ୍ଷୀରେ । ହୁଳହୁଳି ପକେଇଲା ପରି ତାର ସ୍ୱର ଶୁଭୁଛି । ଦେବଦାରୁର ସବା ଉପର ଡାଳରେ ବସିଚି ଆଉ ଗାଉଚି ଯେ ଗାଉଚି ସକାଳ ପହରରୁ, ଏବେ ଦିନ ଢଳିଏ । ଏପାଖେ ସେପାଖେ ଖଣ୍ଡି ଉଡ଼ା ଦେଲା ବେଳେ ଦିଶୁଚି ଯେମିତି ତାର କଣ୍ଠରେ ଚକ ଚକ ସୁନାଜରି ଆଉ ସମୁଦ୍ରର ନେଳି ଜୁଆର ଛକ ଛକ ହୋଇ ଚର୍ଚ୍ଚିତ ହୋଇଛି । ପର ଓ ପୁଚ୍ଛ ଏକାବେଳେକେ ଚନ୍ଦ୍ର ଉଦିଆ ଝାପ୍ସା ମହୁ ହଳଦି ରଙ୍ଗର ବର୍ଣ୍ଣ ଛଟାରେ ମୁଲ୍‌ଏମ୍ । ନରହରି ଶୁଣୁଛନ୍ତି, ସିଏ ଏମିତି ଚଢ଼େଇଟିଏ ହୋଇ ଥାଆନ୍ତେ କି ? ଗାଉଥାନ୍ତେ 'ଚନ୍ଦ୍ରଧର ହେ ମଣିଷ ଜନ୍ମରୁ ପାରିକରି' । ମୋଟାମୋଟି ତାହେଲେ ପାରିହବାଟା ସବୁଠୁ-ଖୋସାମତିଆ ଧେୟ ବସ୍ତୁ ।

ସିଏ ଅବଶ୍ୟ ଗୋଟାଏ ଜୀବନ କାଳର ଅଧା ସମୟ ଭିତରେ ଭଲ ଭଲ ଜୀବନ ଯୋଗ ବା ତାର ପଡ଼ିଆଗର କବ୍‌ଜାରୁ ସ୍ୱକୁଳଲେଣି । ପାରି ହେଲେଣି ଅମୃତର ସମୁଦ୍ର, ହଳାହଳର ସମୁଦ୍ର, କାମନାର ସମୁଦ୍ର, ଐଶ୍ୱର୍ଯ୍ୟର, କାମିନି କାଞ୍ଚନର, ବିଳାସର ସମୁଦ୍ର, ଗୋଟେ ନୁହେଁ ସାତ ସାତଟା ଜାଗତିକ ସମୁଦ୍ର ପହଁରି ଲଗିଛନ୍ତି । ହେଲେ ଚଞ୍ଚୁରେ, ପକ୍ଷୀର କାକଳି ପରି ଅବାଧ ନିଃଶଙ୍କୁଳ ନିର୍ବିରୋଧ ଆକାଶ ଉଲ୍ଲୁସା ଧୂନିଟିଏ ଫୁଟୁରୁ ନାହିଁ । ଡେଣାରେ ଝଦଉ୍ଡ଼ି ଜାମା କି ସମ୍ଭାର ସ୍ତରର ଆବରଣ ସତ୍ତ୍ୱେ ଇନ୍ଦ୍ରଧନୁ ଉଠୁ ନାହିଁ, ଜର୍ଜରିତ ବେପଥୁର ଉଚାଟନ ନା ମଥାକୁ ନା ଭ୍ରୂକକୁ ଛୁଉଁଚି । ଗୁଡ଼ିଆଡ଼େ ଖାଲି ଫାଁ ଫାଁ ଫଟା ଭୂଇଁ । ନରହରି ଓଝା ଏବେ ମନ୍ତ୍ରୀ କୋଠା ଗ୍ରୁଡ଼ ବସ୍ତିରେ ରହୁଛନ୍ତି ଏକଲା । ପତ୍ନୀ ମୃତ, ସଂସାର ବୋଲିଲେ ଗୋଟିଏ ବୋଲ ଝିଅ । ସ୍ୱଦେଶରେ ଜୋଇଁ ପାଖରେ ବାରବର୍ଷ ହେଲା । ନରହରି ବାବୁଙ୍କର ଏକମାତ୍ର ନିଶା, ଦେଶପ୍ରେମ । ଆଉ ତା

ସାଙ୍ଗରେ ତାଙ୍କର ସମ୍ଭାବିତ ପ୍ରତିଷ୍ଠା ଏସବୁ ଆସିଚ; ପୁଣି ଝସି ଯାଇଛି ହାତ ମୁଠାରେ ।

ମନ୍ତ୍ରୀ ଘରୁ ଉଠେଇ ଆଣିଥିବା ସରକାରୀ ଆରାମଚେୟାର, ଲନ୍‌ରେ ପକେଇ ସୁନ୍ଧୁ ଶୀତ ଧନଟାରେ ଫୁଙ୍ଗୁଳା ଦେହରେ ବସିଛନ୍ତି । ବସି ଏଗାର କପ୍ ଚା ଖାଇଲେଣି । ଗୃହଖଣ୍ଡ କେତକୀ ଗୁଣ୍ଡି ପାନ ବାହାର କମାମ ମଖା ପାନ । ଉଦାସ ଲାଗୁଚି କେଇଦିନ ହେଲା କାହାଁକି ଧାଡ଼ି ଧାଡ଼ି ହେଇ ଲୋକ ତାଙ୍କ ପରାମର୍ଶ କ ସନ୍ଧୋଳିବା ପାଇଁ ଆସୁନାହାନ୍ତି । ଫୋନ କଟିଯାଇଛି । ବାକିଆ ବିଲ୍ ଏତେ ଯେ ଦେଇ ହବନି । ଗେଷ୍ଟ ହାଉସର ଏଗାର ମାସ ରହଣି ଖାନାପିନାର ବିଲ୍ ମଧ୍ୟ ବାକି ପଡ଼ିଛି, ସବୁ ମାସରେ ତାଗିଦ୍ନ ନୋଟିସ ଆସୁଚି । ହେଲା ଏବେ ସିଏ ଏମିତି କେତେ ନୋଟିସ ଦେଖିଛନ୍ତି । ଲୋକଗୁଡ଼ାକ ହଠାତ୍ ତାଙ୍କୁ ବେଖାତର କରିବା ଆରମ୍ଭ କରି ଦେଲେଣି । ସବୁଠୁଁ ପଚରୁ ଲୁଗାମରା କଥା ହେଲା ଯେ ଅଞ୍ଜନା ପଳାଇଗଲା ହରିବନ୍ଧୁ ଠିକାଦାର ସାଙ୍ଗରେ । କେତେ ଦରବ ଦେଇ ସିଏ ତାକୁ ହାସଲ କରିଥିଲେ । ସେଥିପାଇଁ କେତେ କେତେ ରଥୀଙ୍କ ସାଙ୍ଗରେ ଝଗଡ଼ା । ଯାହାର ମନ୍ତ୍ରୀଙ୍କ ଢାଳ, ଯାଙ୍କର ଖାବମୂର୍ତ୍ତି ଗୋଲମାଳ ଆଉ ସିଆଡ଼େ ସବୁ ବେପର ରଚ୍ଛି । ପଞ୍ଝୁରୀ ମେଲା କରି ସବୁତକ ଶୁଆ, ସାରୀ, ହରିତାଳ କାଲିପରି ଧାଡ଼ି ଧରି ଉଡିଗଲେ । କେତେବେଳେ ମେଘଭରେ ରଡ଼ିରେ ଆକାଶ ପ୍ରକମ୍ପିତ ହେଲା । ଅଞ୍ଜନା ଦାସ ପୋଡ଼ାମୁହାଁ ଏବେ ସିଣ୍ଡିକେଟ୍ ବେଙ୍କର ଉପାଧ୍ୟକ୍ଷା । ହରିବନ୍ଧୁ ମନ୍ତ୍ରୀଠୁଁ, ପାର୍ଟିଠୁ ମାରିଥିବା ପଇସରେ ଭୋଟ୍ ଲଢ଼ୁଚି । ଆଉ ପାର୍ଟିର ଟିକଟରେ; ଯାଙ୍କୁ ପସନ୍ଦରୁ ନାହାନ୍ତି, ଅଥଚ ଯେ ହଉଚନ୍ତି ବୁଦ୍ଧି ବଢେଇବା ଲୋକ ।

ଚଉତିଇ ଉପର ଗଛ ଡାଳରୁ ଡାଇଭ୍ ମାରି ବସିଲାଣି ଆସି ତାର କାଲି ପାଚେରୀ ଉପରେ । ପୁଣି ଗାଇ ଲାଗିଚି କନ୍‌କନିଆଁ ଋତୁ ହେମନ୍ତର ହୁଳହୁଳ ସଙ୍ଗୀତ । ଓଠକୁ କୁମ୍ଭିକରି ଦନ୍ତା ଆଙ୍ଗୁଠି ପାଟିରେ ଭର୍ତ୍ତିକରି ତା ସାଙ୍ଗରେ ଗୀତ ମିଳେଇ ନରହରି ଗୀତ ବୋଲିବେ ଏବେ । ଚିର୍‌ରର୍‌ଲି-

ଟିଁ ଟିଁ,-ଟିର୍‌ଲିର୍‌ଲି-ଟିଂ ଟିଂ-ବକୁମ୍ ବକୁମ୍-ଟିଁ ଟିଁ ଟିରଲ୍‌ଲି'। ଚଡ଼େଇ ଅବାକ୍ ହୋଇ ତାର ଇନ୍ଦ୍ରମାଳ ଗୋଟମା ଆଖିରେ ତାଙ୍କ ଆଡ଼କୁ ଚେଇଁଛି। ଶୁଣୁନାହାନ୍ତି । କଣ କରେ ଚଢ଼େଇ, ସେ ଗୀତର ଅର୍ଥ ପଚାରୁଛି, ବୁଢ଼ାବୁଢ଼ୀ । କହୁଚ କହୁଚ ଟିପିରଖ ।

'ନଦଃ ଅନତା ଭଲ ପାଇବାର ପ୍ରଥମ ପାହାଚ ଉଡ଼ିଯିବାଠା କେବେହେଲେ ଧରା ଦେବାର ବେଅକଲି ପ୍ରତିଶ୍ରୁତି । ଆକସିକ ପ୍ରବଳ ସୁଖରେ ଲୁହ ଗଡ଼େଇବାର ଅନିବାର୍ଯ୍ୟତା ମୃତ୍ୟୁପରି ସତ ।'

ଏତକ କହି ଦେଇ ନରହରି ହସି ହସି ଗଡ଼ୁଯାଉଛନ୍ତି । କିଏ କେଉଁଠି ଅଛି ଯେ ଏମିତି ଓଜନିଆଁ ପ୍ରବଚନ ଶୁଣି ଜ୍ଞାନ ଘରରେ ନସ୍ୟାନ୍ତ ହୋଇଯିବ । ଛେଃ ।

ସାମନା ଗେଟ୍ ଖୋଲିବାର ଶବ୍ଦ ଆସୁଛି । ଯୁବକଟିଏ, ଦେହ ଡେଙ୍ଗା, ଲମ୍ବ ନାକ, ମୁହଁର ଠାଣିରେ ଦର୍ପ । ସିନ୍ଥେଟିକ୍ ଚମଡ଼ା ବ୍ଲେଜରଟାଏ କାନ୍ଧରେ ଝୁଲୁଚି । କଳା କର୍ଡୁରୟ ଜିନ୍ ପେଣ୍ଟ । କୁଞ୍ଚ କୁଞ୍ଚିଆ ବବ୍‌ରି ବାଳ ବିପର୍ଯ୍ୟସ୍ତ । ନିଶ, ଦାଢ଼ୀ ଖିଅର ହୋଇନ ମାସେ ହେବ, ହେଲେ ତା' ଚେହେରାକୁ ମାନୁଚି; ଆଖି ଦି'ଟା ଜଳୁଚି ।

: କିଏ ସେ ତମେ ।

: ଖୋକା । ଆପଣଙ୍କ ପାଖକୁ ଆସିଚି । ହେମ ଦିଦି ଠିକଣା ଦେଇଥିଲେ ।

: କୋଉ ହେମ ଦିଦି ?

: କନ୍‌ଭେଣ୍ଟ ଟିଚର୍, ଶଟାପୁର୍ତ୍ତି । କହିଲେ ଆପଣଙ୍କୁ ସାହାଯ୍ୟ କରିବେ । ମନେ ପଡ଼ୁଚି । ଅକାଳ ବୈଧବ୍ୟରେ କଲବଲ ହୋଇ ଛୁଟି ଆସିଥିଲା କୋଉଁଏ ବର୍ଷେତଳେ ତାଙ୍କ ପାଖକୁ, ଏଇ ଦୂରସମ୍ପର୍କୀୟ ଭାଣିଜି ହେମ । ସିଏ ତାକୁ ନାନା କୌଶଳରେ ସ୍କୁଲରେ ଭର୍ତ୍ତିକରି ଦେଇଥିଲେ ।

ଅନ୍ୟମାନଙ୍କ ଢଙ୍ଗ ହେମନ୍ତ ଅନୁଗତଙ୍କ ନୁହେଁ । ଘାଣ୍ଟି ଖୋଜିକରି ଆସିଛ ତାଙ୍କୁ ସବୁଦିନେ । ହେମନ୍ତ ଟିଅଛାଏ ।

ମୁଁ ହେମଚନ୍ଦ୍ରଙ୍କ ପାଖରେ ଥିଲି । ମତେ କହିଲେ ନରହରି ମଣ୍ଡଳ ଘର ପରିବାର ଲୋକ । କଣ୍ଟ୍ରାକ୍ଟ ବନ୍ଦ । କେଉଁଠୁ ବ୍ୟାଙ୍କ ଋଣ ସରକାରୀ ସବ୍‌ସିଡ଼ି ବ୍ୟବସ୍ଥା କରିଦେଇ ପାରିବେ । ଗୋଟେ କିଛି ଠିକା କ ବ୍ୟବସାୟରେ ଲଗିଯିବ । ମୋର ଆଉ କେହି ନାହାନ୍ତି ।

: କାହାର କେହି ନଥାନ୍ତି । ଥିଲେ ବି ନଥିଲା ପରି । ନିଜ ଗୋଡ଼ରେ ଠିଆହେଲେ ମଥା ଆକାଶରେ ଲଗିବ । ପରୱା କରନା ।

ଆଗ ଅଭ୍ୟାସ ଭଳି ପ୍ରବଚନର ସ୍ରୋତ ବାହାରି ଯାଉଛି ପାଟିରୁ । ଏ ମୂର୍ଖ କଣ ଜାଣେ ଯେ ନରହରି ଏବେ ସୁଦ୍ଧୁ ଗୋଟାଏ ମାଟିପିଣ୍ଡ । ତାଙ୍କର ରାଜମାତ ବାରସାନ୍ଧି, ହଟ୍ଟଚମଟ୍ଟ ବଦ୍ୟା ସବୁ ଲୋପ ପାଇସାରିଛି । ହେଲେ ସବୁ ଯେତେବେଳେ ନିଷ୍ଟିହ୍ନ ହେବା ଉପରେ, ଏଇ ଟୋକାଟାକୁ ଯଷ୍ଟି ପରି କାମରେ ଲଗେଇ ବାଟ ଚଲେଇ ପାରେ । ସମ୍ଭାବନାର ସଳଖ ରୂପରେ ଖୋକା ଠିଆ ହେଇଛି ସାମନାରେ । ନିଷ୍ଟକ, ଅଟଳ ନେଳା କାଚ ଗୋଟାକ ଅାଖି ଦଇଟା ଯେମିତି ବାଗ୍ମୁସ୍ଥ । ଯେମିତି କେତେ କ'ଣ ପଚାରି ଚାଲିଛି ସମସ୍ତଙ୍କୁ ।

( ୨ )

ସହର ଶୋଇଛି, ଅଜଗର ନିଦ । ବାଜଙ୍ଗ ନଈ ଉପରେ ଚଉଡ଼ା କଂକ୍ରିଟ୍ ପୋଲ ଦାଡ଼ରେ ଠିଆ ହେଇଛନ୍ତି ସେଠା ଗୁଡ଼ି, ନରହରି ଆଉ ଖୋକା । ରାତି ତିନଟା ହବ, ନିଶା ଗର୍ଜୁଛି । କାଁ ଭାଁ ଦି' ମଣିଷ ଉଚ୍ଚା ମାଲ ନେଇ ଲରି ଆଉ ଟ୍ରକ୍ କେଇଟା ମଝିରେ ମଝିରେ ଛୁଟି ଯାଉଛନ୍ତି । ମାଛ, ମାଉଁସ ପାଇଁ ଏବେ ସିନା ପଇସା ନାଇଁ । ତେବେ ଗୋଟେ ଘାଡ ଡାଲମା ଆଳୁ ଚକଟା ମିଳିକୁ ଠିକେ ବାରଣା ଦାରରେ ତାଙ୍କ ବସା ପଡ଼ିଶା

କ୍ୟାଣ୍ଟିନ୍‌ରୁ ଯବହେଁଯାଂକ ଖାଇସାରି ସହର ପରିକ୍ରମା କରୁଚନ୍ତି । ନରହରି ବାବୁ ଖୋକାକୁ ଦେଖେଇଲେ ବଡ଼ ବଡ଼ ବ୍ୟବସାୟୀ ଅଫିସରମାନଙ୍କ କୋଠାବାଡ଼ି । ନିର୍ଜନ ନିର୍ଲଜ ଆସ୍ଫାଳନରେ ଉଗ୍ର ହୋଇଥିବା ମନ୍ତ୍ରୀ, ଏମ୍. ଏଲ୍. ଏ. ଠିକାଦାରମାନଙ୍କ କଳାଧନର ପ୍ରାସାଦ ଶ୍ରେଣୀ । ସହରତଳି ଅଞ୍ଚଳରେ ପାଣି ପାଦୁ ପରି ମାଡ଼ି ଯାଉଥିବା ଗରିବ ଗୁରୁବା କୁଲି ମଜୁରିଆଙ୍କ ଗୁଳ ଛପର ମାଟିକାନ୍ଥ ଟିଣିଆ ଅଖା ଟାରପୁଲିନ ଘେରା ନୁଆଣିଆ ବସ୍ତି । ସବୁଠି ଅଟକି ସେ ଖୋକାକୁ ବୁଝେଇଚନ୍ତି ଯେ କେମିତି ପଇସା କମେଇବାକୁ ହୁଏ । ନାଁ କମେଇବାକୁ ହୁଏ କୋଉ ବାଟରେ । ଗୋବର ଗଦାରୁ ଗଜୁରି ବଢ଼ି ବଢ଼ି ଆଭିଜାତ୍ୟ ଆକାଶ ଛୁଏଁ; ଯେତେ ଲୋକଙ୍କ ଅଧମିକାର ହର୍ମ୍ୟ ସବୁ ଦିଶୁଚି ତା ପଛରେ କି ଇତିହାସ, କି ଆୟାସ କେତେ ରକ୍ତପାତ, ଇଜ୍ଜତର ଲୁଣ୍ଠନ, ଯାଦୁ ଆଉ ସର୍କସର ଖେଳ । ସେକଥା ତୁ କଣ ସହଜେ ବୁଝି ପାରିବୁ । ଯାହା ଦିଶୁଚି ଜଳଜଳ ହୋଇ ସବୁ ଖାଲି ନିଲଠା ପହ୍ନଜ, ସୁଦ୍ଧୁ ମୃଗତୃଷ୍ଣା । ଏଠୁ ଦୂରେଇ ଯାଅ ଖୋକା । ସିଧା ଚାଲିଯା ସେଇ ଗାଉଁଲି ମଣିଷର ଖାଲ ବିଲ ଝିଲଝରର ସ୍ୱାଡ଼ମାଳର ସବୁଜ ଜନପଥକୁ । ସେଇଠି ଅସଲ ମଣିଷର କଲିଜାର ନିଚର ଧରେ । ସିଏ କେନା ମେଲି ଭୂଇଁ ଫୁଟେଇ ଉଠେ । ମୁକୁଳିତ ହୁଏ । ସବୁଜ ପତ୍ରରେ ଭରିଯାଏ ତାର ବାହୁବଲ୍ଲରୀ । ଫୁଲ ଫୁଟେ, ଫଳ ଧରେ । ଆଗ ସେଇଠି ଯାଇ ଚେର ପୋତେ । ମଣିଷ ଭିତରେ ମଣିଷ ପରି ଗଣା ହୋଇଯା । ସେଠୁଁ ଉଠିବୁ, ଆଉ ଏଇ ସହର ପରି ଗୁଡ଼ାଏ ପଡ଼ିଆରେ ସିମେଣ୍ଟ କଂକ୍ରିଟ୍‌ର ଜଙ୍ଗଲ ତିଆରି କରିବୁ । ଯୋଉଠି ପ୍ରାଣ ନଥିବ ଆତ୍ମା ନ ଥିବ । ଖାଲି ପତାକା ଉଡ଼ୁଥିବ । ହେଲେ ଦେଉଳରେ ଦିଅଁ ନ ଥିବ । ବଖାଣୁଚନ୍ତି ପୁଣି ତାଙ୍କ ନିଜ ଜୀବନ କଥା, କେମିତି ସିଏ ତାଙ୍କ ଗାଁର ସଂସ୍କୃତ ମାଷ୍ଟର ଥିଲେ ମାଇନର ସ୍କୁଲରେ । କେତେ ସୁଖରେ ଦିନ କଟି ଯାଉଥିଲା । ଆଠ ଏକର ଚାଷ ବି ଥିଲା । ହେଲେ ତାଙ୍କୁ ସହର ଓଟାରିଲା । ଗାଁ ରାଜନୀତିରୁ ସହର ରାଜନୀତିକୁ ପଳେଇ ଆସିଲେ । କେମିତି ଲୋକଙ୍କୁ ମତେଇବାକୁ ହୁଏ, କେମିତି ସରକାରୀ ଅଫିସରଙ୍କୁ ଭୟଭୀତ କରେଇ କି ଫଳ ପୁଷ୍ପ ଦେଇ କାମ ଆଦାୟ କରିବାକୁ ହୁଏ, କେମିତି ମିଜାଜି ମନ୍ତ୍ରୀ କଣ୍ଟୁଆଳମାନଙ୍କୁ ହାତକରିବାକୁ ହୁଏ । ଏମିତି ହେଲା ଯେ

ତାଙ୍କ ପାଣିବାରପଣିଆ ଦେଖି କେତେ ଭାବ ମନ୍ତ୍ରୀ ଆଉ ବିଧାୟକ ତାଙ୍କଠାରୁଁ ମନ୍ତ୍ର ନେଉଥିଲେ । ମାଳ ମାଳ ଗାଡ଼ି ଆଉ ଲୋକ ତାଙ୍କ ଦୁଆର ପିଣ୍ଡାରେ ଗୁହାରିଆ ପଡ଼ୁଥିଲେ । ସିଏ ମନ୍ତ୍ରୀ, ଚେୟାରମ୍ୟାନ୍ ତିଆରି କରୁଥିଲେ । ପତ୍ନୀ ଦୂରେଇ ଗଲେ । ରହିଲେ ମାଇଁ ଗାଁରେ । ଭିଟାମାଟିକୁ କାମୁଡ଼ି ଗୃହବାସ ଦେଖୁଥିଲେ । ସ୍ୱାମୀ ତ ସବୁବେଳେ ଏ ସହରରୁ ସେ ସହରକୁ ଖେପୁଛନ୍ତି । ଦାମ୍ପତ୍ୟ ତୁଟିଗଲା । ସଂସାର ଚହଲି ଗଲା । ସିଏ ଆଖି ବୁଜି ଦେଲେ । ଯା ହେଉନା କାହିଁକି ନରହରି ଦିନ କେଇଟାରେ ସେ ଜଣେ ଶକ୍ତିମାନ ବିଚକ୍ଷଣ ନେତୃସ୍ଥାନୀୟ ଯୁଗପୁରୁଷ ତା' ସହର ବଜାରରେ ଏବଂ ଖବର କାଗଜମାନଙ୍କରେ ପ୍ରଜ୍ଞାପିତ ହୋଇ ସାରିଥିଲା । ସେ ଅଞ୍ଜନାର ଉଜାଗର କୋଠାଘର ଆଗରେ ଅଙ୍କ ଦେଖେଇଦେଲେ ଖୋକାକୁ ।

. ଦେଖୁଚୁଟି । ଇଏ ରୂପଗରବିଣୀ ଅଞ୍ଜନାର ଘର । ମୋର ହାତରେ ତିଆରି ତା'ର ଇଏ ସ୍ୱପ୍ନର ପ୍ରତିପତ୍ତିର ସୌଧ । ମଥାରେ ସାତ ଦିନରେ ତାର ତେଲ ଲାଗୁ ନ ଥିଲା । ମହୁଲ ବେପାରିର ଝିଅ ! ମୋର ହାତଟେକା ଦାନରେ ପାଠ ପଢ଼ିଲା । ମୋରି ଯୋଗାଡ଼ରେ ଏଠି ସେଠି ଦେହ ଆଉ ବୁଦ୍ଧିର ଭୋଗ ଚଢ଼େଇ ପ୍ରାଇଭେଟ୍ କଲେଜ୍‌ରେ ଲେକ୍‌ଚରର ବି ହୋଇଗଲା, ଜବରଦସ୍ତ ସରକାରୀ ଜମି ମାଡ଼ିବସି କୋଠା ତିଆରି କଲା । ମୁଁ ତାଙ୍କୁ ଆଶ୍ରା ଦେଇଥିଲି ସବୁଦିନେ ମୋରି ହେପାଜତ କରିବ ବୋଲି । ପାଖେ ପାଖେ ଥିଲା, ବି ଏତେକାଳ । ଯେମିତି ମୋର ଚଉଣା ଛୁଣ୍ଡି ଯାଇଚି, ମୋର କାବୁରେ ଥିବା ପାର୍ଟି କାରନ୍ଦାଙ୍କର ସମାଧି ହୋଇଯାଇଚି, ତାପରେ ଟିକିଏ ରୁହିଁଲାନି କି ପଚାରିଲାନି । ସିଧା ଘରଗୁଡ଼ି ପଳେଇଲା । ଏଇ ଠିକାଦାରର ରକ୍ଷିତା ହୋଇ ତା'ରି ପାଖରେ ଅଛି । ଏଣୁତେଣୁ କେତେଟା ସରକାରୀ ସଂସ୍ଥାରେ ଆସନ ଜମେଇ ପ୍ରେସିଡେଣ୍ଟ୍ ଭାଇସ୍ ପ୍ରେସିଡେଣ୍ଟ୍ ବି ହୋଇ ସାରିଲାଣି । ବତିସ ଏଇ ସମୟର ସୁଅ; ତୁ କାହିଁ ଖୋକା ଏମିତି କରୁ ହବୁନା । ତୁ ଗୋଟେ ପୃଥକ୍ ମଣିଷ ହବୁ, ତୋର ନିଜସ୍ୱ ନିକାଞ୍ଚନତା ଥିବ, ନିଜସ୍ୱ ହସ ଖୁସି ଲୁହ ସଂଗତ କାକଳି ଥିବ, ନିଜର ଆରୋହଣ ମାର୍ଗ ହିମାଦ୍ରୀ ହସଖୁସି ପରି ଲମ୍ବିଥିବ ମେଘ-

ପଠଳାକୁ । ମୁଁ ତତେ ଏମିତି ତିଆରି କରିବି । ଜାଣିଥା ଏମିତି ଧୁନ୍ ତୋ ମୁହଁରୁ ସଞ୍ଚରିବ ଯେ ବହୁଦୂରରୁ ଡେଣା ମେଲେଇ ଚଢ଼େଇମାନେ ଯେତେ ସବୁ ଉଚ୍ଛନ୍ନ ସଙ୍ଗୀତ ଗାଉଛନ୍ତି ସେମାନେ ତାଙ୍କ ସ୍ୱର ବନ୍ଦକରି ତତେ ଘେରିଯିବେ ଉଲ୍ଲାସରେ । ଖୁମ୍ପି ଢକେଇବେ । ତୁ ଚଢ଼େଇ ଗୀତ ଶୁଣିଚ୍ଛି ? ଆଉ ପହରେ ଅଟକ ଯା । ଏଇ ତ ଭୋର୍ ହୋଇ ଆସୁଚି । ଶୁଣ୍, ଶୁଣ୍ ।

ଏତିକି ବେଳକୁ ସ୍ୱନ୍ଦଗ ଫାଟିଆସୁଚି । ଚଢ଼େଇ କେଇଟା ତାଙ୍କ ମଥା ଉପର ଦେଇ ହାଲୁକା ଡେଣାରେ ଉଡ଼ି ଯାଉଚନ୍ତି ପୂର୍ବଦିଗକୁ । ମୂର୍ଚ୍ଛନା ଉଠୁଚି କେଇଟା ଚିଁ ଚିଁ ଆଁ, ହଳଦିଆ ବସନ୍ତ, କଜଳପାତିର ସ୍ୱର-ତରଙ୍ଗରୁ । ସେଇଆଡ଼େ ବିଭୋର ହୋଇ ଚାହିଁଛନ୍ତି ନରହରି । ବାଁ ହାତଟା ଖୋକାର କାନ୍ଧ ଉପରେ ଥାପି ସାଉଁଳି ଲାଗିଛନ୍ତି । ଖୋକା ବି ଆକାଶକୁ ଚାହିଁଲା । ଚଢ଼େଇ ପରି ଗୀତ ଗାଇବା କ'ଣ ଏବାକ୍ ସ୍ୱର୍ଗାରୋହଣ ପରି ସୁଖ । ଖୋକାର ପ୍ରତ୍ୟୟ ହଉନି ।

୬

ଦିହେଁ ବସାକୁ ଫେରିଲାବେଳକୁ ସକାଳ ସାଢ଼େ ପାଞ୍ଚ । ନରହରି କହିଲେ ତାଙ୍କୁ ଅବଶ ଲାଗୁଚି । ସେ ଟିକିଏ ଗଡ଼ି ପଡ଼ିବେ । ପାଖ ଦୋକାନରୁ ଆଉ ଘଣ୍ଟାକ ପରେ ଚା ଦି'କପ୍ ନେଇଆସି ମତେ ଉଠାଇ ଦେବୁ ବାପା । ଖୋକା ଚାଦର ଖଣ୍ଡେ ଘୋଡ଼େଇ ହୋଇ ଆସି ବାରଣ୍ଡାରେ ଠିଙ୍କ ହୋଇ ବସିଲା । ତା ଆଖିରେ ନିଦ ଓହ୍ଲାଉନି । କିଛି ଅଧିଗତ କରି ପାରୁନି କ'ଣ ସବୁ ନରହରି ସଉସା ତର୍ଜମା କଲେ । ଆଉ ତାକୁ କଣ କରିବାକୁ ହବ । ଯା' ହଉ ସେ ମନସ୍ଥ କଲା ଯେ ନରହରିଙ୍କ ଗାଁ ଘରକୁ ଯାଇ ତାଙ୍କର ଆଠ ଏକର ପଡ଼ିଆ ପଡ଼ିଥିବା ଜମି ଚାଷ କରିବ । ଗାଁର ଅବହାୱାକୁ ପରଖିବ । ହେଲେ ଚାଷକାମ ଗାଁର ଚଳଣୀ ତା ପାଇଁ ଯେମିତି ଏକଦମ୍ ଦରିଆପାରିର ଅଭିଜ୍ଞାନ । କାହିଁ କଲିକତା, କାହିଁ ରାୟପୁର, କାହିଁ ଭୁବନେଶ୍ୱର, ତାପରେ ଯାଇଁ ସିଧା ମାକଲ୍ପୁର । ଯାହଉ ତା'ପର ଦିନ ସିଏ ନରହରି ମଉସାଙ୍କଠୁଁ କେତେଜଣ ଜ୍ଞାତି ଲୋକଙ୍କ ଠିକଣା ଧରି ବାହାରି ପଡ଼ିଲା ମାକଲ୍ପୁର୍ ।

( ୩ )

ସମ୍ବଲପୁର ପ୍ରାୟ ଦେଢ଼ଶହ ପରିବାରର ଗାଆଁ । ଗାଁକୁ ପିଚୁ ନ ହେଲେ ବି ନାଲି ମୋରମ୍ ରାସ୍ତା ପଡ଼ିଛି । ବସ୍ ଯାଉଛି । ଖୋକାର ଆବିର୍ଭାବରେ ଯେମିତି ସାରା ଗାଁ ଆଚମ୍ବିତ । ଇଏ କିଏ ସେ ? କୁଆଡ଼ୁ ଅଇଲା ? ନରହରି ବାବୁଙ୍କର କଣ ସମ୍ପର୍କ ? ଏଇ ଭଳି କେତେ ଚୁପୁରୁ ଚାପୁରୁ ଚର୍ଚ୍ଚା ପଡ଼ିଗଲା । ଆଦିତ୍ୟ ମଉସା ଗାଁର ସବୁଠୁଁ ବୁଢ଼ା ପୁରୁଖା ଲୋକ । ତାଙ୍କର ପାଖକୁ ଚିଠି ନେଇ ଖୋକା ଆସିଥିଲା । ସିଏ ଯୁଆଁକୁ ପଚାରିଲେ—

: କିରେ ବାପା ତୋ ଜାତିଗୋତ୍ର କଣ ? ବାପ, ମା କୋଉଠି କଣ କରନ୍ତି ? କୋଉଠୁ ଆସିଛ ?

ଖୋକା କହିଲା ଯେ ସିଏ କଲିକତାରେ ଜନ୍ମ । ସେଇଠି ବଢ଼ିଛି । ତାପରେ ଝାଗୁରଣ୍ଠା ସହରକୁ ଯାଇଛି । ଏଣ୍ଡୁ ତେଣ୍ଡୁ ପେଟ ପାଟଣା ବ୍ୟବସ୍ଥା କରିଛି । କହିଲା ନ ଖାଲି ଯେ କେଇଦିନ ସିଏ ଉକେଇତ ଦଳରେ ଥିଲା । ଠିକଣା ବୋଲି ଜଣକୁ ଭଲ ପାଇଥିଲା । ବାପ ମା କଥା ସେ ଜାଣେ ନି କାହିଁକି ନା ଅତି ପିଲାଦିନୁ ସିଏ ଖସି ପଳେଇ ଆସିଛି । କୋଉ ଗୋଟିଏ ହେଲେ ପୁରୁଣା ମୁହଁ ମନେ ନାହିଁ । ମୁରବୀମାନେ ରାୟ ଦେଲେ । ଯାହାଉ ପିଲାଟିର ଜାତି ଗୋତର ଜଣା ନ ଥିଲେ ବି ନରହରି ବାବୁ ବୋଧେ ତାକୁ ପୋଷିଆ ପୁଅ କରିଚନ୍ତି । ଗାଁକୁ ପଠାଇଚନ୍ତି ତାଙ୍କ ଜମିବାଡ଼ି ହେପାଜତ କରିବ ବୋଲି, ତାର ଗୁଣଚଳଣି ଉପରେ କିଛିଦିନ ନଜର ରଖାଯାଉ । ଖୋକାକୁ ଏ ପରିବେଶ ଅଦ୍ଭୁତ ଲାଗୁଛି । ଚାରିବଖରା ପଥର କାନ୍ଥ କାନ୍ଥ ମାଟିଲେପା ଘର ଉପରେ ଆଟୁଘର । ବାରିପଟେ ବଡ଼ ବଖୁରିଏ ଗୁହାଳ, ବାଉଁଶ ଆଉ କଣ୍ଟାବାଡ଼ଘେରା ହେଇ ପରିଷ୍କାର ଘରଟିଏ ନରହରି ବାବୁଙ୍କର । ହେଲେ ସେ ଭିତରେ ଖାଲି ଝାଟା ପଥର କୁଣ୍ଡ ଅଛି ଗୋରୁ ; ଆହାର ପାଇଁ ଗୁହାଳରେ । ଆଉ ଗୋଟେ ପଟା ଖଟ ପଡ଼ିଛି ଶୋଇବା ଘରେ । ପାଣି ଆଣିବ ତ ପ୍ରାୟ ଯାଇ ଡାକେ ବାଟ ଗୋଟେ କୂଅରୁ । ସେ କୂଅ ପୁଣି ଏତେ

ଟଙ୍କାର ଯେ ପନ୍ଦର ମିନଟ୍ ଲଗିବ ଗୋଟେ ଗଭା ପକେଇ ପାଣି ହକାଳିବାକୁ । ହଳ ନ ଥିଲ । ଆଟେରୁ ବର୍ଷା ହେଇଯାଇଛି । ଗାଁ ବାଲଙ୍କୁ କୁହା ବୋଲ କରି ଖୋକା ଘରେ ଦି'ଟା ହଳ ବଳଦ ଯୋଗାଡ଼ କଲ । କେତେଟା ଗଇନ୍ତା, ଶାବଳ, ଲଙ୍ଗଳ, କଣ୍ଡି ବି ବ୍ୟବସ୍ଥା ହେଲ । ନରହରି ମଉସା ହାତରେ ତିନଶହ ଟଙ୍କା ଦେଇଥିଲେ । ସେଇଥିରେ ସାର, ବିହନ ଯୋଗାଡ଼ କରି କୌଣସିମତେ ମକ୍କା ଜମି ଦେଖି ଦୁ'ଏକର ଖଣ୍ଡେ ଚାଷ କାମ ଆରମ୍ଭ କଲ ଖୋକା । କେମିତି ବିହନ ବୁଣାହବ, କେମିତି ରୁଆ ବସ୍ତୁ, ଖେଳୁଆ ପାଣି ଯୋଗାଣ, କେଉଡଣ ଏସବୁର ତାଲିମ କ୍ରମେ କ୍ରମେ ହାସଲ ହେଇଗଲ । ସିଏ ଏବେ ଜଣେ ନାଉଁଆ କୃଷୀ । ମନ ତାର ଲଗିଗଲ ଏମିତି ଯେ ବର୍ଷ କେଇଟାରେ ତାର ଖଲାବାଡ଼ି, ଖମାରର ଚେହେରା ବଦଳି ଗଲ । ସମବାୟ ଋଣ କରୁ ଯୋଗାଡ଼ କରି ସେ ଏବେ ଗୋଟାଏ ଟ୍ରାକ୍ଟର୍ କିଣିଛି । ନିଜେ ଚଲଉଛି ଅଉ ଭଡ଼ାରେ ବି ଅନ୍ୟମାନଙ୍କର ଜମିଚାଷ କରୁଛି । ଭଲ ଦି'ପଇସା ଉପାର୍ଜନ । ତାକୁ ଏବେ ଗାଁ ଲୋକେ ଖାତିରରେ ଖୋକାବାବୁ ବୋଲି ଡାକୁଛନ୍ତି । ହାଟୁଆ ଭଗାରି ଏବେ ତାକୁ ମୁଣ୍ଡ ନୁଆଁଇ ଓଳଗି ହଉଛନ୍ତି । ଖୋକନ୍ ଦୋରସ୍ତ ଅଛି । ହେଲେ ଏଇ ଗାଁ ଏକ ଅଜବ୍ ଜାଗା । ପାଖରେ କୋଉଠି ଦାରୁ ଦୋକାନ ନାହିଁ । ଟିକିଏ ମନ ଝଅକ କରିବାପାଇଁ କୋଉଠି ଗାଉଣା ବଜଣା ଆଡ଼୍ଡା ନାହିଁ । ପୁରୁଣା ଦିନ ଗୁଡ଼ାକ ମନେ ପଡ଼ିଲେ ତାକୁ ମେଜକ ଦେଖିଲ ଭଳି ଲଗୁଛି ଏ ଗାଁର ରୂପଶ୍ରୀ । ହେଲେ ଛଏ ବି ତ ଆଉ ଗାଁ ହେଇନାହିଁ । ପୁରୁଣା ଲୋକେ ତାକୁ କହୁଛନ୍ତି ଯେ ଆଗକାଳର ଗାଁ ଅଉ ଏବର ଗାଁ ପୁରା ତଫାତ୍ । ଏଇ ଯେ ବୁଷ ଘର ଦେଖୁଛ ସେଇଠା ଥିଲ ପଞ୍ଚଦୋଳି ଆଉ ଝୁଲଣ ଯାତ୍ରାର ପିଣ୍ଡି । ସେଇଠି ଫଗୁଣ ଆସିଲେ କେତେ ନାଟ ସୁଆଙ୍ଗ ହୁଏ । ଆଖପାଖ ପନ୍ଦର ଖଣ୍ଡ ଗାଁର ଲୋକ ଏକାଠି ହେଇ ଯଅନ୍ତି । ପୁରାଣ ହୁଏ, ପାରାୟଣ ହୁଏ । ତା ଆଗକୁ ଯୋଉ ଭାଗବତ ଘର ସେଇଠା ଏବେ ବ୍ଲକ ଅଫିସ ଦେଇସାରେ କ୍ଲବ ଘର ହେଇଛି । ସେଠି ସବୁ ସଞ୍ଜବେଳେ ବ୍ରାହ୍ମଣ ସାହିର ଦଣ୍ଡିଆରି ସାଆନ୍ତେ ସଞ୍ଜ ଛ'ରୁ ଆଠଯାଏଁ ଭାଗବତ, ରାମାୟଣ ପଢ଼ି ଶୁଣାଉଥିଲେ । ବୀଣାର ଝଙ୍କାର ପରି କେତେ ମଧୁର ସ୍ୱର । ଆତ୍ମା ଓଟାରି ହେଇଯିବ । ମନରେ

ପର ଲାଗିଯିବ । ଇଏ ସବୁ ଆଉ ନାହିଁ । ଏବେ ଟ୍ରାନ୍‌ଜିଷ୍ଟରରେ ଡିସ୍କୋ-ଗୀତ ବାଜୁଛି ସାନ୍ଧ୍ୟ ସକ୍ଷ୍ୟ । ଗାଁରେ ଲୁଙ୍ଗି ଗୁଡାଖୁ, ବିଡ଼ି, ସିଗ୍ରେଟ୍, ଗୁ ସବୁର ଆଦର ବଢ଼ିଛି । ଗାଁରେ କୋଠଜମି ଚଉଦ ମାଣ ସନାତନ ମହାରଥ ସରପଞ୍ଚ ମାଡ଼ି ବସିଛି । ଗାଁରେ ଭାଗେ କମ୍ୟୁନିଷ୍ଟ, ଭାଗେ କଂଗ୍ରେସ, ଭାଗେ ଜନତା, ଭାଗେ ଲୋକଦଳ । ଏମାନଙ୍କ ଭିତରେ ସବୁବେଳେ ବାଡ଼ିଆପିଟା । ଆଗେ କୋଉଠି କଳି ତକରାଳ ହେଲେ ମହାଜନ ବସୁଥିଲେ । ଦଶପନ୍ଦର ଚରିତ୍ରବାନ ଜ୍ଞାନି ଲୋକ ପାଖାପାଖି ଗାଁରୁ ବଛା ହୋଇ ମହାଜନ ସଭା ତିଆରି ହୋଇଥିଲା । ସେଇଠି ସମସ୍ତେ ବସି କଳିତକରାଳ ତୁଟାଉଥିଲେ, ଦଣ୍ଡ-ଦଉଥିଲେ । ଆଉ ସମସ୍ତେ ତାକୁ ମୁଣ୍ଡପାତି ମାନି ନେଉଥିଲେ । ଏବେ ଆଉ ମହାଜନଙ୍କ ସଭା ନାହିଁ କି ପୁରୁଖା ଓଜନଥିଆ ଲୋକଙ୍କ ସମ୍ମାନ ନାହିଁ । ଶତକଡ଼ା ନବେ ଲୋକ କଚେରୀ ହତା ମାଡ଼ି ସାରିଲେଣି । ଯା' ବଳରୁ ସିଏ ଧାନ କାଟି ନେଲାଣି ତ ତା ଝିଅକୁ ଇଏ ନିଆଁ ଲଗେଇ ଦେଲାଣି । ଏଇଆ ଚାଲିଛି । ପୁଲିସ୍ ଆସୁଚନ୍ତି, ହାକିମ ହୁକୁମା ଆସୁଚନ୍ତି । ତାଙ୍କ ଅଣ୍ଟାଗୁଞ୍ଜା ନେଇ କଣ କେମିତି ଫଇସଲା କରୁଚନ୍ତି ସିଏ ଜାଣନ୍ତି । ଯା ବାଡିରେ ପନିପରିବା ହଉଁଠା ହେଲା ସେ ଏବେ ନିଜେ ନ ଖାଇ ଗାଁ କୁଟୁମ୍ବରେ ନ ବାଣ୍ଟି ବେପାରିକି ବିକି ଦଉଚି । ବେପାରି ସବୁ ଘର ଘର ଅମଳ ପରିବାପନ୍ଦି, ଗୁଡ଼ଉଳ, ମୁଗ, ବିରି ସରକାରୀ ବସ୍‌ରେ ବିନା ଭଡ଼ାରେ ଛାତ ଉପରକୁ ଛ'ହାତ ଲେଖାଏଁ ଲଦି ଦେଇ ସହରକୁ ନେଇ ପାଉଛନ୍ତି । ମାଲ ଭଡ଼ାର ଠିକଠ କଠାହେଉନି । କଣ୍ଡକ୍ଟର ସଙ୍ଗରେ ଅନ୍ୟ ପ୍ରକାର ସଲାସୁତରା । ଗାଁକୁ ଆସୁଚନ୍ତି ବନ୍ଦୋବସ୍ତବାଲା, ଚକବନ୍ଦୀବାଲା । ଆର୍. ଆଇ. ଅମିନ ତମ୍ବୁ ପକାଉଚନ୍ତି । ନ ହେଲେ ସଉକାର କି ପଧାନଙ୍କ ଘରେ ରହୁଚନ୍ତି । ଭୂରିଭୋଜନ କୁକୁଡ଼ା କଠା ଏମିତି କି ଦେଶି ଦାରୁ ସବୁର ବ୍ୟବସ୍ଥା ତାଙ୍କ ପାଇଁ । ଘର ପିଛା ଗୁଡାର ବ୍ୟବସ୍ଥା ହେଇଯାଉଚି । ନହେଲେ ସେଟଲ୍‌ମେଣ୍ଟରେ ସବୁ ଓଲଟପାଲଟ ହୋଇଯିବ । ଗାଁଲୋକ ମୁହଁରେ ଏବେ ନୂଆ ଠାଏ ଭାଷା । ସବୁ ମଣିଷ ବାବୁଭୟାଙ୍କର ମନ୍ତ୍ରୀ ବ୍ୟବସ୍ଥାପକଙ୍କର ଦାମ ଲେଖା ହୋଇଛି ମଥାରେ ପ୍ରାଇସ୍ ଟ୍ୟାଗ୍ । ସମସ୍ତଙ୍କି ଉଚିତ୍ ଦରରେ କିଣି ହେବ । ଖରିଦ ବିକ୍ରୀର ଚଳଣୀ ଠିକ୍‌ଠାକ୍ ଅଛି । ଗାଁ ପଢୁଚି ଉଠୁଚି । ଭୋଟ୍ ବି କିଣା ବିକା ହଉଚି, ଗଣତନ୍ତ୍ରର ଶବ ଛାତିରେ ଡାବବାଜ ଯନ୍ତ୍ର ଉଚ୍ଛୁଳୁଚି ।

( ୪ )

ଝାନ ଉଦୁଉଦିଆ ଦ୍ୱିପହର । ଟ୍ରାକ୍ଟରର ଗୋଟାଏ ପୂର୍ଜା ଅଚଳ ହୋଇ ଯାଇଛି । ନଦ୍ରାବଣ୍ଣ ଗଛତଳେ ତାକୁ ସଜାଡୁଛି ଖୋକନ୍ । ଧଇଁସଇଁ ହୋଇ ସେଇଠିକି ଦଉଡ଼ି ଆସୁଚି ମାଳତୀ । ତା ସାଙ୍ଗରେ ଆଉ ଦୁ'ଟା ଜିନ୍ ପିନ୍ଧା ଟୋକା । ବେକରେ ତାବିଜ ଲଗେଇଚନ୍ତି । ଏ ଦିଟା ଗାଁ ଟୋକା କେଇଦିନ ହେଲା ସହରରୁ ଆସିଛନ୍ତି । ସେଠି ସେମାନେ କୋଉ ଫ୍ୟାକ୍ଟେରିରେ କାମ କରୁଥିଲେ । ଏମିତି ମଝିରେ ମଝିରେ କଲିକତା କାଳିମାଟି, ରାଜସ୍ଥାନ, ପାଟ୍‌ନାରୁ କେତେ ଗୋଡ଼ଶ୍ରମିକ ଗାଁକୁ ଫେରି ଆସନ୍ତି । କିଏ ପୁରା ନିଃସ୍ୱ ହୋଇ ବା କିଏ ସାମାନ୍ୟ କିଛି ରୋଜଗାରର ଅବଶିଷ୍ଟ ପୁଞ୍ଜି ଧରି ପୁଣି ଏଇ ଗାଁର ଖୋଲା ଆକାଶ ତଳେ ଧିକେଇ ହୁଅନ୍ତି । ମାଳତୀ ତାର ପଡ଼ିଶା । ତିନିଟା ଘର ଛାଡ଼ି ନାରଣ ମହାରଣାର ସବା ସାନ ଝିଅ । ବାହାଘର ଦିଇଟା ବର୍ଷ ବିତିଛି କି ନାହିଁ, ତା ବର ମରିଗଲା । କଣ ଗୋଟାଏ ଉଡ଼ାରୋଗ ଆସିଲା ଯେ ତା ଶଶୁର ଘର ଗାଁରୁ ଅଧେ ଲୋକ ନିକାଶ ହୋଇଗଲେ । ସେଇଦିନୁ ସେ ଆସି ତା ବାପଘରେ । କଳାମୁଗୁନିର ଭାସ୍କର୍ଯ୍ୟ ପରି ତା'ର ଚିକ୍‌ଣ ରୂପ । ସବୁବେଳେ ହସିଲା ମୁହଁ । ତାର ସାରା ଗାଁଟା ଯାକ ଯେମିତି ଆପଣାର । ମିଠା କଥାରେ, ଲୁହାଣୀରେ ତମ ମନ କିଣି ନେବ । ସିଏ ଖୋକା ପାଖକୁ ଲାଗି ଆସିଲା ଆଉ ତା ଡାହାଣ ବାହାଟାକୁ ଦୁ' ହାତରେ ଜାବୁଡ଼ି ହଲେଇ ଦେଇ କହିଲା ।

: ଶୁଣ ମ ସବୁବେଳେ କଣ ଗୋଟେ ଠୁକୁରୁ ଠୁକୁରୁ କରୁଚ । ଇଏ ଦିଟା ପିଲା ତୁମକୁ ଖୋଜଖୋଜି ଆସିଛନ୍ତି । ମତେ ପଚାରିଲେ ମୁଁ ତାଙ୍କୁ ନେଇ ଆସିଲି । ଏଇ ବର୍ଷ ଗାଁର ପଞ୍ଚାୟତ ଭୋଟ୍ ହବ । ତା'ପରେ ବିଧାନ ସଭା ଭୋଟ୍ । ତମେ ଯୁବାଙ୍କ ପାର୍ଟିକି ସାହାଯ୍ୟ କରିବ କି ? ଏମାନେ ଗାଁକୁ ବେଶ୍ ମୋଟା ଚନ୍ଦା ଦେବେ । ତମେ ଯାହା ଦର ହାଙ୍କିବ ହାଙ୍କ । ଖୋକନ୍ କିଛି ନବୁଝି ଆଖି ତରାଟି ଚାହିଁଲା । କହିଲା—

: ଶୁଣ ଏସବୁରେ ମୁଁ ଧାର ଧରେନା । ତୁ ଯାଇ ମୁରବୀ ଲୋକଙ୍କ ପଧାନ ବୁଢ଼ା କି ଓଝାଙ୍କୁ ପଚାରୁନୁ ?

ସେଥିରୁ ଗୋଟାଏ ଟେକା ଠୋ ଠୋ ହସି ପକେଇଲା ।

: କରେ ଯା'ଉନ୍ତୁ । ଏଇ ପାକେଲ ବୁଢ଼ା ସବୁ କଣ ବୁଝିବେ । ଯିଏ ଆମ ଦଳକୁ ବିରୋଧ କରିବ, ହରକତ୍ କରିବ, ସେଗୁଡ଼ାଙ୍କୁ ଆମେ ଗୁଳି ଚଳେଇ ଦବୁ । ତମେ ତ ସହରରୁ ଆସିଚ ଚାଲକ୍ ଲୋକ । ଠିକ୍ ବୁଝିବ, ତମେ ଏ ଗାଁର ଦାୟିତ୍ୱ ନିଅ । କିଛି ନାଇଁ, ଯାହା ମାଲ୍ ମିଳିବ ପ୍ରଚାର-ପାଇଁ ସେଥିରୁ ତମର ଅଧେ । ଆମେ ତମ ସଙ୍ଗେ ସମ୍ପର୍କ ଯୋଡ଼ୁଚୁ ବୋଲି ଆମକୁ ଯାହା ଇଚ୍ଛା ଭାଗ ଦବ । ବାକିଟା ଗାଁବାଲାଙ୍କୁ ମୁଠେ ମାଂସ ବାଣ୍ଟି ଦେଖିବ, କେମିତି ଆରପାର୍ଟିବାଲା ବୁଦ୍ଧି ଶିଖିଯିବେ । ଖୋକନ୍ ମୁଣ୍ଡ ଲଡ଼ିଲା ।

: ମୁଁ ଉଡ଼ାପକ୍ଷୀ । ଏଠି କେତେଦିନ ଅଛି । ରହିବ କି ନାଇଁ ଠିକ୍ ନାହିଁ । କୁଆଡ଼େ ପୁଣି ପଳେଇବ ! ମୁଁ ଏଥିରେ ପଶିବନି । ତମେ ତମ ବ୍ୟବସ୍ଥା କର ।

ଆର ଟୋକାଟା ତାକୁ ଶାଣଦିଆ ଅଖିରେ ନିମିଷେ ଚାହିଁଲା, ଆଉ ଚିଲେଇ କହିଲା ।

: ଦେଖିବାରେ ବାପା । ତୁ କେତେଦିନ ଆଉ ଏମିତି ବୁଲାଷଣ୍ଢ ମାମଲତ୍‌ଗିରି କରିବୁ । ତୋର ଚୁଲିଚୁଲ ସଫା କରିଦେବୁ ଜାଣିଚୁ ଟି ? ନବଜ ଲଗେଇଚୁ, ନାଇଁ ?

ଧମକ ଦେଇ ସେ ଦିଟା ଟୋକା ଦଉଡ଼ି ପଳେଇଗଲେ । ଖୋକନ୍ ପୁଣି ତାର ଟ୍ରାକ୍ଟର ସଜାଡ଼ା କାମରେ ଲଗିଲେ । ତାକୁ ଜଣା ନାଇଁ ଯେ ମାଳତୀ ପିତୁଳାଟି ପରି ତା ଆଗରେ ଠିଆ ହୋଇ ତା ମୁଣ୍ଡଠୁ ଗୋଡ଼ ପର୍ଯ୍ୟନ୍ତ ଚାହିଁବାରେ ଲଗିଚି କେତେବେଳୁ । ତନ୍ମୁ ରେଞ୍ଚ ଉଠେଇଲାବେଳକୁ ଦୃଷ୍ଟି ପଡ଼ିଲା ।

: କଣ ତୁ ଏଯାଏଁ ଯାଇନୁ ? ତୋର ଘରପାଇଟି କିଛି ନାହିଁକି ?

ମାଳତୀ ଉଦାସ ହସୁଚି ।

: କହିଲି ଖୋକନ୍ ଘରେ ତମେ ଏଠାରେ ରହିବନି, ପୁଣି ପଳେଇବ କୁଆଡ଼େ ? କାହିଁକି ପଳେଇବ ? ଖୋକନ୍ ତା' ଆଖିରେ ଆଖି ମିଶେଇଲି । କାହିଁକି ତାକୁ ଘର ବଳକ ଲାଗିଲି । ମାଳଣ୍ଠି କହିଲି ।

: ହିଁ ମୋର ସିନା ବର ମରିଗଲା ବୋଲି ମୁଁ ପଳେଇ ଆସିଛି । ବାପାର ଅନ୍ନ ଧ୍ୱଂସ କରୁଛି । ଏଠି ବି ମତେ କିଏ କେତେଦିନ ରଖିବ ? ଆଉ ତମେ କାହିଁକି ପଳେଇବ ? ତମେ ତ ଘର ବାନ୍ଧିଛ । ଜମିବାଡ଼ି କରିଛ । ଏଇଲେ କେତେ ବଡ଼ ଲୋକ ।

ଟିକିଏ ମୁରୁକି ହସିଲି ଖୋକନ୍ । ତାର ମନେ ପଡ଼ୁ ଯାଉଛି ଟିକିନାର କଥା । ଟିକିନାର ଗେଲ । ଟିକିନାର ହସ ।

: ମାଳଣ୍ଠି ତୁ ଆଉ ଥରେ ବାହାହେଉନୁ ? ମୁଣ୍ଡପୋତି ଏତିକି ପଚାରିଲି ଖୋକନ୍ । ମାଳଣ୍ଠି ଏବେ ତା ମୁହଁକୁ ନିଜ ହାତ ପାପୁଲିରେ ଚେକି ଧରି କହୁଛି ।

: ତମେ ଜାଣିନ କି ଏଠାରେ ବହୁତ ନିୟମ ଆଜିଛି । ମୁଁ ମୋ ଗେରସ୍ତକୁ ଖାଇଛି । ତେଣୁ ମତେ କେହି ବାହା ହେବେନି । ଏମିତିକି ମୋ ବାପା ହରି ସାଆନ୍ତକୁ ପଚାରୁଥିଲା ତମ ସାଙ୍ଗରେ ମତେ ଛାଡିବାପାଇଁ । ହେଲେ ସାଆନ୍ତ କହିଲେ ତମର କୁଆଡ଼େ, ଜାତି ଗୋତ୍ର କିଛି ନାହିଁ । ଗୋଟାଏ ଅଣଜାତିଆ ଲୋକ ସାଙ୍ଗରେ କୁଆଡ଼େ ମୋର ବାହାଘର ହୋଇ ପାରିବ ନାହିଁ । ମୁଁ କୋଉ ଲକ୍ଷ୍ମୀ ଠାକୁରାଣୀ ଯେ ମୋ ପାଇଁ ଦେବତା ଚଣ୍ଡାଳ ବାଛି ବସିବ ହଉଛି ।

ଖୋକନ୍ ଶୁଣିଥିଲା ଆଗରୁ ଯେ ମାଳଣ୍ଠି ସାଙ୍ଗରେ ତାର ବାହାଘର ପ୍ରସ୍ତାବ ହଉଛି, କିଏ ବି ଯାଇ ନରହରି ମଉସାଙ୍କୁ ଉସ୍କେଇଛନ୍ତି । ହେଲେ ବାହାହୋଇ ଗୋଟେ ସଂସାର କରିବାର ଯୋଜନା ଏପର୍ଯ୍ୟନ୍ତ ଖୋକନ୍ ମନକୁ ଛୁଇଁନି । ତାର ସ୍ମୃତିରେ କି ଅନୁଭୂତିରେ କେମିତି ବାପ, ମାଆ, ପତି, ପତ୍ନୀ, ପୁଅ, ଝିଅକୁ ନେଇ ଆଉ ଗୋଟାଏ ବଡ଼ିଆ ଇଲାକା ପରିବାର ଗଢ଼ା ହୁଏ ସେ ତ ଜମାରୁ ଜାଣିନି । ତେବେ ମାଳଣ୍ଠିଟା ଭାରି ଭଲ ଝିଅ ।

ଭଲ ଗଢ଼ଣ । ନିର୍ମଳ କାଚକେନ୍ଦୁ ମନ । ଯେମିତି ମଧୁମାଳତୀ ଲତା ପରି ତା' ଉପରେ ଲଟକି ଗୁଡ଼ାଇ ହୋଇଯିବ, ଯେମିତି ଗୃହିଣୀ । କେଡ଼େ ଭଲ ହୁଅନ୍ତା ଯଦି ସବୁଦିନେ ତା ପାଖରେ ରହନ୍ତା । ମୁରୁକି ହସିଲ ଖୋକନ୍ । ପଚ୍ଚୁରିଲ ।

ଯଦି ଏ ଗାଁ ଲୋକେ ତୋର ମୋ ସାଙ୍ଗରେ ବାହାଘର କରେଇ ଦେବେନି, ଆଉ ତୋର ଯଦି ଇଚ୍ଛା, ତୁ ମୋ ସାଙ୍ଗରେ ଆଉ କୁଆଡ଼େ ପଳେଇବୁ କି ? ସେଇଠି ଯାଇଁ ଆମେ ରହିବା ଘର କରିଆଁ ହୋଇ ।

ମାଳତୀ ଚୁହିଁଚି । ଆଖି ତଳେ ଦି'ବୁନ୍ଦା ଲୁହ ଜକେଇ ଆସିଲାଣି । ହୁଁ ହୁଁ କରି କାନ୍ଦୁଚି ।

: ତମକୁ ବିଶ୍ୱାସ ନାହିଁ । ମୋର କାହାରିକୁ ଆଉ ବିଶ୍ୱାସ ନାହିଁ । ଦିନେ ପାଖକୁ ଡାକି ପଦେହେଲେ କଥା ହୋଇଚ ମୋ ସାଙ୍ଗରେ । ଯାହା କହୁଚ ତାକୁ ସାତଥର ଭାବି ଆଉଥରେ ମତେ କହିବ ତ ମୁଁ ହଁ କରିବି ।

ମାଳତୀ ଦୌଡ଼ି ଚାଲିଗଲା ଆଉ ମିଶିଗଲା ବେଣ୍ଟ ପୋଖରୀ ଦାଣ୍ଡର ବାଉଁଶ ବଣ ଭିତରେ ।

ଆଠ ଦଶଦିନ ପରର କଥା । ଦିଟା ଜିପ୍ ଚଢ଼ି କେତେ ପ୍ରକାର ଲୋକ ଗାଁକୁ ଆସିଲେ । ଆଗ ଜିପ୍‌ରେ ଗୋରୀ ହୋଇ ମଝିଲା ବୟସର ଜଣେ ସ୍ତ୍ରୀ ଲୋକ ବସିଚନ୍ତି । ସବୁବେଳେ ମୁରୁକି ହସୁଛନ୍ତି । ଭାରି ଆଟ୍ ତାଙ୍କ ବେଶଭୂଷାରେ । କାନ୍ଧରେ ଗୋଟାଏ ଚୁନ୍ଦୁଆ ଚମ ଝୋଲଥିବା ଝୁଲିମୁଣି । କଥା କହୁଚନ୍ତି ବାଙ୍ଗ୍ଲା ବାଜିବନି । ସେ ଭାଷଣ ଦେବେ ବୋଲି ଗୋଟେ ସଭାମଞ୍ଚ ତିଆରି ହେଲା ଇସ୍କୁଲ ପଡ଼ିଆରେ । ପ୍ରଥମେ ସବୁଠୁଁ ଅଧିକା ନାଁ କରିଥିବା ସିନେମା ଅଭିନେତା ଥାଇ ଗୋଟେ ହିନ୍ଦୁ ସିନେମା ଦେଖାହେଲା । ତାପରେ ସଭାପତି ଭାବରେ ଗାଁ ପୋଷ୍ଟମାଷ୍ଟର ଲୋକଙ୍କୁ ଚିହ୍ନେଇ ଦେଲେ ଯେ ଏଇ ଲୁଙ୍ଗ ନେତ୍ରୀ ହେଉଛନ୍ତି ଅଞ୍ଜନା ଦାସ; ଆପଣମାନେ ଶାନ୍ତ ଭାବରେ ବସି ତାଙ୍କର ଭାଷଣ ଶୁଣନ୍ତୁ । ସ୍ତ୍ରୀଙ୍କର ଧାତୁ ଦେଲ ହେଲା କେବଳ ଦେଶ-ପ୍ରେମ । ସେ ଯାହା କହିବେ ତାକୁ ମାନିନେଲେ ଜଗତ ଉଦ୍ଧାର ହବ । ଗାଁ

ଟାଣ୍ଡିା ଦୁଧ ମହୁରେ ଭରିଯିବ । ତା'ପର କନ୍ତୁ ଅର୍ବାଚୀନ ପେଶାଦାର୍ ଟୋକା ପ୍ରବ୍ଧରକ ସମତାଳରେ ତାଳମ'ର ଚକ୍କର କରି ଉଠିଲେ, ଅଞ୍ଜନା ଦାସ ଜିନ୍ଦାବାଦ୍ । ଅଞ୍ଜନା ଦାସ ଆମର ନେତ୍ରୀ । ଅଞ୍ଜନା ଦାସ ଜଗତ ରହୋ । ଏ କୁହାଟ ଶେଷ ହେବାପରେ ଅଞ୍ଜନା ଦାସ ତାଙ୍କର ଭାଷଣ ଆରମ୍ଭ କଲେ । ଯାହାର ସାରମର୍ମ ଥିଲା ଯେ ଏଇ ଗାଁରେ ଆଗେ ଗୋଟାଏ ବଦ୍‌ମାସ୍ ଲୋକ ଥିଲା ଯାହାର ନାଁ ହଉଚି ନରହରି ଓଝା । ସେ ଲୋକ ବହୁତ କଳୁଷ କର୍ମକରି ପୁରୁଣା ସରକାରଙ୍କ ଦଳରେ ଘରି ପ୍ରତିପତ୍ତି କରିଥିଲା । ଏମିତିକ ଖୋଦ୍ ଅଞ୍ଜନା ଦାସ ପରି ନେତ୍ରୀ ତାଙ୍କୁ ମଧ୍ୟ ସମର୍ଥନ କରିଥିଲେ । କିନ୍ତୁ ମୁଖା ଖୋଲି ଯାଇଚି । ତାର ସ୍ୱରୂପମୂର୍ତ୍ତି ପୁରା ଗୋଳମାଳ । ନରହରି ସମେତ ପୁରୁଣା ଶାସକ ଦଳର ସମସ୍ତ ଅବାଞ୍ଛିତ ବ୍ୟକ୍ତି ଏବେ ନିର୍ମୂଳ । ଅଞ୍ଜନା ଦାସ ହଉଚନ୍ତି ଏଇ ବିଧାନ ମଣ୍ଡଳର ଏକମାତ୍ର ଆଶା । ଏକମାତ୍ର ପ୍ରତିଶ୍ରୁତି । ତାଙ୍କୁ ଭୋଟ ଦେଇ ଜୟଯୁକ୍ତ କରିବାର ସୌଭାଗ୍ୟ ଏଇ ଗ୍ରାମବାସୀମାନଙ୍କୁ ପ୍ରାପ୍ତ ହଉ । ଅଭିଭାଷଣରେ କଥାଟା ନେପଥ୍ୟ ଧମକ ଥିଲା ଯେ ଯଦି ସିଏ ଭୋଟ ନପାଆନ୍ତି ତାହାଲେ ସହରର ଗୁଣ୍ଡା ଘୋଟିଯିବ, ଆଉ ଏଇ ଗାଁଟିକୁ କବଳ ଗ୍ରାସ କରିବ । ଲଗାତର ମାସେ ଧରି କେତେ ଦଳ ବିରୋଧୀଦଳଙ୍କ ସଭା ଆଉ ଆସର ଚାଲିଲା । ଗାଁ ମୁରବି ମୁଖିଆମାନଙ୍କ ଘରେ ଦଳ ଦଳ ହୋଇ ଖିଆପିଆ ଲମ୍ପଟ ମସୁଧା ଚଳେଇଲେ । ଭୋଟ କାର୍ଯ୍ୟ ସରିଲା । ଦେଶର ଦୁର୍ଭାଗ୍ୟରୁ ଅଞ୍ଜନା ଦାସ ଭୋଟ ପାଇଲେ ନାହିଁ, ହେଲେ ଦୁର୍ବିପାକ ଆରମ୍ଭ ହୋଇଗଲା ।

( ୪ )

ନବଘନପୁରର ରଘୁନାଥ ବଜେସ୍ତରୀର ବାବାଜି ସେଦିନ ପାହାନ୍ତାଟାରୁ ଗାଁ ଦାଣ୍ଡରେ କେନ୍ଦେରା ବଜେଇ ଚାଲିଚି । ଗାଉଚି ଗୀତ, ବାଘ ବୋଲେ ବଉଳା ଲୋ ମୁଁ ତତେ ଖାଇବ ଇତ୍ୟାଦି ଇତ୍ୟାଦି । କେନ୍ଦେରା ସ୍ୱରଟା ଘରି ଭଲଲାଗେ ଖୋକନ୍‌କୁ । ଏରୁଣ୍ଡି ବନ୍ଧରେ ବସି

ଝଣ୍ଟେ ବାଡ଼ିରେ ନଆଁ ଧରେଇ ଥିଲି । ଡାକିଲି, ବାବାଜି ମହାପ୍ରଭୁ । ଏଠିକି ଟିକିଏ ଆସ । ବାବାଜି ଆସି ବସିଲେ । ଆଉ ଦି ତିନିଟା ଗୀତ ବି କେନ୍ଦରା ବଜେଇ ଶୁଣେଇଲେ । ତାଙ୍କ ହାତରେ ଗୋଟିଏ ଟଙ୍କିକିଆ ନୋଟ୍ ଗୁଞ୍ଜି ଦଉଦଉ ଖୋଜିନ୍ ପଚାରିଲି ଯେ କେତେଦିନ ହେଲା ବାଆଜି ଏ ରଘୁନାଥ ଠାକୁରଙ୍କ ପାଖରେ ରହିଲେଣି । ଆଜ୍ଞା କଣ ସେ ଦେଖିଛନ୍ତି ଏ ଗାଁ ର ରୂପ, କେମିତି ଥିଲା ଆଗେ ଆଉ ଏବେ କେମିତି ସବୁ ଗଲାଚି । ବାବାଜୀ ପଞ୍ଚସ୍ତରୀ ବର୍ଷର ବୁଢ଼ା ହେଲେ ବି ଟ୍ରେଟିଆ ମେହନତି ଦେହଟାରେ ଶକ୍ତି ବହୁତ । ଟିକିଏ ଶୁଖିଲା ହସ ହସି ବାବାଜି କହିଲେ ।

: କଣ ବଦଳିବରେ ବାପ । ମୋର ହେଲୁ ପାଇଲା ଦିନୁ ମୁଁ ଏ ଚଉଦ ଖଣ୍ଡ ଗାଁରେ ବୁଲୁଚି । କିଛୁ ତ ବଦଳିନି । କିଛୁ ଫିଲଟି ଯାଇନି । କିଛୁ ନୂଆ ଜିନିଷ ଘଟିନି । ସେଇ କଥା ଖାଲି ବିବର୍ତ୍ତିତ ହଉଚି । ରାଜା ମାହାରାଜା ଗଲେ, ଗାନ୍ଧି ବୁଢ଼ା ଗଲେ, ଜୟପ୍ରକାଶ, ଇନ୍ଦିରା ଗଲେ । କେତେ ନେତା ରାଜାଜୀ, ଶାସ୍ତ୍ରୀ, ପଟେଲ, ମୋରାଜୀ, ବାଜ୍‌ପେୟୀ କେତେ ନୂଆ କଥା କହିଲେ । ହେଲେ କନ୍ଦଳଟା ହେଲା ମୂଳ ମନ୍ତ୍ର । ଯୁଦ୍ଧଂ ଦେହି ଡାକରା ସବୁବେଳେ । ଗଡ଼ଜାତ ଶାସନବେଳେ ବି ରଜା ସାହୁକାରଙ୍କ ଗୋଡ଼ାଣିଆ ଆଉ ପ୍ରଜା ଭିତରେ ଖଣ୍ଡଯୁଦ୍ଧ । ଏବେ ବି ପାର୍ଟି ପାର୍ଟି ସାଇ ସାଇ ଭିତରେ ଲାଗିଚି ଟଣାଓଟରା । ଜୀବନ ଗଲାଚି । ଫସଲ ହେଉଚି ମରୁଡ଼ି ହେଉଚି । ସୁଜଳା ସୁଫଳା ମାଟି ଅମାର ଭର୍ତ୍ତି କରି ଦଉଚି । ପୁଣି ଖାଁ ଖାଁ ଫଟା ମାଟି କଳାକନା ବୁଲେଇ ଦଉଚି । କେତେ ପାଖର ସାଆନ୍ତ ମହାଜନମାନେ କୋଠା ଟେକିଥିଲେ । ରାଜପଣ କରିଥିଲେ । ଏବକୁ କେହି ନାହାନ୍ତି । କୁଆଡ଼େ ହଜି ଗଲେଣି । ଆଉ ଦଳେ ନୂଆ ସଫାରି ସୁଟ୍ ମହନ୍ତ ଏବେ ବାହାରିଚନ୍ତି । ରାଜମାଣ୍ଡି ବାଲାଏ ମନ୍ତ୍ରୀ ମହାଜନଙ୍କ ସଂଖ୍ୟା ଏବେ ତ ଆଗଠୁଁ କେତେ ଅଧିକ । ତାଙ୍କ ଚାପ ଓଜ ଦେଖିଲେ ଭୟ ଲାଗୁଚି । କାଲିକାର ଛୁଆସବୁ ନଳୀ ପେଣ୍ଟ ପିନ୍ଧି ତାବିଜ ପିନ୍ଧି ଛୁରୀ ପିସ୍ତଲ ଚଳଉଚନ୍ତି । ଯୁବ ଅମୁକ, ଯୁବ ସମୁକ ପାର୍ଟିରେ କାର୍ପଟଦାର ନେତା ହେଉଚନ୍ତି । ହାକିମି କରୁଚନ୍ତି । ଗାଁର କଳିଜାକୁ ବିଦାରି ଛିନ୍‌ଭିନ୍ କରି ସାରିଲେଣି । ସେମାନେ

ବ ଯିବେ । ହେଲେ ବାପ ଇଏ କେଉଁଦିଗ ବାଜୁଥିବ ସବୁକାଳେ । କି ହେବ ଶୁଆ ପୋଷିଲେ—

କିଛି ନ ବୁଝିଲା ପରି ଜୁଳୁଜୁଳୁ ଗୁହୁଁଚି ଖୋକା । ବାବାଙ୍କ ଡାହାଣ ହାତ ପ୍ରସାରିତ କରି ଆଙ୍ଗୁଠି ସଙ୍କେତରେ ଡିମିରି ଗଛ ଉପରକୁ ଦେଖେଇ ଦେଲେ : ଦେଖ ଦେଖ୍ ବାପ ଶୁଣୁଛନ୍ତି ? ଫଡ଼୍ଫଡ଼୍ କରି ଏକାବେଳେକେ ଦେଢ଼ଶ ଦୁଇଶ ଚଢ଼େଇ କିଚିରି ମିଚିରି କରି ଆକାଶକୁ ଉଠିଗଲେ । ସେମାନଙ୍କର ସ୍ୱର ସିଞ୍ଜନ ଯେମିତି ବାୟୁମଣ୍ଡଳକୁ କିଛିକ୍ଷଣ ସ୍ତମ୍ଭିତ ହିଲ୍ଲୋଳିତ କରିଦେଲା ।

: ସେମାନେ ସୁଦ୍ଧି ଫେରିବେବେରେ ବାପ ସଞ୍ଜ ନଇଁଲେ । ଯିଏ ଯାହାର ଭିଳ ତଣ୍ଟୁଳରେ ପେଟ ପୂରେଇ ଆଉ କିଛି କିଛି ସଂଗ୍ରହ କରି ନେଇ ଆସିଥିବେ ଶାବକମାନଙ୍କ ପାଇଁ । ଯିଏ ଯାହାର ମାଳକୁ ବାହୁଡ଼ିବେ । ହେଲେ ତାଙ୍କ ଗୀତ ଗାଉଣା ତାଙ୍କର ମଧୁର କାକଳି, ପକ୍ଷ ବିସ୍ତାର ସବୁ-ଦିନ ଏମିତି ଅଣାୟତ୍ତ, ମୁକ୍ତ ଓ କମନୀୟ ହୋଇ ରହିଥିବ । ହେଲେ କଥା କଣ କି; ପକ୍ଷୀର ଗୀତ ଶୁଣିବାକୁ ସମୟ କାହାର ଅଛି । ସମୟ ଥିଲେ ବି ଧୈର୍ଯ୍ୟ କାହାର ଅଛି । ପକ୍ଷୀର ସ୍ୱରରେ ନିର୍ଜନ ତନ୍ମୟତା ଟିକିଏ ଖୋଜି ପାରୁଛି କିଏ ? ସଭିଏଁ ତ ବାଉଳ, ବ୍ୟସ୍ତ, ବିପର୍ଯ୍ୟସ୍ତ । ମୁଁ ଗଲିଲି । ଦାଦା କି ପିଣ୍ଡା ତଳକୁ ଓହ୍ଲେଇ ଆଗେଇ ଗଲେ ଖମାର ବାଲି ହିଡ଼ରେ । ତା'ପରଦିନ ଭୋର୍ ଭୋର୍ରୁ ଗାଁଟା ସାରା ଚହଳ । ସବୁ ଲୋକ ଏକା ସାଙ୍ଗରେ ପାଟି କରୁଚନ୍ତି ଆଉ ଇଆଡ଼େ ସିଆଡ଼େ ଦଉଡ଼ା ଦଉଡ଼ି କରୁଛନ୍ତି । ବାହାର ଦରଜାରେ କିଏ ଧକ୍କା ମାରୁଚି । କାଚ ରୁଣ୍ଡୁ ଝୁଣ୍ଡୁ ଶବ୍ଦ । ଖୋକନ୍ ଆଖି ମଳମଳ ଖୋଲିଲା । ମା'ନଜିଅ ପଶି ଆସିଲା, ତା ବାହାକୁ ଜୋର୍‌ରେ ହଲେଇ ଦେଇ କହିଲା ।

: କଣ ଶୁହୁଁଚ ଜନକା ପରି ? ପୁଲିସ୍ ଖୋଜୁଚି ?

· ଖୋକନ୍ ଆଁ କରି ଗୁହିଁଚି । କାହାକୁ ଖୋଜୁଚି ପୋଲିସ ?

. ତମେ ଜାଣିନ କି କାଲି ରାତିରେ ଗୁଡ଼ ବେପାରୀ ଚନ୍ଦନ ସାଆନ୍ତଙ୍କ ଘର ସଟମତ ପଧାନ ସାଇର ଅଧେ ଘର କିଏ ନିଆଁ ଲଗେଇ ପୋଡ଼ି

ଦେଇଛି । କୁଠି ଖିଏ ବି ନାହିଁ । ଧାନ ଗୁଡ଼ିକ ସବୁ ଅଙ୍ଗାର ହୋଇ ପଡ଼ିଛି । ଗାଁବାଲା କହୁଛନ୍ତି ଯେ ସେମାନେ ଅଞ୍ଜନା ଦେବୀଙ୍କୁ ଭୋଟ ଦେଲେ‌ନି ବୋଲି ଏ କାଣ୍ଡ ସବୁ ତାଙ୍କର ପାର୍ଟିବାଲା ଭିଆଇଛନ୍ତି । ହେଲେ ଏତେଲା କିଏ ଦେଇଛି ଯେ ତମେ କୁଆଡ଼େ ସେ ଘର ସବୁ ପୋଡ଼ିଛ । ତମେ ତାଙ୍କ କାମ କଲନି ବୋଲି ସେ ଦାଉ ସାଧୁଛନ୍ତି । ଝିଅଟି ପଳେଇ ଯା ଏଠୁ ।

ଖୋକନ୍ ଅଲଗୁଣିଟୁ ଟେଲଗ୍ରାମ ଟିଏ ଦେଖି ଆଉ ଫଟେଇ ଚାଣିଆଣି ଗଳେଇ ଦେଲେ । ସିଧା ବସିଲା ଯାଇ ଟ୍ରକ୍‌ର ଉପରେ ଆଉ ଛୁଟିଲା ଗୋପାଳପୁର ବସ୍‌ଷ୍ଟାଣ୍ଡ ପାଖରେ । ମାଳତୀ ତା ବାଟକୁ ଅନେଇଛି । ବସ-ଷ୍ଟାଣ୍ଡରେ ପହଞ୍ଚି ଟ୍ରାକ୍ଟର ଗୁଡ଼ାକୁ ଅଗାଧୁ ମାଇକଲ ଦୋକାନ ଜମା କରି ଦେଇ ହାଲିଆ ମାରୁଛି । ତା ପିଠିରେ କିଏ ହାତ ରଖିଲା ପରି ଲାଗୁଛି । ପଛକୁ ଚାହିଁ ଦେଖେ ନରହରି ମଉସା । ତାଙ୍କର ମୁଣ୍ଡବାଳ ସବୁ ଧୋଠ ହୋଇ ଗଲେଣି । ଖବର ନାଇଁ ଅନ୍ତର ନାହିଁ ହଠାତ୍ କେମିତି ଗାଁକୁ ପଳେଇ ଆସିଛନ୍ତି । ହାତ ହାତ ସବୁ ଅଧିକା ସରୁ ହୋଇ ଯାଇଛି । ହେଲେ ଗୋଟାଏ ନୂଆ ମଠା ଜାମା ପିନ୍ଧିଛନ୍ତି । ନୂଆ ଚପଲ । ଫିନ୍ ଫିନ୍ ଧଳା ଖଦଡ଼ ଧୋତି । ତାଙ୍କ କାନ୍ଧରେ ବି ଖଦଡ଼ ଝୁଲାମୁଣି । କହୁଛନ୍ତି—

; ବ୍ୟସ୍ତ ହ'ନା ଖୋକନ୍ । ସବୁ ଖବର ମୁଁ ପାଇଛି । ମୁଁ ପୁଣି ରଣ ଭୂଇଁକି ଡେଇଁଲି । ହଜିଥିବା ଶବମୂର୍ତ୍ତି ପୁଣି ଫେରି ଆସିଛି ପକେଟ୍‌କୁ । ଏ ଯୁଦ୍ଧ ଅଞ୍ଜନା ସଙ୍ଗରେ ନୁହେଁ, ଏ ଯୁଦ୍ଧ ହଉଛି ବୁନିଆଦ ଆଉ ବେ-ବୁନିଆଦ୍ ଭିତରେ । ତୁ ଏସବୁ ବୁଝି ପାରିବୁନି । ତୋର ଉଡ଼ିବାର ଅଭ୍ୟାସ ଅଛି । ଉଡ଼ାପକ୍ଷୀ ଯା ଉଡ଼ିଯା । ତୁ ମୁକ୍ତ । ମୋ ଗୋଡ଼ରେ ତ ବେଡ଼ି ପଡ଼ିଛି । ଆମେ ସବୁ ପେଶାଦାର ଦେଶପ୍ରେମୀ ଲୋକ କି'ନା ? ତାଙ୍କ ମୁହଁରେ ମଉଳା ହସ । ଏତିକବେଳେ ଠିକ୍ ଷ୍ଟାର୍ଟ ଦେଇ ଗୋଟାଏ ମାଲବୁହା ଟ୍ରକ ଆଗେଇବାକୁ ପ୍ରସ୍ତୁତ । ତାର ଡାଲା ଉପରେ ଏକା ଝେଞ୍ଚାରେ ଚଢ଼ିଗଲା ଖୋକନ୍ । ପାଲ'ଟା ମୁଣ୍ଡ ଉପରକୁ ଟାଣି ଘୋଡ଼େଇ ଦେଲା । ଟ୍ରକ ଚାଲିଛି । ସେଇ ପାଲ୍‌ଢଙ୍କା ଅନ୍ଧାର ଆମେଜ୍ ଭିତରେ ତାକୁ ଲାଗିଲା ଆଉ କଣରେ ଗୋଟାଏ ବୁଢ଼ିଆ ବନ୍ଧା ଅଖା ଭିତରୁ କିଏ ଗୋଟାଏ ଖୁଜ୍ ଖାଜ୍ କରୁଛି ।

ଚୂଡ଼ି ରୁଣୁଝୁଣୁ ଆବାଜ ପରି ଲାଗୁଛି । ଏଇତ ଅଖାର ମୁହଁ ଖୋଲିଗଲା ।

: କିଏ କଲେ ? ତୁ ତ ମାଳଞ୍ଚ । ତୁ ପୁଣି କୁଆଡ଼େ ?

ମାଳଞ୍ଚ ଖୋକନ୍ ପାଖକୁ ଲାଗି ଆସିଲା । ତା କାନ୍ଧକୁ ଦୁ'ବାହୁରେ ଜାବୁଡ଼ି ଧରି ଥିରି ଥିରି ତା' କାନରେ କହିଲା ।

: ତୁମେ ସିନା ତୁମ କଥା ରଖିଲନି । ହେଲେ ମୁଁ ମୋ କଥା ରଖିଛି । ମୁଁ ଏବେ ହଁ କରୁଛି ।

ବେଶ୍ ଉଶ୍ୱାସ ଲାଗୁଛି ଖୋକନ୍‌କୁ । କେତେ ବାଟ ଟ୍ରକ ଚାଲିଲାଣି ଜଣା ଯାଉନି । ପ୍ରାୟ ଦୁ'ଘଣ୍ଟାର ରାସ୍ତା ସେମାନେ ଚାଲି ଆସିଲେଣି । ଟ୍ରକ୍ ଡାଲାର ଫାଙ୍କେ କେର୍‌ପାଲ୍ ଖୋଲି ଯାଇଛି । ଆଉ ସେଇ ଦାଢ଼ରେ ବସିଛି ଟିକି ଚଢ଼େଇଟିଏ । ନିମିଷକ ଭିତରେ ଆଉ ଗୋଟେ ଚଢ଼େଇ ଆସି ତାରି ପାଖରେ ବସିଲା ଆଉ ଦୁ'ଟାଯାକ ଥଣ୍ଟରେ ଖୁମ୍ପାଖୁମ୍ପି ହଉଛନ୍ତି । କେଡେ ମନସ୍ପୃ ଏ ଦୃଶ୍ୟ । ମାଳଞ୍ଚ ଖୋକନ୍‌ର ବାହୁକୁ ଚିମୁଟି କହୁଛି ।

: ଗୀତ ଶୁଣିବ, ଶୁଣ ।

ଯେମିତି କାଚ ରୁଣୁଝୁଣୁ କରି ବାହାଟାକୁ ହଲେଇ ଦେଇଛି ଚଢ଼େଇ ଦୁ'ଟା ଚିଁ ଚିଁ ରାବ ଦେଇ ଉଡ଼ି ପଳେଇଲେ । ଦିହେଁ ଦିହିଁଙ୍କ ଗେହ୍ଲା କଲାଭଳି ଟିରିଟିଂ ଟିରିଟିଂ ବାଜିକି ଚହଲି ଯାଉଛି । ଖୋକନ୍ ଚାହିଁଛି ମାଳଞ୍ଚର ସ୍ୱପ୍ନମୁଗ୍ଧ ଭ୍ରୂବଲ୍ଲରୀକୁ ।

କେରପାଲ୍ ଉପରେ ଝିପି ଝିପି ବର୍ଷାର ଜମକ୍ ଆରମ୍ଭ ହେଇ-ଯାଇଛି । ଖୋକନ୍‌ର ପକ୍ଷ୍ମରେ ଟୁଳୁ ଟୁଳୁ ନିଦ ।



# ଏମିତି ରାତି

ମଣିଷ ନା ବାଡ଼ଚଢ଼ ! ସୂର୍ଯ୍ୟାସ୍ତ ପୂର୍ବରୁ ଘରକୁ ବାହୁଡ଼ ଆସିବା କଥା ଗୋଠରୁ । କିନ୍ତୁ ଗୋଠଛଡ଼ା ଓଲେଇ ଧେନୁମାନଙ୍କ ପାଇଁ ଏ ବିଧି ଲାଗୁ ନୁହେଁ । ମନାନନ୍ଦ ଆଜି ଅଫିସ୍ ଛୁଟି ପରେ ସିଧା ଘରକୁ ଫେରିବା ଭୁଲିଗଲେଣି । ସେ କୁଆଡ଼େ ରାତି ଦ'ଟା ଅଡ଼େଇଟା ପର୍ଯ୍ୟନ୍ତ ଫେରାର୍ ହୋଇଯାଆନ୍ତି କାହାକୁ ଗୋଚର ନହେଁ । ଅନେକ ଦିନ ତାଙ୍କର ବି ସକାଳକୁ ମନେ ନଥାଏ ଯେ ସେ ରାତିସାରା କୋଉଠି ଥିଲେ । କେଉଁଥିଲେ ନାଁ ଗହନ ନିଦରେ ଭାସୁଥିଲେ କେଉଁ ସ୍ୱପ୍ନର ମହୋଦଧିରେ । କିନ୍ତୁ କି ରାତ୍ରି କି ଦିନ ସବୁବେଳେ ଦେଖନ୍ତି ଆକାଶ ରେଇଁଚ । ସୂର୍ଯ୍ୟ ଫୁଟୁଚି, ଚନ୍ଦ୍ର, ତାରା ଫୁଟୁଚନ୍ତି ନିର୍ଦ୍ଧାରିତ ଖାତରେ । ସଂସାର ଠିକ୍ ଠାକ୍ ଅଛି । ମନାନନ୍ଦଙ୍କ ବରାଦ ନିଭିଦିନିଆ ଅଟୋରିକ୍ସା ଦମ୍ଭର ଆଗରେ ଲାଗିଛି । ଫୋହଳା ରଙ୍ଗର କାନ୍ଥଟା ଲେମ୍ବୁକୋଟ୍ ନେକ୍ଟାଇ ହୁଗୁଳା ହୋଇ କୋଲାର୍ ରେ ଝୁଲୁଛି । କର୍ଡ୍ରୟ କୋଟ୍ଟା କାନ୍ଧରେ ବେପରୁଆ ଠାଣିରେ ଝୁଲେଇ ଦେଇ ଝେପି କରି ପଶିଗଲେ ଅଟୋ ଭିତରେ ।

: ଚଲ୍ । ଆଜି ଦକ୍ଷିଣ ମୁହାଁ ! ସବୁଦିନ ଯେ ଦିଗ ବଦଳା ହେଉଚି ଜାଣୁନ କି ରହମାନ୍ ମିଆଁ !

ରହମାନ୍ ବାଁ ହାତ ପାପୁଲିଟା ବଢ଼େଇ ଦେଲା ଭଳି ଇସାରାରେ ସଙ୍କେତ କଲା ଯେ ସିଏ ସବୁ ଠିକ୍ ବୁଝିଚି । ଅନଭ୍ୟାସରେ ଓଠାର ହେଲାଭଳି କୁହେଇ କୁହେଇ ଅଟୋ ଇଞ୍ଜିନ୍ କେର୍ ର୍ ଘୁଁ କେର୍ ର୍ ଘୁଁ କରି ଆଗେଇଲା ।

ତାଙ୍କ ଆଖି ସାମନାରେ ଏବେ ସହରୀ ରାଜରା । ତା' ପାଖକୁ ଅଳ୍ପ ଫଳସାରେ ଚଟାପଟ୍ ଶବଦାହର ଖୋଲାକାର ଇଲେକ୍ଟ୍ରି ଚୁଲ୍ଲୀ । ରାସ୍ତା ଲମ୍ବିଚି ଦ'ଧାଡ଼ ସୁନା ଆଲୁଅର ଝଲସା ପକ୍ଷ ତଳେ ଲେସିହୋଇ ଯାଇ-

ଥିବା ପାଲିସ୍ ଗାଲର ଶୁଖିଲା ଲୁହ ଦାଗ ପରି । ଆରପାଖେ କାଠଯୋଡ଼ା । ଶୁଖିଲା ବ ଲବନ୍ତ । ଖାଙ୍କା ପେଟ । ପାଣି ବୁନ୍ଦାଏ ନାହିଁ । ଏଇଠି ଅଟକିବା ମମାନ୍ଦ୍ର ମନସ୍ଥ କଲେ । ଦେଢ଼ଘଣ୍ଟା ହେବ ରହମାନ୍ ବଡ଼ ଟାଣି ଅଛୋ । ସିଟ୍ ଉପରକୁ ଗୋଡ଼କୁ ଟେକ ଆଖି ବୁଜ ଅପେକ୍ଷା କରୁଚ ଦହିବଡ଼ା ଆଲୁ-ଦମ୍ ଷ୍ଟଲ ଦୋକାନ ଦାଣ୍ଡରେ ।

ମମାନ୍ଦ୍ର ଶୁଖିଲା ନଈ ମଟିକୁ ଓହ୍ଲେଇ ଯାଇ ଚଉକାଠ୍ । ଏବେ ସିଏ ଗୋଟେ ଭିନ୍ନ ମଣିଷ । ତାଙ୍କ ପରିଚୟ ଜ୍ଞାନ ଗୋଚର ସବୁ ଯେମିତି ପୁରା ମନରୁ ନିର୍ବାସିତ । ନଗଦ କଳ୍ପନା କରିଯାଉ ଯେ ସିଏ ନିଜେ ଗୋଟିଏ ସିଜ୍ ବୁଢ଼ା । ଆଜ ତାଙ୍କୁ ଭଲ ଲାଗେ ଯେତେବେଳେ ଗୋବର ପୋକ, ବେଙ୍ଗ, ଟେଣ୍ଟା କୋଚଆ, ପାଣି ଧଣ୍ଡ ତାଙ୍କ ଦେହ ଉପରେ ଚଢ଼ି ଉଆଁ ଉକୁଟ କରନ୍ତି, ଗେହ୍ଲା କରନ୍ତି, ଆଲିଙ୍ଗନ ବି କରନ୍ତି । ଏଲିଡ କୁକୁର କୁଣ୍ଡି ଢ଼ୋଁଟା ଖଣ୍ଡେ ଶୁଖିଲା ଗୋରୁ ଚମଡ଼ା କେଉଁଠୁ ଟାଣିଆଣି ତାଙ୍କ ପିଠିରେ ଆଉଜେଇ ଦେଉଛନ୍ତି ଲାଗିଚନ୍ତି । ଆଉ କେତେ ଗମାତରେ ଢେଞ୍ଚ ଢେଞ୍ଚ ରଡ଼ି କରି ଉଲ୍ଲସିତ ହେଉଚନ୍ତି । ସିଜ୍ ବୁଢ଼ା ହବା ମାନେ ନୀରବ ଦ୍ରଷ୍ଟା, ତଟସ୍ଥ ସାଧକ ହେବା । ମମାନ୍ଦ୍ର ମୁରୁକି ହସୁଚନ୍ତି ତାଙ୍କ ନିଜ କଳିଜା ଆଡ଼େ ଚାହିଁ । ଧ୍ୟାନ ଅନ୍ତର୍ମୁଖୀ ।

ମୁଣ୍ଡରେ ହାତେ ଓଢ଼ଣା ଦେଇ ସ୍ତ୍ରୀଲୋକଟିଏ ଆସି ସାମନାରେ ବସିଲାଣି । ନଈର ବାଲିବନ୍ତ ଶଯ୍ୟା ପିଠିରେ ଆସ୍ତେ ଆଉଁସି ଯାଉଚ ଦିଶାସୁ ଚନ୍ଦ୍ରର ଲହୁଣି ପ୍ରଲେପ । କାଚ ଚୁଡ଼ି ଝୁଣ୍ଟୁ ହାତରେ ସ୍ତ୍ରୀଲୋକ ଗାର କାଟୁଚ ଓଦା ବାଲି ଉପରେ । ଦେଉଳ ଆଙ୍କୁଚ, ପଦ୍ମ ଆଙ୍କୁଚ, ହଳ ବେଙ୍ଗେଳା କଳେଇ ଗଦା ଆଙ୍କୁଚ । କି ଅଜବ ଭାଷାରେ ନାଁ । ଲେଖି ଯାଉଚ, ଠିକଣା ଲେଖୁଚ କାହାର । କେହି କାହାକୁ ପଚାରୁ ନାହାନ୍ତି । ଓଠରେ ସ୍ପନ୍ଦନ ନାହିଁ କି ଉତ୍ତର ନାହିଁ । ଖାଲି ଦୁଇଟି ନିଶ୍ଚଳ ଅବସ୍ଥିତି । ଯେତେଥର ସେ ଏଠିକି ଆସିଚନ୍ତି ଏଇ ସ୍ତ୍ରୀଲୋକଟି ଆସି ତାଙ୍କ ପାଖରେ ବସେ, ଆଡ଼ପାତ ହୁଏ । ଘରି ଭଲ ଲାଗେ ମମାନ୍ଦ୍ରଙ୍କୁ ଯେତେବେଳେ ଅସମ୍ଭାଳ ହାଓ୍ୱାର ଲହଡ଼ି ତାର ଓଢ଼ଣୀକୁ ବଦର୍ଯ୍ୟସ୍ତ କରି ଲୁଗୁ ମୁହଁ ଖୋଲି ଦେଖିବାକୁ ବାଧ୍ୟ କରେ ।

ହେଲେ ଯୋର୍ କରି ଓଢ଼ଣା ଟାଣିଦେଇ ସ୍ତ୍ରୀ ଲୋକଟି ମୁହଁ ଢାଙ୍କି ଆସେ, ଆଜି ଅସମାହିତ ରହେ ଏକ ପ୍ରାଗୈତିହାସିକ ପ୍ରଶ୍ନ; କିଏ କିଏ ସେ ?

ଆଜି କାହିଁକି ଏକ ବ୍ୟତିକ୍ରମ । ଝିଅଟି ସୁଁ ସୁଁ କରି କାନ୍ଦିବା ଆରମ୍ଭ କରିଛି । ପବନର ହିଲ୍ଲୋଳରେ ଗୁପ। କରି କରି କାନ୍ଦଣାର ସୁର୍ କେତେ ବିଘୋର କରୁଛି ଏଇ ଶୂନ୍ ଶାନ୍ ଗ୍ରେଭ ଚଇତ ଳ ଅବହୁ ଓ୍ୟାକୁ । ମନ କହୁଛି ଅନୁନୟ କରିବାକୁ, କାନ୍ଦନିରେ ସୁନ୍ଦରୀ । ଉଚ୍ଛୁଳ ଉଚ୍ଛୁଳ କାନ୍ଦ୍ ତେର କେଳଯାଏ । ଭୂଇଁ ଉଶ୍ୱାସ ହୋଇଯାଉ । ମହାନନ୍ଦ୍ଙ୍କୁ ନଦ ହୋଇ-ଯାଉ । ହେଲେ ଗୁଉଁକନା ତାଙ୍କ ତନ୍ଦ୍ରା ଭାଙ୍ଗିଲେ । ଏଇ କାନ୍ଦଣାର ଅନୁରଣନ ନୂଆ ତ ନୁହେଁ । ସିଏ ଆଗରୁ ଶୁଣିଚନ୍ତି । ବିବଶ ହୋଇଚନ୍ତି ଏକଦା । ' କା' ଆଖିରୁ ସନ୍ତ୍ରୁବନ ପାଇଁ ଲୁହ ପୋଛି ଦେବା ପାଇଁ ହାତ ବଢ଼େଇ ଦେଇଚନ୍ତି, କିନ୍ତୁ ପାରି ନାହାନ୍ତି । କାପୁରୁଷ ! ନିଜକୁ ଧିକ୍କାର କରିଛନ୍ତି । ଗ୍ରେଭର ପରି ଖସି ପଡ଼ିଲେଇଚନ୍ତି । ଏବେ ନିଜ ଅଣ ଅକ୍ତିଆରରେ ଝିଅକୁ ଛୁଇଁବାକୁ ହାତ ଲମ୍ବିଗଲା । ଝିଅ ଭୂଇଁ ଉପରୁ ସାଏଁ କରି ଉପରକୁ ଉଠି ଖଣ୍ଡିଆ ଭୂତ ପରି ଘୂରି ଘୂରି ଆକାଶରେ ଉଭାନ୍ ।

ରହମାନ୍ ମିଆଁ ତାଙ୍କ କାନ୍ଧକୁ ହଲେଇ ଯୋର୍‌ରେ ଡାକ ଛାଡ଼ିଛି ।

: ଉଠନ୍ତ ବାବୁ । କାଇଁକି ତେଇଁ ଶୁଆରେ ବଳ ବନୋଉଚ ନଙ୍ଗ ପଠାଟାରେ । କୋଉ ନନ୍ଦମା ଏଇଠି ଅଛି ଯେ ଡାକ ଛାଡ଼ୁଚ ନନ୍ଦମା ନନ୍ଦମା ବୋଲି । ଜାଡ଼ ଲାଗିବ । ଚାଲ ଘରକୁ ।

ଠିକ୍ ଅଛି । ଆଜି ନୈଶ ବିହାର ଏତିକି ଥାଉ ।

ଏଇ କାଲିକା କଥା । କୋଉ ଯୁଗ ପରି ପ୍ରତେ ହଉଚି । ଦପ୍ତରରେ ସେଦିନ ଭିନ ଭିନଟା ମିଟିଂ କନ୍‌ଫରେନ୍‌ସ୍ । ବିଗ୍ଭର ବିମର୍ଷର ଉଦ୍‌ବେଳ ଏମିତି ଯେ ଏକାଠି ସମସ୍ତେ ଏକାବେଳେ ପାଟି କରି ନିଜ ପକ୍ଷ ସମର୍ଥନ କରୁଥିବେ । କମ୍ପଉଥିବେ । ଅଥଚ କେହି କା' କଥା ଶୁଣୁ ନ ଥିବେ । ଯା'ର କିଛି କହିବାର ବା ଶୁଣିବାର ଇଚ୍ଛା ନାହିଁ ସେମାନେ ପଛ ଧାଡ଼ିକୁ ଉଠି ଯାଇ ମେଜ ଉପରେ ଆଉଜି ଢୁଙ୍ଗୁଡ଼ି ମାରୁଥିବେ । ମହାନନ୍ଦ୍ ମୋଟାମୋଟି ହିଶାସୂ

ପର୍ଯ୍ୟାୟର ଲୋକ । କେତେବେଳୁଁ ସଭା ସାଙ୍ଗ ହୋଇ ସମସ୍ତେ ଉଠି ଗଲେଣି । ମମାନ୍ଦ୍ର ସେଇମିତି ଘୁମେଇଁ କୁସନ ବାହା ଉପରେ ଆଉଜି ରହିଚନ୍ତି । ତାଙ୍କ କନ୍ଧ ହଲେଇ ଚୌକିଦାର ଉଠେଇ ଦେଲା ଆଉ କହିଲା ଯେ—ଜଣେ ସ୍ତ୍ରୀ ଲୋକ କେତେବେଳୁଁ ତାଙ୍କ ଗ୍ରିଭାନ୍ସ ସେଲ୍‌ରେ ଅପେକ୍ଷା କରିଚନ୍ତି । ଆଉ ଶେଷରେ ଖୋଜି ଖୋଜି ଆସି ଏଇ କନ୍‌ଫରେନ୍‌ସ ହଲ୍‌ରେ ଦ୍ୱାରସ୍ଥ । ଆଖି ମଳି ମଳି ଉଠିଲେ । ସଦର ଦରଜା ମେଲେଇ ଦେଖନ୍ତି ତ କାଖରେ ବର୍ଷକର ପିଲାଟିଏ ଧରି ଠିଆ ହୋଇଚି ନିରିମାଖୀ ଧୋବ ଲୁଗା ଖଣ୍ଡେ ତାଙ୍କି ହୋଇ ବିଧବା ବୋହୂଟିଏ । ତା' ଓଠ, ଆଖି, କପାଳ, ସୀମନ୍ତ ସବୁ ଥରୁଚି ସଂଶୟରେ । କ'ଣ କହିବ କହିବ ହଉଚି କହି ପାରୁନି । ମୁହଁ ଲାଜ ରକ୍ତ । କୌଣସି କାରଖାନାରେ ଫୋରମ୍ୟାନ ତାର ସ୍ୱାମୀଙ୍କ ପ୍ରାୟ ଛ'ମାସ ତଳେ ବଏଲର୍ ବିସ୍ଫୋରଣରେ ମୃତ୍ୟୁ ଘଟିଛି । ତାଙ୍କୁ କମ୍ପେନ୍‌ସେସନ୍ ମିଳିବାରେ ଅବ୍ୟବସ୍ଥା । ସେ ବହୁତ ଦଉଡ଼ ଧାପଡ଼ କରିବା ପରେ ମଧ୍ୟ ଡିପାର୍ଟମେଣ୍ଟରେ ତାଙ୍କ ନଥି ପଡ଼ି ରହିଚି । ତା' ଛଡ଼ା ନିଜର ଓ ଶିଶୁପୁଅର ଭରଣ ପୋଷଣ ପାଇଁ ତାଙ୍କର ଖଣ୍ଡିଏ ଚାକିରି ଦରକାର । ସେ ଆଇ. ଏ. ପାଶ୍ କରିଛନ୍ତି । ଚାକିରି ପାଇବା ଦୁଃସାଧ୍ୟ ବ୍ୟାପାର । ତେବେ ଚେଷ୍ଟା କରାଯିବ ବୋଲି କୁନି ହାକିମ ମମାନ୍ଦ୍ର କଥା ଦେଲେ । କ୍ଷତିପୂରଣଟା ଓ୍ୟାଜିବ୍ କଥା । ତାର ବ୍ୟବସ୍ଥା ହୋଇଗଲା । ତା'ପର ସପ୍ତାହରେ ଥରେ ଦି'ଥର ଝିଅଟା ଦୌଡ଼ିଲା ମମାନ୍ଦ୍ରଙ୍କ ଦପ୍ତରକୁ । ଥରେ ଯାଇ ବସାରେ ବି ପହଞ୍ଚିଗଲା । ସଳଖ ଉଜ୍ଜଳ ଚେହେରା । କମିଆଁ କଲଭଳି ଗୃହିଣୀ । ଅଣଚୁଶ ପବନରେ ଲୋଟି ପଡ଼ିଥିବା ମାଳତୀଲତା ପରି ଅବନତ ସ୍ପର୍ଶକାତର ଭଙ୍ଗିମା । ତାକୁ ଉପେକ୍ଷା କରି ହୁଏନା । ମମାନ୍ଦ୍ରଙ୍କର କେହି ନାହାନ୍ତି । ସଂସାର ନାହିଁ । ବାହାଘର ବର୍ଷକ ପରେ ପତ୍ନୀ କଣ ଗୋଟାଏ ବିଚିତ୍ର ବ୍ୟାଧିରେ ଦେହତ୍ୟାଗ କଲେ । ତାପର ଏ ଯେଉଁ ଭୋଳା ମଣିଷ ଆଉ ଥରେ ଘର ବାନ୍ଧିବାକୁ ମନ କଲେ ନାହିଁ । ସିଏ ଏବେ ଅରକ୍ଷିତକୁ ଦଇବ ଭଳି ସାହା ହୋଇ ଠିଆ ହୋଇଗଲେ ନିମିଷେ ନନ୍ଦମାର ପାଖେ ପାଖେ । ତାଙ୍କ ସୁପାରିଶ୍‌ରେ ଏବେ ନନ୍ଦମା ଫ୍ୟାକ୍ଟ୍ରି କର୍ମଚାରୀଙ୍କ ସାନ ପିଲାଙ୍କ କିଣ୍ଡରଗାର୍ଟନ୍‌ର ଶିକ୍ଷୟିତ୍ରୀ । ଭଲ ଦରମା । ତାର ଗ୍ରେଡ଼ିଆ

ନିବୁଜ ସଂସାର ଏବେ ସୁରକ୍ଷିତ । ମମାନ୍ଦ୍ରଙ୍କ ବସା ପାଖରୁ ତାର ବସାଘର ପ୍ରାୟ ପନ୍ଦର ମିନିଟ୍‌ର ପଦଚଲା ରାସ୍ତା ।

ଏକ ଅଜବ ଧାତୁର ମଣିଷ ଏଇ ମମାନ୍ଦ୍ର । ସାତ ବଖରା ବଙ୍ଗଳା ପରି ଏଡ଼େ ଫର୍ଚ୍ଚା ଘରଟାରେ ଖାଁ ଖାଁ ଗୋଟାଏ ମଣିଷ । ଚାକର ବାକର କି ବୋଲହାକ କରିବା ପାଇଁ ଓଳିକିଆ ଟହଲିଆଟାଏ ବି ନାହିଁ । ସକାଳୁ ବ ବୁ ଆଠଟା ବେଳକୁ ଶେଯ ଛାଡ଼ିବେ । ଷ୍ଟୋଭ୍ ବସେଇ ଚାର ଛଅ କପ୍ ଚା କରି ଫ୍ଲାସ୍କରେ ରଖିଦେବେ । ସେଇଥିରୁ ଟିକେ ଟିକେ ପିଉଥିବେ ଅଫିସ୍ ଯିବା ପର୍ଯ୍ୟନ୍ତ । ସକାଳେ ବ୍ରେକ୍‌ଫାଷ୍ଟର ବ୍ୟବସ୍ଥା ନାହିଁ । ଘର ଓଳେଇବେ ସେଇ, ଶେଯ ପକେଇବେ ସେଇ, ଫୁଲଗଛରେ ପାଣି ଦେବେ ସେଇ । ମଣିଷ ଜଞ୍ଜା ଏଣ୍ଡୁ ତେଣ୍ଡୁ ବହି ଗଦା ହୋଇଥିବ ଡ୍ରଇଂ ରୁମ୍‌ରେ । ତା' ମଝିରେ ଗୋଟେ ହାତେ ମୋଟା ଧୋବ ଫର ଫର ଚଦର ଆଉ ତା' ଉପରେ ଦଇଠା ମସ୍ତବଡ଼ ଗୋଲ୍ ତକିଆ । ସେଇଠି ଆଉଜି ରହି ପଢ଼ା ଲେଖା ଚାଲିବ ରାତି ତିନି ପର୍ଯ୍ୟନ୍ତ । ଦ'କଠା ବଡ଼ ଆଉ ଗୋଟେ ପ୍ୟାକେଟ୍ ସିଗ୍ରେଟ୍ ସେଇ ଚାର ଘଣ୍ଟାରେ ଶେଷ୍ । ରାତି ରନ୍ଧା ଭିତରେ ପୋଷେ ଅରୁଆ ଚାଉଳରେ ଫଡ଼ାଏ ଫଡ଼ାଏ ଆଳୁ, କୋବି, ଭେଣ୍ଡି, କଖାରୁ ଯାହା ମିଳିଲା ତା' ସାଙ୍ଗକୁ ମୁଗ ଡାଲି ଆଉ ଧନିଆ ପତର ସବୁ ମିଶି ଗୋଟେ ଘାଣ୍ଟ ହୋଇଯିବ । ଚୁଲିରେ ସିଝିବ, ସେଇଥିରୁ ଦ'ଡଙ୍କ ଆଉ କପେ ଗରମ କଫି ହେଲା ରାତି ଭୋଜନ । କୋଉ କଥାରେ ସମୟ ଜ୍ଞାନ ବୋଲି କିଛି ନାହିଁ । ଆଜି ଦିନରେ ଆଠ ଘଣ୍ଟା ଶୁଆ ତ କାଲି ରାତିସାରା ଫୁଙ୍ଗୁଳା ରାସ୍ତାରେ ଜ୍ୟୋତ୍ସ୍ନା ବିହାର । ଏକା ଏକାଟିଆ, ଏକବାରେ ନିଜସ୍ୱ ନିକାଞ୍ଚନତାରେ ମସଗୁଲ୍ । ଦିନେ ଘରକୁ ଫେରିଲା ବେଳକୁ ଦେଖନ୍ତି ନିର୍ମଳ କରି ଘର ସବୁ ଧୂଆ ହୋଇ ପୋଛା ପୋଛି ହୋଇଛି । ତାଙ୍କର ଗଦା ହୋଇଥିବା ଓ ଧୋବାକୁ ଅପେକ୍ଷା କରିଥିବା ମସିଆ ଗେଞ୍ଜି କମିଜ୍ ପେଣ୍ଟ୍ ସବୁ ସଫା ହୋଇ ଝୁଲୁଛି ହ୍ୟାଙ୍ଗର୍‌ରେ । ନଗଦ ଇସ୍ତ୍ରୀ ଭାଙ୍ଗରେ ଚଡ଼ତା ହୋଇଛି । ବହିପତ୍ର ଆସବାବ ସବୁ ଖୁବ୍ ପରିପାଟୀରେ ଥାକମରା ହୋଇ ଘରର ଚେହେରା ବଦଳି ଯାଇଛି । ରୋଷେଇ ଘରୁ ଗ୍ୟାସ୍ ଷ୍ଟୋଭ୍‌ରୁ ସଞ୍ଚରି ଆସୁଛି ମାଛ ଝୋଳର ବାସ୍ନା । ଦୁଆର ବନ୍ଧକୁ ଆଉଜି ଠିଆ ହୋଇଛି ନନ୍ଦମା । ମୁହଁରେ ଜାଣି ସିଆଣୀ ହସ ।

: ତମକୁ ଏଠିକି ଆସିବାକୁ କହିଲା କିଏ ?

କଣ ସବୁ ଗୁଳାଚି ଶୁଣେ ।

: ମୋ ମର୍ଜିରେ ମୁଁ ଆସିଚି । ଆପଣ କାଇଁକି ରାଗୁଚନ୍ତି ? ମୁଁ କ'ଣ ପୋଇଲାଗିରି ପାଇଁ ମୂଳ ମାଗୁଚି ?

ଡିମା ଡିମା ତରଳ ଆଖିରେ ତାଙ୍କୁ ସତୃଷ୍ଣ ଚାହିଁ ରହିଚି ନନ୍ଦିନୀ । କ'ଣ ଖୋଜୁଚି ତାଙ୍କ ମୁହଁରୁ । ଦୟା, ଅନୁକମ୍ପା, ନା କୃତଜ୍ଞତାର ଅକୃପଣ ହସ ଟିକିଏ !

ଅକାରଣଟାରେ ଫଁ କରି ଗେଞ୍ଜ ମାରିଲେ ମମାନ୍ଦ୍ର—

: ତମେ ଏଠୁଁ ଏବେ ପଳେଇ ଯା । ମନେରଖ ଯେମିତି ଜନ୍ମାରୁ ଏଠିକି କେବେ ନ ଆସ ।

ଅଧିକାର ସାବ୍ୟସ୍ତ କରିବାର ବାଟ କୋଉଠି ଅଛି ! ନନ୍ଦିନୀ ଆଷାଢ଼ ବାଦଲ ପରି ମୁହଁ ଥମ ଥମ କରି ଚାଲିଯାଉଚି । ନତଭ୍ରୁ ! ବାଷ୍ପରୁଦ୍ଧ କୋହରେ ଫାଟିଯାଉଚି ଛାତି । ମଣିଷ ଏଇଟା ନା କାଠ ପିତୁଳାଟାଏ ! ମମାନ୍ଦ୍ର ଝର୍କା ଭିତରୁ ଆକାଶକୁ ଚାହିଁ କଳିପାରୁନାହାନ୍ତି, ସିଏ ଠିକ୍ କରିଛନ୍ତି ନା ଭୁଲ ! କାଇଁକି ତାଙ୍କ ପାଇଁ ଏଇ ଉତ୍ତାପହ ଜରିମାଖୀ ନନ୍ଦିନୀର ଏତେ ଦରଦ !

ତେର ଦିନ ଆଗରୁ କଥାଗୁଡ଼ା ଏମିତି ଘଟିଗଲା । ଘଟଣା ନୁହେଁ ତ ବ୍ୟୁତ୍ପାତ । ସ୍ଥିକର ଛ ମାସ ହେଇଚି କି ନାଇଁ ଡିପାର୍ଟମେଣ୍ଟର କଳାକାର-ମାନେ ଡ୍ରାମା କରୁଥିଲେ । ସେ ଡ୍ରାମାର ହିରୋ କଣ ଗୋଟାଏ ଗୌଣ କାରଣରୁ ହିରୋଇନ୍‌କୁ ଧକ୍‌କା ଦେଇ ଘରୁ ବାହାର କରି ଦେଇଥିଲା । ତାପରେ ପୁଣି କଣ ହେଲା କେଜାଣି ନିଜେ ଯାଇ ନାୟିକାକୁ ତାଙ୍କ ବାପ ଘରୁ ଆଣିବାକୁ କାକୁତି ମିନତି ହେଇ ଆଣ୍ଠେଇପଡ଼ି ତାର ହସ୍ତ ମୁଦ୍ରିକା ଚୁମ୍ବନ କରି ନିଜର ପରାଜୟ ସ୍ୱୀକାର କରୁ କରୁ ହଉ ନ ହଉଣୁ ମମାନ୍ଦ୍ର ଉଠିଗଲେ ଷ୍ଟେଜ୍ ଉପରକୁ । ଆଉ ଠୋ ଠୋ କରି ହିରୋର ଗାଲରେ ଦି'ଟା କୁହୁ-ଚୁପୁଡ଼ା ବସେଇ ଦେଲେ । କହିଲେ—

: ମାଇଚଣ୍ଡା ଦ୍ୟାପ । ଆଗରୁ ବୁଝି ବସ୍ତୁର କାର୍ଯ୍ୟ କଲେ ପ୍ରମାଦ ନ ପଡ଼ଇ ଭଲେ । ଯଦି ଗୁଡ଼ାଲୁ, ପୁରୁଷ ପକ୍ଷିଆଙ୍କୁ ସଜାଗ ରଖ । ଏମିତି ଓଲଟିବାକ ମାରୁଚୁ କାହିଁକ ?

ଯା'ପର ଅବଶ୍ୟ ନାଟକ ଢଙ୍ଗେଁ ବନ୍ଦ ରହିଲ ଏବଂ ମମ୍ମାନ୍ଦ୍ରଙ୍କୁ ଜବରଦସ୍ତ ହାସପାତାଳ ନେଇ ସିଡେଟିଭ ଦେଇ ଶୁଆଇବାକୁ ପଡ଼ିଲ । ଯା'ପର ମଜାର କଥା ଯେ ମମ୍ମାନ୍ଦ୍ର ଢନେ ରେଳଷ୍ଟେସନ୍ ପ୍ଲାଟଫର୍ମର ଏକ ପ୍ରକାଣ୍ଡ ଖୁଣ୍ଟି ତଳେ ସିମେଣ୍ଟ ଚଉତରା ଉପରେ ଗୁମ୍ମମାର ବସି ଆଖି ପାଇବା ଯାଏଁ ଇସ୍ପାତ ରେଳ ପଥର ପଲମ୍ବ ପ୍ରସାରକୁ ଲକ୍ଷ୍ୟ କରୁଥିଲେ । ତାଙ୍କୁ ଲାଗୁଥିଲ ଯେ ଏଇ ଦାପୋରଆ ଚକ୍ ଚକ୍ ଇସ୍ପାତର ଧାର ଯେମିତି ସହରର ସବୁ ଅବ୍ୟବସ୍ଥିତ ଚଳଣିର ହଗେଧାଭସକୁ ସରଳ ରୈଖିକ ଢଙ୍ଗରେ କ ବୁ କରୁଚ, ନିୟନ୍ତ୍ରିତ କ କରୁଚ । ଭାର ବଡ଼ିଆ ହୁଅନ୍ତା ଯଦି ସହରର ସବୁ ଲୋକ ଛକ ମାରିଲ ଭଳି ଏ ପଥ ଉପରେ ଧାଡ଼ି ଧାଡ଼ି ହୋଇ ଶହେ ଦେଡ଼ଶହ କଲୋମିଟର ପର୍ଯ୍ୟନ୍ତ ଶୋଇଯାଆନ୍ତେ ଆଉ ତାଙ୍କ ଉପର ଦେଇ ସୁପର ସୋନକ୍ ସ୍ପିଡ଼ର ରେଳଗାଡ଼ିମାନେ ଅନ୍ତରୀକ୍ଷରୁ ଓହ୍ଲେଇ ମାଡ଼ି ଯାଆନ୍ତେ ଭୁଷ୍ ଭୁଷ୍ ତାଙ୍କର ଉପରେ । ହେଲେ ଦେଖିଲବେଳକୁ ହୁଅନ୍ତା କଣ ନା ସବୁ ଇସ୍ପାତ ରେଳଗାଡ଼ିର ଇଞ୍ଜିନ ଉବା ଉକ୍ତାଲ୍ଟ ହୋଇ ଚିତ୍ପଟାଙ୍ଗ୍ ମାରି ପଡ଼ିଥାଆନ୍ତେ ପ୍ଲାଟଫର୍ମର ଏକଡ଼େ ସେକଡ଼େ । ସେଗୁଡ଼ାଙ୍କର ଅନ୍ତବୁଜୁଳା ମାଉଁସ ମେଦ ପିଚ୍ ପିଚ୍ ଛୁଟିକି ପ୍ରଳୟ ସୃଷ୍ଟି କରିଥାଆନ୍ତା । କିନ୍ତୁ ଭୁବନେଶ୍ୱର ସହରବାସୀ ଝାଡ଼ଝୁଡ଼ ହୋଇ ସହି ସଲାମତ୍ ଉଠି ଆସନ୍ତେ ରେଳ ପଥ ଉପରୁ । କାରଣ ଏମାନଙ୍କର କଲିଜା ଇସ୍ପାତଠୁଁ କେତେ ନା କେତେ ଗୁଣ ମଜ୍‌ଭୁତ । କିଏ ବା ନଜାଣେ ଯେ ଅସଲ କଲିଜା ବାଲା ନ ହେଲେ ସହରର ହୁ ହୁ ଦରଦାମ୍ ପ୍ରବଞ୍ଚନା ଉତ୍ପୀଡ଼ନ ଘୁଷଖୋରି କଳାବଜାରି ଛୁରି ବନ୍ଧୁକର ଗୋଲକ ଧନ୍ଦା ଭିତରେ ଏତେ ଗୁଡ଼ାଏ ମଣିଷର ପ୍ରାଣ ପକ୍ଷୀର ପାରୁଥାନ୍ତା ସମତୁଲ ବଂଶୀର ଆତ୍ମ-ପ୍ରସାଦର ନିର୍ଲଜ ପଦ୍ୟକରେ ! ଯେମିତି କିଛି ଅସୁସ୍ଥା ନାହିଁ କ୍ଳେଶ ନାହିଁ । ପ୍ରମାଦ ନାହିଁ । ଇଏ ପୁଣି କିଏ ? ଏତେ ଚମତ୍କାର ହବା ସ୍ୱପ୍ନଟା ମାଟି କରିଦେଲ । ଆଗରେ ଠିଆ ହୋଇଚ । ଉଜ୍ଜ୍ୱଳ ଆଖି । ସାଲୁଆର ପଞ୍ଜାବୀ

ପିନ୍ଧିଛି ! କାନରେ ଦୁଇଟା ଚକଚକିଆ ପଥରର ରିଙ୍ଗ । ଗହଳ ବିପର୍ଯ୍ୟସ୍ତ ଚିକୁର । ଦୁହାତ ଅଣ୍ଟାରେ ଦେଇ ସ୍ୟାଙ୍କ ମୁହଁକୁ ଚାହିଁ କରି କରି ହସୁଛି ସେ ହସୁଛି ନପ୍ସାନ୍ତ । ପୁଣି କହୁଛି—

: ଦୁନିଆଁ ସାରା ଖୋଜୁଛି ମୁଁ ତୁମକୁ । ସାହେବ ଏଇଠି ଲୁଚି ବସି ବିଶ୍ୱକୁ ଆଖି ମାରୁଛନ୍ତି !

ମହୀନ୍ଦ୍ରଙ୍କ ସ୍ୱପ୍ନ ଭଙ୍ଗ ହୋଇଛି । ଚଡ଼ା ଗଳାରେ କହିଲେ—

: ରେ ରୂପସୀ କନ୍ୟା ! ତୁ କିଏ ମୋତେ ଜଣାନାହିଁ । ତାମସା ବନ୍ଦ କରି ପଳେଇଯା ଏଠୁଁ କହୁଛି । ଡୋଣ୍ଟ୍ ଇଣ୍ଟରପ୍ଟ୍ ଅନ୍ ମାଇଁ ଡ୍ରିମ୍ସ୍ । ମୋ ସ୍ୱପ୍ନର ସରହଦ୍ଦରେ ତୁ ଧସପଳ ପଶିବାକୁ କିଏ ? ଝିଅଟି ଆସି ତାଙ୍କ ପାଖରେ ଲାଗି ବସି ପଡ଼ିଲା । କହିଲା—

: ଗୋଟେ ନବଜ ଲାଗିଛି ନାହିଁ ? ତମକୁ ଖାଲି ସ୍ୱପ୍ନ ଦେଖି ଆସେ, ମତେ ଆସେନି ? ଫୁଲ ଆଉ ତାର ବାସ୍ନା ପରି ଆମେ ଦୁ'ଜଣ ପରା ଗୋଟାଏ ସ୍ମୃତି । ଗୋଟାଏ ସମ୍ଭାବନା । ଭାବୁଛ ମୁଁ ତମକୁ ଛାଡ଼ି କୁଆଡେ ଯାଉଛି ଆଉ ! ଯାବ ପଡ଼ିଲା । ତମେ ଯୋଉଠି ମୁଁ ସେଇଠି । ଚିହ୍ନି ପାରୁନ କି ମତେ ? ମୁଁ ପରା ମାଳମୀ । ମାଳମୀ ରସ୍ତୋଗୀ । ଏକାଠି ପାଠପଢ଼ା, କେତେ ଭାବ ଦିଆନିଆ । ଲାଇବ୍ରେରୀରେ ଡିବେଟ୍‌ରେ କେତେ ବ ଜମରା, ଗୋଳମାଳ ସବୁ ଭୁଲିଗଲ ?

ଏଇ ଆଉ ପାଗଳା ମହୀନ୍ଦ୍ର ମଣିଷଟିର ଆଉ ଯାହା ଥାଉନା କାହିଁକି ପ୍ରଚଣ୍ଡ ସେନ୍ସ ଅଫ୍ ହ୍ୟୁମର୍ । ଜୀବନ ବିମୁଖ ବିକଳ୍ପ ହସକୁରା କଟାକ୍ଷ ଥିଲା ଭରପୂର୍ । ସିଏ ସାଉଁଟି ନେଲେ । ଏଇ ଅର୍ବାଚୀନ ଅର୍ଦ୍ଧ ପାଗଳୀ ଶୋଭନା ତରୁଣୀଟି ସାଙ୍ଗରେ ବସା ବାନ୍ଧିଲେ କ୍ଷଣ କଣ । ଏଇମିତି ଆମୋଦକର ତଡ଼ିତ ଚଞ୍ଚଳ ମୁହୂର୍ତ୍ତ ଗୁଡ଼ିଏ ତ ଜୁଆର ନଈରେ ମାଳ ମାଳ ପାଣି ଫୋଟକା ପରି ଗୁହ୍ନି ହୋଇଯିବ ଜୀବନ ସାରା । ସମସ୍ତ ବହିଯିବ । ବାଷ୍ପ ହବ । ଚଳଣୀରେ କେତେ ଉଦ୍ଭଟ ଅନିର୍ଦ୍ଦିଷ୍ଟ କଥା ସବୁ ସ୍ୱପ୍ନ ଭଳି ଚହିଁକି ଯିବ । ଦପ୍ତରରେ ସାଇରେ, ଜ୍ଞାତି କୁଟୁମ୍ବରେ ସମସ୍ତେ ଆଶ୍ଚର୍ଯ୍ୟ

ହୋଇଗଲେ ଯେତେବେଳେ ଉତ୍ତା ପନ୍ତ ମହାନ୍ଦ୍ର ହଠାତ୍ ଘରବାନ୍ଧ ସଂସାର କଲେ । ଯ୍ବାଦର୍ ବର୍ଷକ ଭିତରର କଥା । ଦିନେ ଦେଖିଲାବେଳକୁ ପତ୍ନୀ ମାଳମ୍ମା ଘରର ସବୁ ଆସବାବ ବନ୍ଧୁପତ୍ର କପ୍ ପ୍ଲେଟ୍ ଖଟ ମଶାରୀ ଭଙ୍ଗାରୁଜା ଚଗଚଗ କରି ମଣିଷ ଉଚ୍ଚରେ ଅଗଣାରେ ଗଦେଇ ଦେଇଚନ୍ତି ଆଉ ଯେମିତି ମହାନ୍ଦ୍ର ଦପ୍ତରରୁ ଘରକୁ ଫେରିଚନ୍ତି ତାଙ୍କୁ କହିଲେ—

: ହେ ଚଣ୍ଡି ଦେବତା, ଇହକାଳ ପରକାଳର ପରିତ୍ରାତା, ଆମ୍ଭେ ଦୁହେଁ ଆଜିଠାରୁ ସନ୍ନ୍ୟାସ ବ୍ରତ ଗ୍ରହଣ କରିବା । ଏ ସଂସାର ଏକ ମାୟାବର୍ତ୍ତି । ଦୃଶ୍ୟମାନ ଜଗତର ପଶ୍ଚାଦ୍ଭଟରେ ଯେଉଁ ତରଳ ବହ୍ନିର ଲେଲିହାନ ସତ୍ୟ ମୁଁ ଦେଖି ପାରିଚି ତମେ ବି ତାକୁ ଦେଖ । 'ଟ୍ରିକ୍'ଟା ଭାରି ସରଳ ।

ମହାନ୍ଦ୍ର ପଚାରିଲେ କଅଣ ?

ପତ୍ନୀ କହିଲେ—

: ହଆସିଲ ମାର । ନିଆଁ ଲଗେଇ ଦିଅ । ଏଇଟା ପୁରୁଷର କାମ । ତମେ ସୃଷ୍ଟିର ପୁରୁଷ । ସଂହାରର ପୁରୁଷ । ମୁଁ ପାଳୟିତ୍ରୀ । କିନ୍ତୁ ଠିକଣା ଜାଗାକୁ ତମକୁ ପହଞ୍ଚାଇବା ମୋର କାମ ।

ଯାଇ ଲୋକ ସେଦିନ ଦେଖିଲେ ଯେ ଗଦ୍ ଗଦ୍ ଆନନ୍ଦାଶ୍ରୁ ବିଗଳିତ ମହାନ୍ଦ୍ର ସେଇ ଆସବାବ ପତ୍ର ଗଦାରେ ନିଆଁ ଲଗେଇ ଦେଇ ଏକ ପ୍ରକାର ପ୍ରାଥମିକ ତାଣ୍ଡବ ନୃତ୍ୟରେ ପ୍ରମତ୍ତ ହେଲେ । ସେଇଠୁଁ ମାଳମ୍ମା ଦେହରେ ଲଗାତାର୍ ଶହେ ଗୁରି, ଶହେ ପାଞ୍ଚ ଡିଗ୍ରୀ ଜର ରହିଲା । ଠିକେ ବି ଓହ୍ଲେଇଲାନି । ଏବଂ ପନ୍ଦର ଦିନ ଭିତରେ ସେ ପରମାତ୍ମାଙ୍କ ସାନ୍ନିଧ ଲାଭ କଲେ ବୋଲି ଅନ୍ତତଃ ମହାନ୍ଦ୍ରଙ୍କ ବିଶ୍ୱାସ । କେବେ କଥା ପ୍ରସଙ୍ଗରେ ମାଳମ୍ମାର ନାଁ ଉଠିଲେ ମହାନ୍ଦ୍ର 'ବିଚକ୍ଷଣାରେ' ବୋଲି ସୁର ଧରି ପଦ୍ୟାବୃତ୍ତି କରନ୍ତି । ଇଏ ଗୋଟାଏ ଅଧ୍ୟାୟ ସରିଲା ।

ଅଟୋ ରିକ୍ସା ଗ୍ଳକ ରହମାନ୍ କେଜାଣି ମହାନ୍ଦ୍ର ଦପ୍ତରରେ ଯୋଗ ଦେବା ଦିନଠୁଁ ତାଙ୍କର ଭାରି ଆପଣାର ହେଇ ଯାଇଚି । ଭାରି ଦୋସ୍ତି ମନ ମିଳାମିଶା । ଏଇ ଉଚ୍ଛୃଙ୍ଖଳ ଅନବଦ୍ୟମିତ ଉଚ୍ଛ୍ୱାହର ମଣିଷଟି

ତାକୁ ଘର ଭଲ ଲାଗିବ । ସଞ୍ଜ ହେଲେ ସିଏ ତାଙ୍କ ପାଖ ଛାଡ଼େ ନାହିଁ । କେତେବେଳେ କୁଆଡ଼େ ପଳେଇବ କଣ କରିବ । ବାଗୁଳ ଲୋକଟା ! ତାକୁ ଗୋଡ଼େ ଗୋଡ଼େ ଜଗିଥାଏ । ଅବକା ତା' ମୁଣ୍ଡରେ ଗୋଟେ ସମାଧାନ ସୂତ୍ର ଚେଇଁଚ । ନନ୍ଦମା ହେବଟା ଘର ଭଲ ମଣିଷ । ମାଳମା ପରି ତ ବାୟାଣୀ ନୁହଁ । ଯଦି ତାର ହେପାଜତରେ ଏଇ ଅଧା ପାଗଳା ମଣିଷଟା କାବୁ ହୋଇ ପାରନ୍ତା ତାହେଲେ ସଂସାରର ଚେର ଧରି ଯାଆନ୍ତା ।

ସେଦିନ ନନ୍ଦମା ହେବଙ୍କ ବସାକୁ ଗଲାବେଳକୁ ସେ ଏଡ଼େ ବଡ଼ ମୁହଁ ଲମ୍ବ ଆଖି ଛଳ ଛଳ କରି ରହିମାନ୍‌କୁ କହିଲେ—

: ତୋ କଥାରେ ପଡ଼ି ମୁଁ ଭାରି ପରିଭବ ପାଇଲି । ମମୀବାବୁ ତ ମୁହଁକୁ ଗୁହଁ ନାହାନ୍ତି । ମୁଁ କ'ଣ ତାଙ୍କୁ ଅଣ୍ଟେରେ ପୁରେଇ ନିଜ ସମ୍ପତ୍ତି କରି ନେବି ବୋଲି ସେ ଭାବୁଚନ୍ତି କି ? କେଡ଼େ ସୁନ୍ଦର ମଣିଷ, କେଡ଼େ ଉଦାର ମନ । ମୋ ପରି ନିଆଶ୍ରାଟାକୁ କେତେ ସାହାଯ୍ୟ କଲେ । ହେଲେ କେଡ଼େ ଅସୁବିଧାରେ ରହୁଚନ୍ତି ସିଏ । ଦେହ ପା ରୋଗ ବଇରାଗ ଖାଇବା ପିଇବା କଥା ବୁଝିବାକୁ କେହି ହେଲେ ଗୋଟେ ନାହାନ୍ତି । ଅଫିସ୍‌ରେ ଯୋକ ପରି କାମ କରିବେ, ଆଉ ବାସୁବ ପରି ଅଖିଆ ଅପିଆ ରାତି ସାରା ବୁଲୁଥିବେ । ମୁଁ ତ ସହି ପାରୁନି । ମୋର ତ ପିଲା ବକଟେ । କ'ଣ ବା ଆଉ କାମ ଅଛି । ଭଉଣୀଟିଏ କି ପିଉସୀଟିଏ ପରି ଟିକିଏ ହେପାଜତ ତାଙ୍କର କରି ପାରିଲେ କେଡ଼େ ଆନନ୍ଦ ମତେ ମିଳନ୍ତା । ମୁଁ ତ ତାଙ୍କଠୁ ଆଉ କିଛି ଗୁହଁନି । ତାଙ୍କ ଘର କରଣା ମୁଁ ବୁଝନ୍ତି ଆଉ ସିଏ ତାଙ୍କ ସ୍ୱପ୍ନରେ ମଜ୍ଜି ରହନ୍ତୁ । ମୁଁ ଜନ୍ମାରୁ କୋଉଠି ଟିକିଏ ହେଲେ ତାଙ୍କ ସଞ୍ଚାର ପଥରେ ଠିଆ ହେବିନି କି ଅଟିକେଇବିନି । ହେଲେ କିଏ ତାଙ୍କୁ ସମଝେଇବ । କିଏ ତାଙ୍କ ଆଗରେ ଭରସିବ ।

ମୁରବିଆନା ଠାଣୀରେ ଟିକିଏ ମୁରୁକି ହସି ରହିମାନ୍ କଥା ଦେଲା—

: ପର୍ୱାହ କରନା ଦିଦି । ମୁଇଁ ପାରିବ । ମୁଇଁ ସମାଳିବ ।

ରହିମାନ୍ ଯୋଉକଥା କହିବ ତାକୁ ଆଡ଼େଇ ଦବାକୁ କାହିଁକି କେଜାଣି ମମୀନ୍ଦ୍ରଙ୍କର ହିମତ ହୁଏନି । ଯା' ହଉ, ତାର କଥାରେ ସିଏ ଆଉ

ବାଧା ଦେଲେନି । ନନ୍ଦମା ବନ୍ଦ କରିଲା ଆସି ତାଙ୍କ ଘର କାମ ସେଷେଇ ବାସ କଥା ବୁଝି ଦେଇଯାଏ । ଘରଟା ଆଜକାଲି ପରିଷ୍କାର ସୁନ୍ଦର ଦର ଭଲ ଲାଗୁଚି । ଅଲକ୍ଷ୍ୟରେ ମମାନ୍ଦ୍ରଙ୍କୁ ସବୁ ଦିଶୁଚି ନିର୍ମଳ ଆଉ ସତେଜ । କଟୁଚିଦନ ଗୁଡ଼ଲୁ ଏମିତି ।

ସେଦିନ ଥିଲି ଚନ୍ଦ୍ର ନିକଟ ମହୁଲ ବାହାର ଉଚ୍ଛଳିତ ରାତି । ମମାନ୍ଦ୍ର ସେଦିନ ଅଫିସ ନଯାଇ ଏଣ୍ଡୁ ଡେଣ୍ଡୁ ଗଡାଏ ବହି ଘାଣ୍ଟି ବଡ଼ ପାଟିରେ ନିଜକୁ ନିଜେ ବକ୍ତୃତା ଦେଇ ଜ୍ଞାନର ଚର୍ଚ୍ଚମା କରୁଥିଲେ । ସେଦିନ ସଞ୍ଜରେ କାହିଁକି ତାଙ୍କର ବାହାରର ଖୋଲା ହାଓ୍ୱା ଖାଇବାକୁ ଇଚ୍ଛା ହେଲାନି । ଚକିଟାକୁ ଜ୍ୟାପ୍ରି ଦେବା ଅଗଣାକୁ ନେଇ ଆସି ସେଇଠି ଗଡ଼ି ପଡ଼ିଲେ । ଆଉ ଆକାଶରେ କେଇଖଣ୍ଡ ଛିଣ୍ଡା ବଉଦ ଭିତରେ ଜହ୍ନର ଲୁଚକାଳି ଖେଳକୁ ନିବିଷ୍ଟ ଆବେଗରେ ଗୁହିଁ ରହିଲେ । ରାତି ଆଠଟା ବେଳକୁ ସେଷେଇ ବାସ ସାରି ରାତିର ଖାଦ୍ୟ ଡାଇନିଂ ଟେବୁଲ ଉପରେ ରଖିଦେଇ ସବୁ ଦିନ ପରି ଅନୁଚ୍ଚ ସଙ୍କେତରେ ନନ୍ଦମା କହି ଦେଇ ବାହାରି ଯାଉଥିଲି ।

: ଯାଉଚି । ଦାଣ୍ଡ କବାଟ ଆଉ ଗେଟ୍‌ରେ ତାଲା ପକେଇ ଦେବେ ।

ମମାନ୍ଦ୍ର ଚକି ଉପରୁ ଓଲଟି ତାର ଆଡ଼କୁ ଗୁହିଁଲେ । ଯେମିତି ସେ କେବେ ଆଗରୁ ଏ ରୂପ ଦେଖି ନ ଥିଲେ । ପଗ୍ଚରିଲେ—

: ତମେ କିଏ ? ନନ୍ଦମା ଛେପ ଡୋକିଲା । ଅଜବ ପ୍ରଶ୍ନ ! ଧୀର ଗଳାରେ କହିଲା ।

: ନନ୍ଦିମା ।

କମ୍ପିତ ବିବଶତାରେ ମମାନ୍ଦ୍ରଙ୍କର ଭ୍ରୂ ଥରୁଚି । ଓଠ ଥରୁଚି ।

: ଇରେ ଆମର ନନ୍ଦମା ତ । ଏଇଠିକି ଟିକିଏ ଆସ ବସ ।

ନନ୍ଦମାର ହାତ ପାଦ କାଠ ହେଇ ଯାଇଚି । କେମିତି ଚକି ପାଏଁ ସେ ପହଞ୍ଚିଚି ତାର ଅଣଅକ୍ତିଆରରେ ସେ ଜାଣିନି । ଖାଲି ମନେ ଅଛି

ମମାନ୍ଦ୍ଙ୍କ ଏକ ଉଷ୍ଣମ୍ ଅଥଚ କର୍କଶ ହାତର ସ୍ପର୍ଶ ତାର କଅଁଳ ଗାପୁଲି ଉପରେ ।

ରାତି ପ୍ରାୟ ବାରଟା ହବ । କବାଟରେ କିଏ ଦୁମ୍ ଦୁମ୍ ବାଡ଼ଉଚି । ରହମାନ୍ ଉଠି ପଡ଼ିଲା । କବାଟ ଖୋଲି ଦେଖେ ଯେ ଚନ୍ଦ୍ର ଆଲୁଅରେ ନିଶ୍ଚଳ ଦେବଦାରୁ ପରି ଉଭା ହୋଇଚନ୍ତି ମମାନ୍ଦ୍ର ।

: କିଏ କି ବାବୁ ।

କେମିତି ଗୋଟାଏ ବେସୁରଆ ସ୍ୱରରେ ମମାବାବୁ ହୁକୁମ୍ କରୁଚନ୍ତି—

: ଚାଲ ଚାଲ୍ ଶୀଘ୍ର । ଗାଡ଼ି ଷ୍ଟାର୍ଟ କର୍ ।

ମୁଁ ନଈପଠାକୁ ଯିବି । ମୋ ଚାରିଆଡ଼ୁ ଅନ୍ଧାର ମାଡ଼ି ପଡ଼ୁଚି । ଅଣନିଶ୍ୱାସୀ ଲାଗୁଚି ।

ରହମାନ୍‌ର ଅଟୋ ରିକ୍ସା ଚାଲିଚି । ପଛ ସିଟ୍‌ରେ ନିର୍ବୋଧଙ୍କ ପରି ହିଁ ହିଁ ହୋଇ ହସୁଛନ୍ତି ମମାନ୍ଦ୍ର । ଛାତିରେ ଜୋର୍ ଧରିଚନ୍ତି ନନ୍ଦମାର ଲିହକା ତନୁ ଯଷ୍ଟି । ପ୍ରାଣ ପକ୍ଷୀ ଉଡ଼ି ଯାଇଚି ତାର । ପରିଚିତ ପିଜୁ ବୁଦା ପାଖରେ ନନ୍ଦମାକୁ ଚିତ୍ କରି ଶୁଆଇ ଦେଲାବେଳେ କ୍ଷୀଣ ଚନ୍ଦ୍ରକାରେ ବାରି ହୋଇ ପଡ଼ୁଥିଲା ତା' ବେକ ଉପରେ କର୍କଶ ହାତର ଟିପ୍ପଣିଆ କଳା ଦାଗ କେଇଟା ।

ରହମାନ୍ ବାକ୍ ରୁଦ୍ଧ ।

: ଇଏ କ'ଣ କଲ ବାବୁ ।

ମଣିଷ ସ୍ୱର ତ ନୁହେଁ । ଗୋଟାଏ ପୃଥକ୍ ଜଗତର ହିଂସ୍ର ଶ୍ୱାପଦର ସ୍ୱର ଫୁଟୁଥିଲା ମମାନ୍ଦ୍ରଙ୍କ ମୁହଁରୁ ।

: ଚୁପ୍ କର୍ ଶଇତାନ୍ । ତୁ ପାଜି କେତେ ମୂର୍ଖ କ'ଣ ବୁଝିବୁ । ହଜେଇବାଟା, ହରେଇବାଟା, ପାଇବାଠୁ, ଚାହିଁବାଠୁ, ସ୍ୱପ୍ନଠୁ କେତେ ଭଲ । କେତେ ଗୁଣରେ ଚମତ୍କାର ! ଥିବା ଜିନିଷ ଝଇବା ଜିନିଷ ମତେ ମୃତ୍ୟୁ ଆଣିଦବ କୋଉଠୁ ?

# ବଖୁରିଏ ସ୍ୱପ୍ନ

ପାଗଭାଙ୍ଗ ପରି ଥାକ ମରା ହୋଇ ଅସୁମାରି ସାନ ସାନ ବଖରା ବିଶିଷ୍ଟ ଘର ମହଲା କୋଠାଟିରେ । ଉଆସ ପରି ଆୟତନ ହୋଇଛି, ହେଲେ କୋଉକାଳୁ କାନ୍ଥରେ ସୁର୍କିକି ଚୂନ ଟିକିଏ ଲାଗିନି । ଅଧା ଭଙ୍ଗାରୁଜା ହୋଇ ଲଟକି ଥିବା କବାଟ ଝରକାରେ କୋଉକାଳୁ ରଙ୍ଗ ଟିକିଏ ମରା ହୋଇନି । ସାନସାନ ବଖୁରିଟିମାନଙ୍କ ଭିତରେ ପାଇଖାନା ଗାଧୁଆ ଘର ଅଛି । ଆଉ ନୁଖୁରା କାଠ ପଟା ଖଟ ଖଣ୍ଡେ ଖଣ୍ଡେ ପଡ଼ିଚି । ଅର୍ଥାତ୍ ସବୁ କେଠରି ପ୍ରାୟ ସ୍ୱୟଂ ସମ୍ପୂର୍ଣ୍ଣ । ଗଲା ପଚିଶି ବର୍ଷ ହେଲା ଏଇ କୋଠା ଭିତରେ ପ୍ରାୟ ସତୁରି ପଞ୍ଚସ୍ତରି ଜଣ ଅଳ୍ପ ବେତନ ଭୋଗୀ ଭଡ଼ାଟିଆ ଇ ରହନ୍ତି । ବାବୁ ପୂର୍ଣ୍ଣଚନ୍ଦ୍ର ଗାଁରୁ ଝଗଡ଼ା କରି ପଳେଇ ଆସିବା ଦିନଠୁଁ ସବା ଘରତାଲା ଉପରେ ଗୋଟେ କଣିକିଆ ବଖରାରେ ଗଲା ଦି ବର୍ଷ ହେଲା ରହିଚନ୍ତି । ମାସକୁ ଭଡ଼ା ଶହେ ପଚିଶି ଟଙ୍କା । ଏଇମିତି ବେଦମ୍ ଅଣନିଶ୍ୱାସୀ ମହର୍ଘ କାଳରେ ସାତଶହ ଟଙ୍କା ମାସୁଆରି ବେତନ । ଘର ଟାଣିଟୁଣି ଚଳିବାକୁ ହୁଏ । ସେଥିରେ ପୁଣି ମାସକୁ ମାସ ମାଆ ପାଖକୁ ପଠାନ୍ତି ଦୁଇଶ' ଟଙ୍କା । ହେଲେ କ'ଣ ଗୋଟେ ବ୍ୟାଧି ଧରିଚି ମାସେ ହେଲା, ଶୋଇ ବସିଥିଲେ ଅଣ୍ଟା ସଳଖି ଠିଆ ହୋଇ ପାରୁନାହାନ୍ତି । ବାଁ ଆଖିରୁ ଫେଜୁଆ ପାଣି ନିଗୁଡ଼ିଚି । ତା' ସାଙ୍ଗକୁ ଅଧକପାଳି ଧରିଚି । ମାଲିକଠୁଁ ଛୁଟିନେଇ ସିଏ ଏଇ ଖଟିଆ ଉପରେ ଗଡ଼ୁଚନ୍ତି । ମେସ୍‌ରୁ ବୋଲହାକ କରା ପିଲାଟି ଆସି ଦିଓଳା ଭାତ ରୁଟି ଆଳୁଚକଟା ପିଆଜ ଦି' କୋଳ ଦେଇ ଯାଉଚି । ହୋମିଓପାଥି କାମଦେଲା ଭଳି ଲାଗୁନି । ବତିଶି ବର୍ଷର ଭେଣ୍ଡିଆ ଢୁଷୁରୁଚି ।

ହେଲେ ଏମିତି ଅବର୍ଜିଆ ବିକଳ୍ପ ଘାଏଲା ଅବସ୍ଥା ଭିତରେ ବି ଗୋଟାଏ ସ୍ୱୈରିବସ୍ୱ ଆନନ୍ଦ ଉଚ୍ଛୁଳୁଥିଲା ପରି ଲାଗୁଚି । ବାଜେ କଥା ନୁହେଁ । ଅସଲ ଅସ୍ଥିମଜ୍ଜା ଶୋଣିତ ପ୍ରବାହ ଭିତର ମେକ ନିଃଶ୍ୱାସରେ

ମହକ ହୃଦୟ ସ୍ପନ୍ଦନର କଥା । ହେଇ ଦେଖୁନା ଗୁରୁ ମହଲ ଉପରୁ ଦକ୍ଷିଣ ମୁହାଁ ଝରକାର ଫାଳେ ଲଟକି ପଡ଼ିଥିବା ଫଟା କବାଟ ଫାଙ୍କ ଦେଇ ଶିରୀଏ ନୁଖୁରା କଣ୍ଟା ଡାଳ୍ବ ମୁନରେ ଏତେ ବଡ଼ ହଳଦିଆ ଗୋଲାପଟିଏ ଫୁଟିଛି ତ, ପୁଣି ମଥାକୁ ଝୁଲେଇ ଝୁଲେଇ ଏକା ଲୟରେ ତାଙ୍କର ମୁହଁକୁ ଉଣ୍ଟୁଚି । ଦେଖ୍ ଦେଖ୍ ପୁଣି ସେଇମିତି ହଳଦିଆ ରଙ୍ଗର ପ୍ରଜାପତିଟିଏ ଆସି ତାର ଓଠରେ ମୁହଁ ଲଦି ବସିଗଲାଣି । ଆଜି ନଜ ଜେଣା ଦି’ଟା ହଲେଇ ଆପେ ବଞ୍ଚ ହଉଚି । କଥା କଣକି ଏ ଗୁରୁ ମହଲ ଉପରୁ ଢୁଣଖିଆ ପାରାପେଟ ଶିଉଳି କାନ୍ଥ ଖଣ୍ଡିଆ ଖାବରା ଚୂନଖସା ଇଟା ଯୋଡ଼େଇ ଭିତରୁ ଅନାବନା ଘାସ ଲଟା ଗଜୁଁଇଚି ସିନା, ଗୋଲାପ ଡାଳ୍ବ ଏଇ ଉଷର ସାମ୍ରାଜ୍ୟକୁ ଆସନ୍ତା କୋଉଠୁ । ଉପର ମହଲ ତଦାରଖ କରୁଥିବା ମାଖନ ବୁଢ଼ା ଗୁରୁ ଛଅଟି ଫୁଲକୁଣ୍ଡ ଥାପିଚି ତାର ଝରକା ପାଖରେ, ଯୋଉଠି ଭଲକରି ସୂର୍ଯ୍ୟକରଣ ପଡ଼େ । ଏଇ କମରା ପଟଟା ପ୍ରାପ୍ୟ ନରୋଳା । ଯୋଉ ଦିନ ଗୋଟେ ଦି’ଟା ଫୁଲ ଫୁଟିବ ବୁଢ଼ା ଆସି ତାକୁ ତୋଳି ନେଇଯିବ ତା’ କମରାର ରାଧାକୃଷ୍ଣ ଫଟ ଉପରେ ସମର୍ପିବା ପାଇଁ । ପୂର୍ଣ୍ଣଚନ୍ଦ୍ର କଷ୍ଟେମଷ୍ଟେ ଖଟ ବାଡ଼ିକୁ ଧରି ସଳଖ ଠିଆହେଲା, ଆଉ ଓଟାରି ହେଇ ଝରକାକୁ ଲାଗି ଆସି ଫୁଲ ଦେଖିବ ବୋଲି, ପ୍ରଜାପତିକି ଘଉଡ଼େଇବ ହଟହଟା କରିବ ବୋଲି । ପାରାପେଟ୍ ଆରକୁ ଷାଠିଏ ଫୁଟ ଚଉଡ଼ାର ମ୍ୟୁନିସିପାଲ୍ଟି ରାସ୍ତା । ଦେବେଶ୍ ଘଣ୍ଟା ମାଳ ମାଳ ଲୋକଙ୍କ ଧାଡ଼ି ମଟର ସ୍କୁଟରସାଇକଲ୍ ପେଁ ପାଁ । ଭେଁ ଭାଁ ଅର୍ଦ୍ଧୋଳି । କିଏ କାହାକୁ ଗୃହ୍ଣୁ ନାହାନ୍ତି ଅପେକ୍ଷା କରୁ ନାହାନ୍ତି, କଥାଭାଷା ଭାବ ବିଆନିଆ ନାହିଁ । ଖାଲି ଏ ପାଖକୁ ଅଧେ ଲୋକ ଧାଇଁଚନ୍ତି ପୁଣି ବିପରୀତ ଦିଗରେ ଆହୁରି ଅଧେ ଲୋକଙ୍କ ସୁଅ । ଗଲା ତିନ ବର୍ଷ ହେଲା ସିଏ ଏଇ ସୁଅ ଭିତରେ ତଳି ପକା ଟେକ୍ସା ଚକ ପରି ନିର୍ବିରୋଧ ଗଡ଼ି ଗଡ଼ି ଚାଲିଚି । ଗୁଜୁରାଟୀ ଦପ୍ତରରେ ଯୋଉଠି କାଗଜ ମୁଣି ଠୁଙ୍ଗା ପଲିଥିନ୍ ପାର୍ଶଲ ଆଉ ପ୍ୟାକିଂ ବ୍ୟାଗ୍ ତିଆରି ହେଇ ବଣ୍ଡିଲ୍ ବନ୍ଧାହେଇ ଆଖପାଖ ତିନି ଚାରିଟା ଷ୍ଟେଟ ବଡ଼ ସହରକୁ ଟ୍ରେକର ଆଉ ଟଣାରିକ୍ସାରେ ବୁହା ଚାଲିଥାଏ ତାର ହିସାବ ରଖିବା ହଉଚି କାମ । ତାପରି ଆଉ ତିନି ଜଣ ଗୁମାସ୍ତା ବି ଏଇ କାମ କରନ୍ତି । ମାଲିକ

ଭଲ କରି ଝଟାଏ । ସକାଳ ଆଠରୁ ସନ୍ଧ୍ୟା ଛଅ ପର୍ଯ୍ୟନ୍ତ ଏଇ ବଣି କୁଟିଆ କାମ । ତାପର୍ ପୁଣି ଏଇ ଗୋଦାମରୁ ସେ ଗୋଦାମ, ଏ ଦପ୍ତରରୁ ସେ ଅଫିସକୁ ଦିନ ଭିତରେ ଦଶ ବାର ଥର ଦଉଡ଼ । ଦିନ କେମିତି ଗଡ଼ିଯାଏ । ହାଡ଼ରୁ ଧମନୀରୁ ଆତ୍ମାରୁ କେଜାଣି କେଉଁ ବେଗରେ ଜୀବନ ଶୋଷି ହୋଇଯାଏ ଜଣାପଡ଼େନି । ଭଲ ହୋଇଚି ଦିହଟା ଖରାପ ହୋଇ ଯାଇଚି । ଇଏ ଗୋଟେ ରକମ ଅପୂସ । ଓଲଟି ମାର୍କେ ଫୁର୍ତ୍ତି କରି ହଉଚି, ନିଜ ଅକ୍ତିଆରରେ ସମୟକୁ ଅବସ୍ଥାଓ୍ୱାକୁ କାବୁ କରି ଯେମିତି ଇଚ୍ଛା ସେମିତି ବରବାଦ କରି ହଉନି !

ମାଖନ ମାଉସୀ ବାହାରେ କବାଟ ଠକ୍ ଠକ୍ କରି ଡାକୁଚି କ କ’ଣ । ମୁହଁ ସଞ୍ଜରେ ହାଲୁକା ମଲ୍ଲୀଫୁଲିଆ ହାଓ୍ୱା ଦଳ୍‌କାଏ ପଛରେ ଖୁଇନିଦ ଲେପିଆଣୁଥିଲା ।

: ପୂରନ୍ ବାବୁ ଦୁଆର ଖୋଲ । ତମୁକୁ ଦ’ଟା ବାବୁ ବାବୁଆଣୀ ଖୋଜୁଛନ୍ତି ।

ସେ ଯେମିତି ଦୁଆର ଖୋଲି ଦେଇଚି ବୁଢ଼ି ଅକାରଣରେ ପାକେଇ ହସଟିଏ ହସିଦେଇ ତାର ଗୋଡ଼ଠୁଁ ମୁଣ୍ଡ ପର୍ଯ୍ୟନ୍ତ ଗୁହିଁଗଲା ଆଉ କହିଲା—

: ଏବେ ତ ବାବୁ ଟିକଏ ସଜ ଦିଶୁଚ । ହପ୍ତାଏ ଭିତରେ ଚେଙ୍ଗା ହୋଇଯିବୁ ନିଶ୍ଚେ ।

ପୂର୍ଣ୍ଣଚନ୍ଦ୍ର ଏବେ ଜାଣି ପକେଇଲେ କାହିଁକି ଯ୍ୱା ନାଁ । ମାଖନ୍ ବୋଲି କହୁଚନ୍ତି । ସତରେ ତମ ଲୁରୁ ଲୁରୁ ଗୋଲ୍ ମୁହଁ ଉପରେ ଲହୁଣି ପରି କରୁଣା ଆଉ ହସର ପ୍ରଲେପ ସବୁବେଳେ ଚକ୍ ଚକ୍ କରୁଚି । ବୁଢ଼ି ପଛେ ପଛେ ଅଧା ବୟସର ଧୋତି ଲମ୍ବ ସାର୍ଟ ପିନ୍ଧିଥିବା ଉଚା ପୁରୁଷ ଜଣେ ଆଉ ତାଙ୍କ ପଛେ ପଛେ ଅଳ୍ପ ମୋଟାଳିଆ ଗଢ଼ଣର ସାବନି ଯୁବତୀ ତା କୋଠରୀକୁ ପଶି ଆସିଲେ । ପୂର୍ଣ୍ଣଚନ୍ଦ୍ର ଜମାରୁ ଚିହ୍ନି ପାରୁନାହାନ୍ତି ଏମାନେ କିଏ ? ନିହାତି କ୍ଷାତିର ଲୋକ ନହେଲେ ତା’ ଭଳି ଅଜଣା ଲୋକଟା ପାଖରେ ବା ଆଉ କାହାର କି କାମ ଥାଇପାରେ ।

ମାଷ୍ଟର ବୁଢ଼ି ଫେରିଗଲା ବେଳେ ଅଧାବାଟରୁ କହି ଦେଇଗଲେ ଯେ ସିଏ ଆଜିଠୁଁ ପନ୍ଦର ଦିନ ଯାଏ ଗଡ଼ରେ ଗିଲ୍‌ସେ ଲେଖାଏଁ ଗରମ କ୍ଷୀର ପଠେଇବ ।

: ବଡ଼ଣ୍ଡା ନ ଲଗେ ସେଜ୍ ସେଜ୍ ପିଇଦବୁରେ ପୁଅ । ଦିହ ଭଲ ହେଇଗଲେ ସୁବିଧା କରି ପଇସା ଦେଇଦେବୁ । ଏଇନା ମୁଁ ତତେ କ'ଣ ପଇସା ମାଗୁଚି ?

ବାରଣ୍ଡାରୁ ମୁହଁ ଫେରାଇ ପୂର୍ଣ୍ଣଚନ୍ଦ୍ର ଆଗନ୍ତୁକ ଦି' ଜଣଙ୍କୁ ଦରୁଆନ୍ ପରି ଆକଟି ଗୁହାଁଲା । ସେ ଦି'ଜଣ କିନ୍ତୁ ତା ଖଟିଆରୁ ବାସିଲୁଗା ଆଡ଼େଇ ନିଃସଙ୍କୋଚରେ ଆସ୍ଥାନ ଜମେଇ ସାରିଥିଲେ ।

ପ୍ରୌଢ଼ ଭଦ୍ରବ୍ୟକ୍ତି ଭରପୁର୍ ଆତ୍ମପ୍ରତ୍ୟୟ ମିଶା ବେପରୁଆ ସ୍ୱରରେ ଘୋଷଣା କଲେ ଯେ ପୂର୍ଣ୍ଣବାବୁ ତାଙ୍କୁ ଚିହ୍ନି ପାରିବେନି । ତାଙ୍କ ଝିଆରିକୁ ତ ଆଦୌ ନୁହେଁ । କାରଣ ଯେତେବେଳେ ପୂର୍ଣ୍ଣବାବୁ ଏଡ଼କଟିଏ ବଗୁଲିଆ ଇସ୍କୁଲ୍ ପିଲା ଥିଲେ ସିଏ ତାଙ୍କୁ କେତେ କାଖ ଗେହ୍ଲା କରିଚନ୍ତି, ମୁଆଁ ମିଠେଇ ଦେଇଚନ୍ତି । ପୂର୍ଣ୍ଣବାବୁଙ୍କ ଅଜା ପଣିଆ ମାଝିଙ୍କ ସାନ ଶାଳୀ ଗୁରୁମାର ସାନ ଝିଅର ଆଉ ଏଇ ଭଦ୍ର ବ୍ୟକ୍ତିଙ୍କ ଭିତରେ ଭଉଣେଇ ଆଉ ଶଳାଙ୍କ ସମ୍ପର୍କ । ରାଜନଗର ହାଇସ୍କୁଲ୍ ଆଗରେ ଯୋଉ କରତ କଳକୁ ଲାଗି ସାଇକଲ୍ ଦୋକାନ ଥିଲା ଇଏ ତାରି ମାଲିକ ଥିଲେ । ତା' ପରେ ଜାନ୍ତବାଟି କରି ଗାଁ ଛାଡ଼ିଲେ ଓ ପୁଣି କେତେ କେତେ ବ୍ୟବସାୟ ମାନ ହାତକୁ ନେଲେ । ବହୁତ ଧନ ସମ୍ପତ୍ତି କଲେ ନାଁ କମେଇଲେ । ଚନ୍ଦ୍ରକଳା ପରି ବେଉସା ବଢ଼ିଗଲା ଛାଡ଼ିଲା । ଜୁଆରରେ ଏବେ ଭଟ୍ଟା ପଡ଼ି ଯାଇଚି । ହେଲେ ପୁଣି ଉଠେଇବେ ଯେ । ଅସଲ୍ ଚମତ୍କାର ଯୋଜନା ଅଛି । ଏଠି ତ ସବୁ ମନ୍ତ୍ରୀ, ବିଧାୟକ, ହାକିମ ହୁକୁମା ଚିହ୍ନା ପରିଚୟ । ସାଙ୍ଗରେ ଝିଆରି ଆସିଚି ବଡ଼ ପାଠୋଇ । ବି.ଏ. ପାଶ୍ କରିଚି । କହୁଚି ବାହା ହବନି । ଚାକିରି କରିବ । ଆଜିକାଲି ତ ମାଇପିଙ୍କ ଯୁଗ । ସେ କ'ଣ ଆଉ ଘର କଣରେ ଚୁଲିକୁ ଆବୋରି ବସିବ । ଉଚ୍ଚ ଆଶା ତାଙ୍କୁ ଏ ବାବୁ ଘରି ପସନ୍ଦ କରନ୍ତି । ଏଣୁ ସାଙ୍ଗରେ ତାକୁ ଆଣିଚନ୍ତି ଗୋଟେ ଭଲ ଚାକିରିରେ ଲଗେଇ ଦେବେ । ତାଙ୍କ ଚେଷ୍ଟା ତାଙ୍କର ଆଖିରେ ଏ ସାମାନ୍ୟ କଥା ବା କି ଅପୂର୍ବ ! କଥା

କ'ଣ କି ହଠାତ୍ ଗୋଟାଏ ମନ୍ତ୍ରୀ, ଅଫିସର ଘରେ ଯାଇ କାହିଁକି ରହିବେ ।
ଯେତେବେଳେ କି ଖୋଦ୍ ନିଜ ଗାଁର ପିଲା ଆଉ ନିଜ କୁଟୁମ୍ବର କୁଳଚନ୍ଦ୍ରମା ପୂର୍ଣ୍ଣଚନ୍ଦ୍ର ପୁଣି ନିଜ ବସାଘରେ ମହଜୁଦ ଅଛନ୍ତି । ସ୍ତ୍ରୀଅଟି କାହିଁ ଆର-ପାଖକୁ ମୁହଁ ବଙ୍କେଇ ହଠାତ୍ ଉଠି ଆସୁଥିବା ହସ ବେଗକୁ ନେଇ ଭଳି ଲାଗିଲା ।

ସମ୍ପୂର୍ଣ୍ଣ ଅବିଶ୍ୱାସରେ ଆଖି ତଗିଟି ଅକ୍ଷର ଗୁଡ଼ିକୁ ଗୋଟି ଗୋଟି କରି ଉଚ୍ଚାରଣ କରି ପୂର୍ଣ୍ଣବାବୁ ପଚାରିଲେ ।

: କଣ ଭାବୁଛନ୍ତି, ଆପଣଙ୍କ ସାଙ୍ଗରେ ଏଇ ସ୍ତ୍ରୀଲୋକ ପୁଣି ମତେ ମିଶେଇ ତିନି ଜଣ ସମସ୍ତେ ଏଇ ଗୋଟିକିଆ ରୁମ୍‌ରେ ରହିବେ ?

ସେ ଉତ୍ତର ଦେଲେ

: ମୁଁ ଆଉ ଭାବୁନି, ସ୍ଥିର କରି ସାରିଛି । ଏକା ଗାଁ କୁଟୁମ୍ବର ଲୋକ ଏକାଠି ରହିବାରେ ଲାଜ ସଙ୍କୋଚ କ'ଣ ? ଆଉ କିଛି ଅଧିକା ବ୍ୟବସ୍ଥା କରି ପାରୁନି ବୋଲି ମନ ଊଣା କରନି । ଦି' ଘଣ୍ଟାର ଦିନର କଥା । ତେଣିକି ତମେ ଚଳେଇଲେ ବି ମୁଁ ଆଉ ଅଟକି ରହି ପାରିବିନି । ମୋର ତେଣେ ଶାଳ ଯାକରେ କାମ ପଡ଼ିଛି ।

ପୂର୍ଣ୍ଣଚନ୍ଦ୍ର ହତବାକ୍ ହାହୁତାଶ୍ୱ ଠାଣିରେ ପାଖରେ ପଡ଼ିଥିବା ଷ୍ଟୁଲଟି ଉପରେ ଲଥ୍‌କରି ବସି ପଡ଼ିଲେ । ଆଗନ୍ତୁକ ଏବେ ନିଜର ନାଁ କହିଲେ—

: ମୁଁ କୃତ୍ତିବାସ ଦାସ ଆଉ ଇଏ ମୋ ଝିଆରୀ, ଝିଅ କ'ଣ ଝିଆରୀ କ'ଣ । ନାଁ ଚପଳା; ଚପଳ ଛନ୍ଦା । ଆଗେ ହେ ଦେଖୁଚୁ କ'ଣ ? ଭାଇଟାର ଦେହ ବେମାର ତା'ର ଭିଡ଼ ପା' କଥା ଟିକେ ବୁଝ ।

ପୂର୍ଣ୍ଣବାବୁ ବଳବଳେଇଲା ପରି ଚିତ୍କାର କରି ଉଠିଲେ—

: ନାଇଁ ନାଇଁ ମୋର କିଛି ହେଇନି । ମୁଁ ଠିକ୍ ଅଛି ତମମାନଙ୍କ କଥା ତମେ ବୁଝ ।

କୃତ୍ତିବାସ ମହାଶୟ ଚମ୍ଭକରେ ବୁଝେଇ ଦେଲେ ଯେ ସିଏ ଆଉ ତାଙ୍କ ଝିଆରୀ ଦି'ଜଣ ରାତିପାଇଁ ଭୋଜନ ସାରି ଆସିଛନ୍ତି । ଏବେ ବିଶ୍ରାମ

କରିବେ । ଏତକ କହିଦେଇ ସିଏ ଶୋଇ ପଡ଼ିଲେ ଚଉକାରୁ ପୁଣି ଗୋଡ଼ିକିଆ ଖଟ ଉପରେ । ଏବେ ଝିଅଟି ବାରଣ୍ଡା ପାଖକୁ ତାଙ୍କ ସାମ୍ନାକୁ ଆସି ନତଭ୍ରୁ ହୋଇ ଠିଆ ହେଲା, ଆଉ ଭୂଇଁକି ଅନେଇ କହିଲା—

: ଆପଣ ମତେ ଦୋଷ ଦିଅନ୍ତୁନି । ଏଙ୍କ କଥାରେ ମୁଁ ଆସିଚି । ତଳିବ ଘର ସୁଆଡ଼ୁକୁ ଓଁଟାରୁଚନ୍ତି ସିଆଡ଼େ ମୁଁ ଯାଉଚି । ମୋ ଜଞ୍ଜାଳର କାହାଣୀ ଅସରନ୍ତି । ବେଳ ପାଇଲେ କହିବି । ଆପଣଙ୍କୁ କିଛି ଅସୁବିଧା ହେବନି ମୁଁ ବାରଣ୍ଡାରେ ଶୋଇ ପଡ଼ିବି ।

ଧାତୁଭୂତ ମୂର୍ତ୍ତି ପରି ଛିଡ଼ାହୋଇ ପୂର୍ଣ୍ଣଚନ୍ଦ୍ର କହୁଚନ୍ତି—

: ନାଁ ନାଁ ତା' କେମିତି ହବ । ବାହାରେ ଥଣ୍ଡା ଲାଗିବ । ମୁଁ ମାଖନ ମାଉସୀକୁ କହୁଚି ସେ କିଛି ଗୋଟେ ବ୍ୟବସ୍ଥା କରିଦେବ ।

କୌଣସି ପ୍ରକାରେ ମାଖନ ବୁଢ଼ୀକି ଫୁସୁଲେଇ ସେଇ ଗାଉଁଟି ପାଇଁ ମାଖନ ଶୋଇବା ଘର ବଖରାରେ ଚପଲାର ଶୋଇବା ବ୍ୟବସ୍ଥା କରି-ଦେଲେ । ଆଉ ସିଏ ନିଜ କୋଠରୀରେ ସ୍ୱଳ୍ପ ଚଳଣୀରେ ମଶିଣା ମୁଦ୍ରାରୀ ପକେଇ ଶୋଇବାକୁ ଚେଷ୍ଟା କଲେ । ଯେମିତି ରାତିବଢ଼ି ଚାଲିଚି ସେଇମିତି ବଢ଼ି ଚାଲିଛି ତାଙ୍କ ଅଣ୍ଟା, ପିଠି, ବେକ ଆଉ ଅଧକପାଳର ଯନ୍ତ୍ରଣା । ଛଟପଟ ହେଉଚନ୍ତି ଆଉ ଭାବୁଚନ୍ତି କେଡ଼େ ସୁନ୍ଦର ନିଃସଙ୍ଗ ନିକାଞ୍ଚନତା ନିଜସ୍ୱ ହାହୁତାଶ ଟିକିକ ବିପନ୍ନ ହୋଇଗଲା ବୋଲି । କିଏ ସେ ଏ ଲୋକଟା ଆଉ ଯ୍ୟାର ମତଲବ କ'ଣ ! ଏଇ ପ୍ରମାଦରୁ ନାହିଁ ମିଳିବ କେମିତି ।

ନିଶା ଗର୍ଜୁଚି । ରାତି ଦିଦିଡ଼ ହବ ପ୍ରାୟ । ଏବେ ଟିକିଏ ଆରାମ ଲାଗିଲା । ହୋମିଓପାଥି ବୋଧେ ତାର କରାମତି ଦେଖେଇଲାଣି । ଘର ଭିତରଟା ଭାରି ଗରମ । ବାହାରେ ପାରାପିଟ୍ ଉପରେ ସୁଲସୁଲ ହାଓ୍ୟା ଖେଳୁଥିବ । ସେଟିକି ଯାଇ ଦଣ୍ଡେ ଆଉଜା ବସି ପଡ଼ିଲେ ଆରାମ ଲାଗିବ । ସିଏ ଉଠିପଡ଼ି ଅନ୍ଧାର ଭିତରେ କବାଟ ଖୋଲିବାକୁ ଅଣ୍ଡାଳୁ ଅଣ୍ଡାଳୁ କ'ଣ ଗୋଟାଏ ଝୁଣ୍ଟିଲେ । ମେସ୍ ପିଲା ଦେଇଯାଇଥିବା ରୁଟି ଡାଲମାର ଡାଟିଆ ଆଉ ଗିନାଟାଏ । ତା' ସାଙ୍ଗକୁ ମାଖନ ମାଉସୀର ଖାଲି କ୍ଷୀର ଗ୍ଲାସ୍ । ମନେ ନଥିଲା ସେ କେତେବେଳେ ତାଙ୍କ ରାତି ଭୋଜନ ଶେଷ କରିଚନ୍ତି । ଡିକିଆ

ମୁନ୍ଦୁସ୍ ଦ’ଣ୍ଟା ଘୋଷାର ଯାଇ ପାସ୍‌ପେଠ୍ କୋଣରେ ଗୋଡ଼ ଲମ୍ବେଇ ଆଉଜି ପଡ଼ିଲେ ଘର ଥାଣ୍ଟରେ । ଶଶି ଖଣ୍ଡ ମୌନ ଆକାଶର ଦେହ ଉଜ୍ଜ୍ୱଳ ଦିଶୁଚି । ମିଠା ମିଠା ହାଲ୍‌କା ହାଓ୍ୱା । ଘଣ୍ଟାର ଉଲଙ୍ଗ ବିଜୁଳି ଆଲୁଅ ଧାଡ଼ି ଧାଡ଼ି ହୋଇ ଆଖି ମିଟିକା ମାରୁଚନ୍ତି । ଶୂନ୍‌ଶାନ କମନାୟ ଉଚକତା ବାଞ୍ଜବସ୍ତ ! କାହାର ପାଦଶବ୍ଦ ଏ ଆଡ଼କୁ ଆସୁଚି । ତାଙ୍କର ଚାଟିଆ ଝୁଣ୍ଟିବା ଆଉ ଦୁଆର ଖୋଲିବା ଆୱାଜ ସାଙ୍ଗରେ ସାମ୍‌ନା ଦୁଆର ମାଖନ ମାଉଁଶୀ ଘରୁ ଝିଅଟିଏ ବାହାରି ତାଙ୍କର ଆଡ଼େ ମୁହାଁଇଚି ।

: କିଏ କିଏ ସେ ତମେ ? ପଚାରିଲେ ପୂର୍ଣ୍ଣବାବୁ । କେଇ ନିମିଷ ନିରୁତ୍ତର ରହିଲା ଝିଅଟି । ତା’ପର ଧୀର ଗଳାରେ କହିଲା—

: ମୁଁ ଚପଳା । ତମେ ରାଗ ନକଲେ ମୁଁ ଟିକିଏ ଏଇଠି ବସନ୍ତି । ମତେ ନିଦ ହଉନି । ଖାଲି କାନ୍ଦ ଲାଗୁଚି । ସିଏ ଏବେ ଅନୁମତି ଅପେକ୍ଷା ନକରି ଗୋଲାପ କୁଣ୍ଡ ପାଖରେ ଟୁଙ୍କ ହୋଇ ବସିପଡ଼ିଲା ।

ତା’ପରେ ସମସ୍ତ ଆଉ ସମ୍ପର୍କର ପରିସର ଥିଲା ଏଇ ପ୍ରକାର । ପୂର୍ଣ୍ଣଚନ୍ଦ୍ର ଉବାଚ ;

: ତମକୁ କାନ୍ଦ କାହିଁକି ଲାଗିଲା ?

ଚପଳା ଉବାଚ—

: ଏକୁଟିଆ ହୋଇଗଲେ ମତେ ଖାଲି କାନ୍ଦ ଲାଗେ । କାନ୍ଦିବାକୁ ଭଲ ଲାଗେ । ହାତଗୋଡ଼ ଝୁଣ୍ଡି ମଥା ସବୁ ଉଶ୍ୱାସ ହୋଇ ଆସେ ।

: ମୋ ଦେହ ଭଲ ନାହିଁ । ମତେ ଲୋକବାକ କୋଳାହଳ କିଛି ଭଲ ଲାଗେନି । ଏକାଟିଆ ଏକାଟିଆ ଏମିତି ବାୟୁବାୟୁ ନିକାଞ୍ଚନତା ମୁଁ ଖୋଜୁଥିଲି ଆଉ ପାଇଚି ମଧ୍ୟ । ତମେ ମତେ ବିରକ୍ତ କରୁଚ କାହିଁକି ?

: ମୋ ଉପରେ ରାଗକରନି । ମୁଁ ବି ଗୋଟେ ନିହାତି ଏକୁଟିଆ ନିଛୁଟିଆ ମଣିଷ । ନିଃସଙ୍ଗ ହୋଇ ବସିଲେ ଆଉ ବସି ବସି କାନ୍ଦିଲେ ତମର କି ଆଉ ଜଗତ୍ତର କଣ କ୍ଷତି ହବ । ମୁଁ ଖାଲି କା’ପାଖରେ ଗୋଟେ ବସିଥିବି । ଅଳା ଅଡ୍ଢେଇଳି କିଛି କରିବିନି । ତମେ ଭୁଲି ଯାଅ ଯେ ମୁଁ ଏଇଠି ଝରପୁଟ

ଦୂରରେ ବସିଚ ବୋଲି । ଯେମିତି ଅଷ୍ଟମୀ ଜହ୍ନ ଆକାଶର ବଉଦ କି ଖସ୍ତା'ର ବଜୁଲି ଖୁଣ୍ଟ ଯିଏ ଯାହା ଜାଗାରେ ନିଜର ଚନ୍ଦ୍ରମ୍ବ ହୋଇ ଠିଆ ହୋଇଚନ୍ତି । ସିଏ ତମକୁ ହରକତ କରୁନାହାନ୍ତି କି ତମେ ତାଙ୍କୁ ଆଡ଼ରୁଷା କରୁନ ।

: ମାନେ ତମେ କହୁଚ ଚାରିଖୁଣ୍ଟି ଗଛବୃଛ ପରି ତମେ ବି ଗୋଟାଏ ସିଧା ସଳଖ ସମ୍ପର୍କ ବିହୀନ ଅସମଞ୍ଜସ ଅବସ୍ଥିତି ।

: ହଁ ମୁଁ ସେଇଆ । ମୁଁ ମୋଟେ କାହାକୁ ଓଟାରି ଆଣି ନିଜ କବ୍‌ଜାରେ କି ଭୁଜ ବନ୍ଧନୀରେ ଯାକି ପକେଇବାକୁ ମନ କରୁନ । ପସ୍ତିଜ ବି କରୁନ । ମୋ ସଞ୍ଚାର ପଥରେ ମୁଁ ଘୂରୁଚି । ତମ ସ୍ୱପ୍ନର ଦ୍ୟୁଲୋକରେ କି ପ୍ରକଳ୍ପ ପରିଧିରେ ମୁଁ ନାକ ଭର୍ତ୍ତିକରିବାକୁ ଆଦୌ ଚେଷ୍ଟା କରୁନ ।

. ଭାରି ବଡ଼ ବଡ଼ କଥା କହୁଚ । ଅଧା ବୁଝି ହଉଚି, ଅଧା ଅନ୍ଧାର ।

: ଦିନ ରାତି ତ ଅଧା ଅଧା । ଏଇ ତ ମାୟା ବର୍ତ୍ତି । ଏଇଟା ଭି ସତ ।

: ହେଲ୍ ହେଲ୍ ତେବେ ଏଠିକି କାହିଁକି ଆସିଚ ? ସେଇ କୃତ୍ତିବାସ ଲୋକଟା ତମର କିଏ ? କି ମତଲବରେ ଆସିଚ ?

: ମୁଁ ତାର କେହି ନୁହଁ କି ସେ ମୋର କେହି ନୁହଁ । ମୋ ବାପା ମାଆ କିଏ ମୁଁ ଜାଣିନ । ଏଗଲି ସେଗଲି ବୁଲି ଗୋଟାଏ ଖଣ୍ଡିଆ ଅଖାରେ ଭଙ୍ଗା ଟିଣ, ଲୁହା, ପ୍ଲାଷ୍ଟିକ୍, କାଚ ସରଞ୍ଜାମ ଗୋଟେଇ ବେପାରୀକୁ ବିକୁଥିଲି । ଆଉ ଦଶ ବାରଟା ପିଲା ମୋ ସାଙ୍ଗରେ ଏମିତି ବୁଲି ବୁଲି ଦିନକୁ ଆଠଅଣା ଟଙ୍କେ ରୋଜଗାର କରୁଥିଲେ । କ'ଣ ଖାଉଥିଲି, କୋଉଠି ଶୋଉଥିଲି ତା'ର ଠିକଣା ନଥିଲା । ଅଠର ବର୍ଷ ତଳର ପିଲାଦିନ କଥା । ଏଇ ଲୋକ ଯାଇ ମତେ ଆଦର କରି କହିଲା ତା' ଝିଅ ପରି ପାଳିବ । ଭଲ ଖାଇବା ପିନ୍ଧିବାକୁ ବି ଦେଲା । ଭାରି ପଇସାବାଲା ବି ଥିଲା । କୋଠାଘର, ମଟରଗାଡ଼ି କରିଥିଲା । ସତରେ ଆଦରରେ ପାଳିଲା । ବୟସ ବଢ଼ିବା ସାଥିରେ ତା' ବ୍ୟବସାୟ ଆଉ ଧନ୍ଦାରେ ମୁଁ ବି ଭାଗିଦାର ହେଲି ଆଉ ମଜ୍ଜିଗଲି । ଏବେ ତାର ଅକାଳ ପଡ଼ିଚି । ସବୁ ଉଡେଇ ଯାଉଚି । ସଭିଁ

ତାଙ୍କୁ ଛାଡ଼ି ଗଲେଣି । ଖାଲି ମୁହିଁ ଅଛୁ ସିଏ ଅଛୁ । ଦୁ'ଟା ଯାକ ଜକାଜକ ହେଇ ଗଡ଼ିବ ଲୋକରେ ହିଶଙ୍କୁ ପରି ଝୁଲୁଚ।

ପୃଥ୍ୱୀଚନ୍ଦ୍ରଙ୍କର କାହିଁକି ପିତ୍ତ ଚଢ଼ିଗଲା । ଚଡ଼ା ଗଳାରେ କହିଲେ—

: କାହିଁକି ଏତେ ବା'କ୍ ବଚନିକା କରୁଚ । ସିଧା କଥା କହ ଏଠିକି ଆସିଚ କାହିଁକି ? ମୁଁ କୋଉ ମାଲ୍‌ଦାର ଠିକାଦାର ହେଇଚି ଯେ ତମ ଦୁ'ଟାଙ୍କୁ ପୋଷିବି । ମୁଁ ତ ଘର ଛାଡ଼ିଚି, ଗାଁ ଛାଡ଼ିଚି । ଅଳ୍ପ କିଆ ଗ୍ଲେଟ-କାଟିଆ ପେଟ ପାଟଣାର ମଣିଷ । ବରଫ ଗଣ୍ଡିରେ ଭୁଞ୍ଜାଟାରେ ନିଆଁ ହୁଳା ଦେଖୁଚ କାହିଁକି ।

ପାନପତର ମୁହଁରେ ବନ୍ଧୁଏ ନାଜଚଣା ହସୁଚି ।

: କହୁଚି, କହୁଚି । ଏଇ ଯେ ଲୋକଟା ତମ ଖଟରେ ଶୋଇଚି ସିଏ ଅଧା ମଣିଷ ଅଧା ମୁର୍ଦ୍ଦାର । ମାନେ ଦୁ'ଟା ଭିନ୍ନ ରୂପ । ମାସର ଅଧେ ଦିନ ପୂଜାପାଠ, ଭଜନ, କୀର୍ତ୍ତନ କରିବ । ଅନ୍ନଛତ୍ର ଖୋଲିଦେବ । ବାକି ଅଧେଦିନ ଡ଼ାକ୍ତରଖାନା ମେଡ଼ିକାଲ୍‌ରଙ୍କଠୁ ମଣିଷ ମଡ଼ା କିଣି ତାଙ୍କ ମାଉଁସ ଚମ ଛେଲି କଙ୍କାଳ ବିକିବ । ବାହାରକୁ ଏକ୍‌ସପୋର୍ଟ କରିବ ଖୁବ୍ ମୁନାଫାରେ । ଅଳ୍ପ ବୟସର ପିଲାଙ୍କ କଙ୍କାଳ ଆଉ ଖପୁରୀର ଦର କୁଆଡ଼େ ବିଦେଶ ବଜାରରେ ଖୁବ ଚଢ଼ା ଥାଉ । ସେଇଥିପାଇଁ ଗୁଣ୍ଡା ଲଗେଇ ସାନ ପିଲାଙ୍କୁ ଚୋରିକରି ବିଷ ଖୁଆଇ ମାରିବ । ଆଉ କଙ୍କାଳ ତିଆରି କରିବ । ଦୁଷ୍ପ୍ରାପ୍ୟ ମହଙ୍ଗା ଔଷଧ ଇଞ୍ଜେକ୍‌ସନ୍ ସବୁ ଡ଼ୁପ୍ଲିକେଟ୍ ଜାଲ୍ ତିଆରି କରେଇ ବଜାରକୁ ଛାଡ଼ିବ । ଏମିତି ଲୋକ ଯେ ପୁଣି ଅଥବା ବୁଢ଼ିଟିଏ କି କୁଷ୍ଠ-ରୋଗୀଟିଏ ରାସ୍ତାରେ ପଡ଼ିଥିଲେ ତାଙ୍କୁ ସାଉଁଟି ନେଇଯାଇ ଡାକ୍ତରଖାନାରେ ଭର୍ତ୍ତିକରିବ ଆଉ ପାଞ୍ଚ ଶ ହଜାରେ ଖର୍ଚ୍ଚ କରିବ ତା' ପିଛା । ଧର୍ମ ଅର୍ଜିବ । ସଙ୍କୀର୍ତ୍ତନ, ପୁରାଣ ପାରାୟଣରେ ମୁଠା ମୁଠା ଟଙ୍କା ଖର୍ଚ୍ଚ କରିବ । ପୁଣି ଲୋଭଟ ଲଟେରିରେ ବା ଅର୍ଡ଼ର ସପ୍ଲାଇ ହାସଲ କରିବା ପାଇଁ ଗୁଣ୍ଡା ଲଗେଇ ଆଠ-ଦଶଟା କୁଟୁମ୍ବ ନିପାତ କରିଦେବ । ଅଧେଦିନ ହସୁଥିବ । ଅଧେଦିନ ଭେଁ ଭେଁ କାନ୍ଦୁଥିବ । ମତେ କହିଲା ମୁଁ ତତେ ନର୍ଦ୍ଦମାରୁ ଗୋଟେଇଚି, ପୁଣି କରିଫୁଲ

ଚର ସୁବାସିତ ଶଯ୍ୟାରେ ଅଳଅଳ କରଚ । ତୁ ମୋ ପାପରେ ଭାଗୀ, ପୁଣ୍ୟରେ ଭାଗୀ । ମୁଁ ଯାହା କହିବ ତୁ ତା'ଇ କରିବୁ । ମୁଁ କୁଆଡ଼େ ତାର ଯମଜ । ସିଏ ଯମ ହେଲେ ମୁଁ ଯମୀ । ମୁଁ ତ ଏକୁଟିଆ ବଞ୍ଚିବାକୁ ଶିଖିନାହିଁ । ତାର ତର୍ଜ୍ଜନୀଟି ମାରିଦେଇ ପ ରୁନ କ ଖୋଲ ହାଓ୍ୟାରେ ମୁକୁଳ ପାରୁନ ।

: ଏଇଠି ଆସିଚ ତାହେଲେ ମୋର ସ୍ଥୁଲ ଉତ୍ତର କଙ୍କାଳ ତଆରି କରିବାକୁ ? କଥାଟା କଣ ପରିଷ୍କାର କହ ।

: ଏତକ ବୁଝି ପାରିଲନ ପୂର୍ଣ୍ଣଚନ୍ଦ୍ର । ତମେ କୁଆଡ଼େ ଭାରି ମନସ୍ୱୀ ତେଜସ୍ୱୀନ୍ ପୁରୁଷ ସିଏ କ ଏଇ ଘୋର କଳିକାଳରେ ନବୀତ କୃଷ୍ଣ ଥାପ ଦୁର୍ନିରୀକ୍ଷ ଅନ୍ଧାର ଭିତରେ ଅନବାଣ କୌସ୍ତୁଭ ପରି ପଦ୍ମାପ୍ତ । ନଜ ଇଚ୍ଛାରେ ସ୍ୱୟଂ ସମ୍ପୂର୍ଣ୍ଣ ଆଉ ବ୍ୟବସ୍ଥିତ । ବୁଝିପାରୁନ ପୁରୁ ବଂଶର ସୁରକ୍ଷା ପାଇଁ ଋତୁମତୀ କାଶୀରାଜକନ୍ୟା ବିଚିତ୍ର ବୀର୍ଯ୍ୟଙ୍କ ପତ୍ନୀ ଦ୍ୱୟ ଅମ୍ବିକା, ଅମ୍ବାଳିକା ତଥା ସତୀ ଶିରୋମଣୀ କୁନ୍ତୀଙ୍କ ଋତୁ ରକ୍ଷା ପାଇଁ ମହାମନସ୍ୱୀ କୃଷ୍ଣ ଦ୍ୱୈପାୟନ ଆଉ ଲମ୍ପଟ ଦେବତା ଧର୍ମ ବାସବ ମରୁତ୍ ପୁଣି ମାଦ୍ରୀଙ୍କ ପାଇଁ ଅଶ୍ୱିନୀ କୁମାର ଯୁଗଳଙ୍କୁ ଆବାହନ କରି ଭାରତ ଭୂମିର ପ୍ରକୃଷ୍ଟ ଉତ୍ତରାଧିକାରୀ ଦାୟାଦମାନେ ଭୂମିଷ୍ଠ ହୋଇଥିଲେ । ଏ ଧରାଧାମରେ କୁଳ ରକ୍ଷା, ଧର୍ମରକ୍ଷା, ମାନରକ୍ଷା କଲ୍ପେ ଅମୋଘବୀର୍ଯ୍ୟ ତଥା ସ୍ୱାମମ୍ପ୍ରିକ ଲମ୍ପଟ ଯୋଗୀ, ଋଷି, ବ୍ରାହ୍ମଣ, ଦେବତାମାନେ ମହ୍ୟଗନ୍ଧା ସତ୍ୟବତୀ ଓ ପ୍ରକୃତିର ନାରୀମାନଙ୍କର ଗର୍ଭସଞ୍ଚାର କରି ଆର୍ଯ୍ୟାବର୍ତ୍ତ ସ୍ଥାପନ କରିଥିଲେ । ସେଇମିତି ପୂର୍ଣ୍ଣଚନ୍ଦ୍ରବାବୁ ତମ ଘରଝିଅରେ ଢୁଙ୍ଗୁଡ଼ି ମାରୁଥିବା କୁଳବୃଦ୍ଧ ଖୁଣ୍ଟଙ୍କ ଐଶ୍ୱରିକ ନିର୍ଦ୍ଦେଶରେ ମୁଁ ତମ ଆଗରେ ଭୂଲଗ୍ନା । ମତେ ଗ୍ରହଣ କରିବାର ସାମର୍ଥ୍ୟ ତମର ଅଛି ତ !

: ଯାଉରୁ ନା ଦେଖିବୁ ଏଇଲେ । ଗୋଟେ ନବକୁଳିଗିଚ । ମୋ ଅଧିକପାଳ ଚରି ଛଡ଼େଇଚ । ସ୍ଥିତରେ ହାତରେ ଶ୍ରଦ୍ଧେ ପ୍ରାଞ୍ଜ ଉଡ୍ରୀ କର । ଆସିଗଲେ ପଞ୍ଚାଳୀ ଏଇ ନୌକାରେ ମତେ ମହାଭାରତରୁ ଶୁଦ୍ଧେଇବା ପାଇଁ ।

ଗୋଟାଏ କଳକଳା ରବ ତାଙ୍କ ମୂର୍ଦ୍ଧନାରୁ ବାହାରି ଭିତର ଅବହାଓ୍ୟାକୁ ହୁଲ୍‌ସ୍ଥୁଲ୍ କରିଦେଲା । ମାଖନ ମାଉସୀ ଦଉଡ଼ି ଆସିଲ ନଦ

ବାଉଳାରେ ତା' ଗୁମ୍ଫି ଭିତରୁ । ପୂର୍ଣ୍ଣବାବୁର ବାହାଦ'ଟାକୁ ହଲେଇ ଏବେ ପାଟିରେ ପଗ୍ଭରୁଚ—

: କଣ ହେଲାରେ ପୁଅ କ'ଣ ହେଲା । ଦୁଆର ମେଲାକର ଏ ଥଣ୍ଡା ଗଣ୍ଡଟାରେ ହାଉଳ ଖାଇ କାହିଁକ ପଦାଟାରେ ପଡ଼ିଚୁ । କପାଳରେ ଖାଲି ଫୁଟୁଚ ।

ପୂର୍ଣ୍ଣଚନ୍ଦ୍ର କାପାଳକ ଭଳି ଗୋଲ୍‌ଗାଲ୍ ଜଳିଲା ଆଖିରେ ମାଉସୀକୁ ଗୁହିଁ କହୁଚନ୍ତି ଯେ; ତୁ ଅବକା ସେଇ ମଲାପର ଦଶାଇଥିବା ଲୋକଟାକୁ ମୋ ଖଟରୁ ଠେକ ଗୁର ମହଲା ଉପରୁ ତଳକୁ ପେଲି ଦେ । ଯେମିତି ହାଡ଼ ଗୋଡ଼ ମିଳିବନ । ଆଉ ସେଇ ଠୋକ ବସିଚ ମୋ ପାଦ ପାଖରେ ତାକୁ କାନ ଧରି ହଜାରେ ଥର ଉଠ୍ ବସ୍ କର୍ । ପୁଣି ଅଧବାଲଟିଏ ଗୋବର ପାଣିପିଆ । କେତେ ଅଧର୍ମ ଅଷାଢ଼ କଥା କହୁଚ ଶୁଣିବୁ ?

ବଡ଼ କଷ୍ଟରେ ପୂର୍ଣ୍ଣଚନ୍ଦ୍ରର ଦ'ବାହାକୁ ଧରି ସାଷ୍ଟାଙ୍ଗ କରି ମାଖନ ମାଉସୀ ତା' କୋଠରୀ ଭିତରକୁ ଉଠେଇ ଆଣିଲା । ଆଉ ପଗ୍ଭରୁଚ—

: କାଇଁରେ ପୁଅ କେଉଁଠି କଏ ମଣିଷ ମୂର୍ଦ୍ଧାର । କାଇଁ କୋଉଠି ଠୋକ । କେହି କୁଆଡ଼େ ନାହାନ୍ତି । ତୁ କଣ ସପନ ଦେଖିଲୁକ ?

ପୂର୍ଣ୍ଣଚନ୍ଦ୍ରଙ୍କର ଅରୁଣାଭ ପ୍ରତ୍ୟୁଷର ଚୈତନ୍ୟ ଫେରି ଆସୁଚ । ଝଟିଆ ଉପରେ ଏକାକୀ ହଳଦୀ ଗୁରୁଗୁରୁ ପ୍ରଜାପତିଟି ବସି ଡେଣା ଝାଡ଼ୁଚ । ଝିଲକାଏ ଅରୁଣ ରାଗ ଝରକାର ଫଟା କବାଟ ବାଟେ ତାଙ୍କ ମୁହଁକୁ ଆରକ୍ତ କରୁଛି । ତାଙ୍କ ନେତ୍ର ପଥରେ ପୁଣି ସେଇ ଏକାକୀ ଗୋଲାପ ଫୁଲଟି ମୁଣ୍ଡ ଲଡ଼ି ମୁରୁକ ହସୁଚ ।

କୁନପିଲା ପରି ଅଟଟ ସ୍ୱରରେ ପୂର୍ଣ୍ଣଚନ୍ଦ୍ର କାକୁତି କରୁଚନ୍ତି—

. ମାଉସୀ ମ ମାଉସୀ ! ଏ ଫୁଲଟା ତୁ ଆଜି ତୋଳିବୁନ କି ତୋ ରାଧାକୃଷ୍ଣଙ୍କୁ ଦବୁନ । ଏଇଟା ଝାଉଁଳିବା ଯାଏଁ ମୋ ଫୁଲ । ନଇଲେ ଏ ଝଟିଆ ଉପର ପ୍ରଜାପତିଟି ଆଉ କାହା ପାଖରେ ଯାଇ ଗେଲହବ, ବସିବ କହୁନୁ ।

# ଚକ୍ରବ୍ୟୂହ

॥ ୧ ॥

ବଡ଼ ସକାଳୁ ଉଠି ପଡ଼ିଛି । ଆକାଶର ଲଲାଟରେ ସୂର୍ଯ୍ୟତୋରଣ । ମୁଁ କିଏ ଜାଣିଚ ? ମୁଁ ହଉଛି ଅସଲ ମେଡ଼ି । ସାରା ବିଶ୍ୱ ଓ ଅନ୍ତରୀକ୍ଷର କେନ୍ଦ୍ରବିନ୍ଦୁ ମୁଁ । ମୋ ଗୃହପାଖେ ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହ ସମସ୍ତେ ଆତଯାତ ହୁଅନ୍ତି । କ'ଣ ବା ଛଗନ ଦାଶ ତମକୁ କହି ଦେଇଛି । ଗୋଟାଏ ଅର୍ଦ୍ଧଶିକ୍ଷିତ ଠିକାଦାର ସ୍ୱଭାବତଃ ଦାମ୍ଭିକଟା · ଓ୍ୱୋସ୍ପାର୍ ଓ୍ୱୋ ହଠାତ୍ ଆତସ୍ ବାଜି ଫୁଟିଲା ଭଳି ପାଉଁଶ ଟୁକୁରାଏ ଆକାଶକୁ ଉଠିଗଲା ବୋଲି ସର୍ବମୟ କର୍ତ୍ତା ବୋଲାଉ ଥିବା ପାଳ ବିଗ୍ରହ ପଦଲେହନ କରି ଭାରି ଜ୍ଞାନୀ ବୁଦ୍ଧିମନ୍ତ ଏଇ ଦରପାଠୁଆ ସାର୍ଟିଫିକେଟ ଧରି ଗୋଟେ ଛଗନ୍ ଦାଶ, ଗୋଟେ ଶନତ୍ ଦାଶ, ଗୋଟେ ପାବନ ପଟ୍ଟନାୟକ କ ସରମା ପଣ୍ଡା ଏଇମାନେ ମିଶି ମତେ ଗ୍ୟାଙ୍ଗ ରେପ୍ କରିବେ : ବା ଏଇମିତି ଗୋଟାଏ କିଛି ପାରିଲା ପଣର ପରିଚୟ କରିବେ । ସେଇଥିରେ ବିଶ୍ୱବାସୀ ତମେ କ'ଣ ବିଶ୍ୱାସ କରିଗଲ ! ଚହଲି ଗଲ । ଆସ ଆଜି ପରୀକ୍ଷାର ଦିନ । କୋଉ କଷଟି ପଥରରେ ତମେ ମତେ ଆଉ ମୋ ଭଳି ନଦା ଓ ଜନଆ ଅନ୍ୟମାନଙ୍କୁ ପରଖିବ ଦେଖାଯାଉ । କୁହାଗଲା ମୁଁ କୁଆଡ଼େ କବିତା ଲେଖୁଚି । ପ୍ରେମ କରୁଚି । ଇଆଡ଼ୁ ସିଆଡ଼ୁ ଗପରେଇ ଦଉଚି । ହୃଦୟକୁ ବାନ୍ଧିଲା ଭଳି ବାକ୍ୟ ବାଣ ମାରୁଚି । ମତେ କଲମ ଚଳେଇ ଆସେନା । ଭେସେଲ୍ଲିଆ, ଝୁଣ୍ପାମାରିଆ ଇଂରାଜି ଲେଖି ଆସେନା କି କହି ଆସେନା । ଆରେ ହାରାମ୍ ଖୋର୍ ; ତମେ ମୋର ବିଶ୍ୱରୂପ ଦେଖିନ । ତମେ ପର ମାଇପ ପାଖକୁ ଯିବା ଆଗରୁ ହାକିମର ଆଦେଶ ଖୋଜ । ଅମେରୁଦଣ୍ଡୀ ଯେତେକ ତୁମେ ପ୍ରାଣୀ ଅଛ ମୁଁ ତମ୍ଭୁକୁ କରୁଣା କରୁଚି । ତମ ମୁଣ୍ଡ ଆଉଁସୁଚି । ପିଠି ଆଉଁସୁଚି । ଆରେ ବାପ ସଂସାରରେ କେତେଦିନ । କିଏ ବା ସେ କହିଥିଲା—'ଖଣ୍ଡି ଯେ ଖଣ୍ଡି ଚୋର ପିଞ୍ଜରି କାଠି ।' ସେଇ ବାକ୍ୟଟିର ମୌଳିକ ଜମିର ଶେଷ ପାହାଚରେ ପହଞ୍ଚ । ତମକୁ ଲାଗିବ ଯେ ସବୁ ଖାଲି ମାୟା, ଜଗତ ମାୟା ।

ଏଇ ଫାଇଲ ଗୁଡ଼ାକର ନୋଟିଂ ପରି, ସନ୍ତକ ପରି । ତମର ଫାଶିଚଆ ଅନୁନୟ ଖୋସାମଦିଆ ବିବର୍ଣ୍ଣ ବିନୟ ସୁଦାମା ଭଙ୍ଗିମା ପରି । ଅଧୋଭ୍ରୂ ନାୟିକାର ବେପଥୁ କାତର ପ୍ରଣିପାତ ପରି । କାଳଗର୍ଭରେ କେଇଟା ପିମ୍ପୁଡ଼ି କାଟ ଜଇ ଲାଗିଥିବା ଧୂଳିଖିଆ ତାଳପତ୍ର ପୋଥି ପରି ତମେ ଅଗଣାରେ ଗୁଡ଼ି ମେଲେଇ ପଡ଼ିଥିବ । ତମ ଉପରେ ସୂର୍ଯ୍ୟନିଆଁ ଛେଚି ହେଉଥିବ । ଆଷାଢ଼ ଶ୍ରାବଣ ବର୍ଷା ଛେଚଥିବ । ତମ ଆତ୍ମା ମଲା ଅଜଗର ପରି ଫାଙ୍କା ପାହାଡ଼ ଚୂଡ଼ାରେ ଲଟେଇ ପଡ଼ିଥିବ ଆଉ ତାକୁ ପିମ୍ପୁଡ଼ି ଚେମ୍ପୁଣିପୋକ, ଅସରପା ଗୋଟେଇ ଖାଉଥିବେ ମାଳମାଳ ହୋଇ । ଯେତେବେଳକୁ ଗୁଡ଼ି ନ ଥିବ, ବହପ ନ ଥିବ, ଆଡ଼ମ୍ବର ନ ଥିବ । ଏତେ ଦୂରାଭିସନ୍ଧି ଆଉ ଅନ୍ୟର ଗଣ୍ଠି ଫିଟେଇବାକୁ, ଚୁଟି କାଟିବାକୁ, ଚେର କାଟିବାକୁ ମନର ଖଳ ଉଚ୍ଚାଟ କଟୁ ନ ଥିବ । କାରଣ ତମେ ନିଜେଇ ନ ଥିବ । କାହିଁକି ଏମିତି ନିଜ ତେଲରେ ନିଜେ ଭାଜି ହଉଚରେ ଅବିବେକୀ କୁଳାଙ୍ଗାର ମାନେ । ମଣିଷ ସନ୍ତାନ କ'ଣ ଖାଲି ପେଟ ପାଟଣା ପାଇଁ ବଞ୍ଚେ । ମୁଁ ହଉଚି ସେଇ ଅମୃତ ପରମ ପୁରୁଷ । କାଳ ପୁରୁଷ । ଆଶ୍ରିତମାନଙ୍କର ଆଶ୍ରୟ । ସବୁ ସ୍ୱପ୍ନର ଜାଗରୂକ ବିଗ୍ରହ । ମୁଁ, ମୁଁ, ମୁଁ ଖାଲି ଅଛି । ଆଉ କେହି ନାହାଁ । ଛଗନ୍ ଦାଶ ନାହାଁ, ଶନଉ ଦାଶ ନାହାଁ, ପାବନ ପଟ୍ଟନାୟକ ନାହାଁ । ତମେ ବୁଝିପାରୁନ ବନ୍ଧୁଗଣ ଖାଲି ଲଙ୍ଗୁଳ ହୋଇ ବଞ୍ଚିବାରେ ସୁଆଦ ବା କ'ଣ ଥାଇପାରେ । ଗଧ ତମକୁ ପଣ୍ଡିତ ବୋଲି କହିଲେ କୋଉ ଦିବ୍ୟଜ୍ଞାନରେ ତମେ ଉଲ୍ଲସିତ ହୁଅ ମୁଁ ଜାଣି ନାହିଁ । ତମେ ମୋ ଆଗରେ ଦୁନିଆଁ ଆଗରେ ସମ୍ପୂର୍ଣ୍ଣ ଉଲଗ୍ନ । ତମକୁ ଦେଖି ହସିଲେ ଉଦାସ ଲାଗେ, ଦୟା ଲାଗେ । ଖୁସି ଲାଗେ ନାହାଁ । ଦେଖି ପାରୁନ କି ? ମୁଁ ହଉଚି ଅସଲ ସ୍ରଷ୍ଟା ରୂପ । ଜ୍ଞାନ ଅଜ୍ଞାନର ସମ୍ପୂର୍ଣ୍ଣ ନିର୍ଯ୍ୟାସ ବିଶ୍ୱ ପ୍ରକଟ ରୂପ ମୁଁ ବ୍ୟାପ, ତମେ ଶଳା ନ ବୁଝିଲେ ନାହିଁ ।

ମନେ କରାଯାଉ ଯେ ଖୁବ୍ ଆଟରେ ଅଂଶୁମାଳୀର କିରଣ ବିଚ୍ଛୁରିତ ହୋଇ ପଡ଼ୁଚି । ଚମଡ଼ାକୁ ଭେଦି ଯାଉଚି । ଦାଉ ଦାଉ ଖରା । ଜୀଇଁଲା ମଣିଷକୁ ଶୁଖୁଆ କରିଦେଲା ଭଳି ଉତ୍କଟ ଅସହିଷ୍ଣୁ ଖରା । ଏତିକିବେଳେ ପୁଣି ଅଗ୍ନିକୋଣ ଆଷାଢ଼ ଶ୍ରାବଣର ନିର୍ଘାତ ମୃତବହ୍ନି ଜନମା ପରି ଲୁହରି

ବର୍ଷା । ଏଇ ମୁଁ ସେଇଠି ମ୍ୟୁନିସିପାଲ୍‌ଟି ବତ୍ତି ଖୁମ୍ବ ତଳେ ଠିଆ ହୋଇଛି । ଖରାରେ ସିଝିଛି, ବର୍ଷାରେ ବି ଭିଜୁଛି । ଉପରେ ଗୁଡ ନାଇଁ, ଲଣ୍ଡା ଖୁଣ୍ଟଟାକୁ ଆଉଜିଛି । ଭରା ଦେଇଚି । କୌଣସି କାରଣ ନଥାଇ ପାଦ ଓ ହାତରେ ଗୁକ୍‌ରେ କି ଶୋଣିତରେ ବିବଶତା ନଥାଇ ମଧ୍ୟ ତା ଉପରେ ଆଉଜି ଗଲେ ଭଲ ଲାଗେ । ଯେମିତିକି ତମେ ଶଳେ ବି ଆଉଜିଛ, କେତେଟା ଅପଦାର୍ଥଙ୍କ ପିଠି ଉପରେ ଲଦି ହୋଇ ସିଡ଼ି ଚଢ଼ିବ ବୋଲି । ମୋର ଆଉଜିବା କିନ୍ତୁ ସଉକ୍, ନିତାନ୍ତ କାବ୍ୟିକ । ଗୋଟାଏ ଉଚ୍ଛାଟ ଅପୂପ । ତମେ ବାସୁର ଅଙ୍କାମା ମୂଢ଼ମନ୍ତ । ମୁଁ ହଉଚି ବଙ୍କାମା କୈବର୍ତ୍ତି । ବିବ୍ୟିଙ୍କାନରେ ପ୍ରବୃଦ୍ଧ ଆନନ୍ଦ ଲହରୀ, କାବ୍ୟର ଗଣେଶ ବନ୍ଦନା, ସୃଷ୍ଟିର ଓଁକାର । ମତେ ଚିହ୍ନିବ୍‌ବେ ।

ଆଜି ମୁଖ୍ୟ ବକ୍ତାରୂପେ ଆସିଥିଲେ । ଆଧାମରେ ଶଙ୍କର ଦେବ ନାମକ ଏତେ ଉଚ୍ଚାଙ୍ଗ ଧର୍ମିନ୍ୟାସ୍ତ ପ୍ରେମରସର ସାହିତ୍ୟିକଙ୍କର ପ୍ରତିଭା ଲେସି ହୋଇଗଲେ ଆମ ମାନସ ପଟରେ । ଆମ ଜଣ୍ଟା ଜଜ୍ ସାହେବ କହିଲେ ପଙ୍କୀରତ୍ନେମ ହନଙ୍କ ଲନ୍ଦନିମା ଠାରୁ ଛମାଣ ଆଠଗୁଣ୍ଠ ଦେଇ ପେଟେଣ୍ଟ ମେଡ଼ିସିନ୍ ପର୍ଯ୍ୟନ୍ତ ସୌରଭର ସବଗ୍ରାସୀ ପ୍ରକାର ନମୁନା କଥା । ଯେଉଁମାନେ ସାହିତ୍ୟ ପାହିତ୍ୟ ଜାଣନ୍ତିନି ସେମାନେ ଜବରଦସ୍ତ ମୁରୁକି ମୁରୁକି ହସୁଥିଲେ । ତାଙ୍କର ମନେ ପଡ଼ୁଥିଲା ଘରକୁ କେତେବେଳେ ଫେରିବେ ପୁଅ ମାଇପ ଅପେକ୍ଷା କରିଥିବେ ବାପା ଆସିଲେ ସାଙ୍ଗରେ ଭାତ ଖାଇବେ ବୋଲି । ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏକାଠି ବସି ସବ ସମ୍ପର୍କରେ ବାପ, ପୁଅ, ଭାଇ ବନ୍ଧୁ ସୋଦର ମିଶି ଗରଳ ଗ୍ରାସ କଲେ ବି ଅମୃତ ପରି ଲାଗେ । ମଣିଷ ଅଦ୍ଭୁତ ଜନ୍ତୁ । ଏତେ କୋଳାହଳ ଛଣା ଚେତନା ଯନ୍ତ୍ରଣା ଭିତରେ ବି ଏକାନ୍ତ ନିଜସ୍ୱ କାତରତା ଟିକିଏ । ଗୁନ୍ ଗୁନ୍ ମର୍ଜି ବାସ୍ନାର ମହୁଆଳିଆ ଆବେଶ ପରି 'ସଲିଟିଉଡ୍' ଟିକିଏ ନିର୍ଜନତା! ଟିକିଏ ସଞ୍ଚ ରହିଯାଏ ଛାତିର କୋଉ କୋଣରେ । ଏଇ ନିଜସ୍ୱ ନିର୍ଜନତାକୁ ଆକର୍ଷ କରିବା ପାଇଁ ଢଣ୍ଢୋରା ଦୋଡ଼ାଇବା ପାଇଁ ମଣିଷର କେତେ ପ୍ରହ୍ଲଜ, କେତେ ଆୟାସ, କେତେ ଯୁଦ୍ଧ, କେତେ ଭାବ ଆଉ କର୍ମର କାମୁକି

ପ୍ରବଣତା । ଆଶ୍ଚର୍ଯ୍ୟ । ଆମେ ଗୋଟିଏ ଗୋଟିଏ କୁଳୁକୁଳୁ ଝରଣା ବନ୍ଧା ସବୁଜ ଗିରିବନର ବ୍ୟକ୍ତିଗତ ସାମ୍ରାଜ୍ୟର ଉହାଡ଼ରେ ଥିବା ନିରଙ୍କୁଶ ନିର୍ବାଧ ଶ୍ୱାପଦ ମାତ୍ର ନୁହେଁକି ? ସେଇ ଆମ ଚରିତ୍ର । ସେଇ ଆମ ଚିହ୍ନଟ । ଆମେ ଗୁରୁ ମହାନ୍ତି, ରମାକାନ୍ତ, ସୀତାକାନ୍ତ, କମଳାକାନ୍ତ, ଅଖିଳ ପଟ୍ଟନାୟକ, କଣେ ସାଚରଣ, ଗୋପୀ ମହାନ୍ତି, ଚନ୍ଦ୍ରଶେଖର, ମହାପାତ୍ର ନୀଳମଣି ଯିଏ ହଉନା କାହିଁକି ଗୋଟିଏ ଗୋଟିଏ ସୁନ୍ଦର ମଳ ସୁରକ୍ଷିତ ଅନମନା ସ୍ୱପ୍ନଭୁକ୍ କାକଦ୍ୱୀପର ନମୁନା । ଏଇ ଆମର ଆୟତନ ।

ଇରେ ହରପ୍ରସାଦ । ତୁ କ'ଣ ଭାବୁଚୁ ଯେ ମୁଁ କବିଙ୍କୁ ଭଳି ଅଧା ସ୍ୱର୍ଗରେ ଚଉକାଠ ଖୋଇସିବାକୁ ଭଲପାଏ ଏବଂ ଏଇ ଅଧା ଆକାଶରୁ ତଳର ବିଶ୍ୱ ଆଉ ଉପର ଅନ୍ତରୀକ୍ଷକୁ ଚାହିଁ ଚାହିଁ ଠିକ୍ ଭୁଲ କରିବାକୁ ପସନ୍ଦ କରେ ବୋଲି । ସେଇଥିପାଇଁ ତୁ ବାଲୁଙ୍ଗା ଯା ଚାହିଁବୁ ଯେତେବେଳେ ତୋ ବିବାଦ ଅନୁସାରେ ଲେଖି ପକେଇବୁ । ମୁଁ ଇଚ୍ଛାମୟ । ମୋର ଖେୟାଲ ମୋର ରୁଚି ଉଦ୍ଭଟ ହେଲେ ବି ଏକା ମୋ ସ୍ୱେଚ୍ଛାଚାରର ଆୟତ୍ତ । ତୁ କ'ଣ କରିବୁ କର । ମୋ ଇଚ୍ଛା ହେଲେ ଲେଖିବି, ମୋ ଇଚ୍ଛା ହେଲେ କାନ୍ଦିବି, ଲୋଟିବି, ହସିବି । କିନ୍ତୁ କଲମ ଚାଳେଇଲାବେଳେ ସ୍ୟାହି ନ ଝରି ଲୁହ ଝରିଲେ, ହସ ନ ଝରି ଲୁହ ଝରିଲେ, କରୁଣା ନଝରି ଅଗ୍ନି ଝରିଲେ ତୁ ଅସହାୟ ଆଉ ମୁଁ ବି ।

ମୁଁ ଅବିକା ଯାହା କହୁଚି ମନ ଦେଇ ଶୁଣ । ତୋର ଶୁକଦେବ ପରି ଲୁଚି ଲୁଚି ଶୁଣିବାରେ ଦିବ୍ୟଜ୍ଞାନ ହେଇଯିବ । କାରଣ ସେଇ ପାପ ବ୍ରହ୍ମାର ପ୍ରସୂତ ବ୍ରହ୍ମାର ବେଦବାକ୍ୟ ପରି ଏଇ ଜ୍ଞାନ ତୋର କାନ ଭିତରେ ପଶି ସାରା ବିଶ୍ୱରେ ପ୍ରସରିବାକୁ ବାଧ୍ୟ । ଆଉ ତୁ ଛଗନ ଦାଶ, ଶନତ୍ରୁ ଦାଶ, ପାବନ ପଟ୍ଟନାୟକ ସବୁ ପୃଥିବୀର ଦାଶ ବଂଶର ପିପାସା ପ୍ରଶମନ ପ୍ରତିଜ୍ଞାରେ ବଜ୍ର ପରି ନିର୍ଘୋଷିତ ହବ । ପୁଣି ଧ୍ୱଂସ କରିଦେବ ଯାହା ଏ ପର୍ଯ୍ୟନ୍ତ ତୁମେମାନେ ବିବସୁଧା ଚଳଣିବୋଲି ହୃଦୟରେ ଜଡ଼େଇ ନେଇଛ । ମୁଁ ଅବିକା ମୋର କଥା କହୁଚି ।

ଅସଲ କଥା ହେଲା ଆଜି ଏଇ ମୁହୂର୍ତ୍ତ । ତମର ଅବର୍ତ୍ତମାନରେ ମୁଁ ବର୍ତ୍ତମାନ । ଈଶ୍ୱରଙ୍କ ମୃତ୍ୟୁରେ ପିଶାଚର ନିଧନରେ ସ୍ୱବଶର

ତିରୋଧାନରେ ମୁଁ ବର୍ତ୍ତମାନ । ସମସ୍ତଙ୍କ ଅବର୍ତ୍ତମାନରେ ମୁଁ ପ୍ରସ୍ତୁତ । ପାଠକେ ମୁଁ ତମପାଇଁ ଆଦୌ ଲେଖିବ ନାହିଁ । ତମେ ଛତୁ ବୁଝିବ । ମୁଁ ଖାଲି ଲେଖକଙ୍କ ପାଇଁ ଲେଖୁଛି, ସ୍ରଷ୍ଟା ପାଇଁ ଲେଖୁଛି । କେମିତି ମେଦ ମାଂସ ଶୋଣିତ ସାଥିରେ ନାଟକ ଭାବେ ଅନୁରକ୍ତ ରହି କଲମ ଚଳେଇ ହୁଏ, ତୂଳୀ ଚଳେଇ ହୁଏ, ସେଇ କଥାଟି ସମଝୁଛି । ଆଜି ସକାଳୁ ସକାଳୁ କ'ଣ ସବୁ ହେଲା ଜାଣନ୍ତି ? ଯେତେବେଳେ ସୂର୍ଯ୍ୟୋଦୟ ହେଲା ସିନ୍ଦୂର ଫିଟିଲା ଗୃହପୁର ବେଳାରେ ମଖମଲ ସୈକତ ଉପରେ ସାଗରର ଡେଉଁ ଆଉ ତା' ଉପରେ ଉଷାର ପ୍ରଥମ କିରଣ ଫେଣ୍ଟି ହେଲା, ସେତେବେଳକୁ ମୁଁ ତଥାପି ଘୁଙ୍ଗୁଡ଼ି ମାରୁଛି, ଆହ୍ଲାଦରେ ସକାଳ ଆଠଟା ପର୍ଯ୍ୟନ୍ତ । କ'ଣ ଘସିଗଲା ସେଉଠୁଁ । କିନ୍ତୁ ପୂର୍ବ ଜୀବନ କାଳରେ କଦବା କେଇଥର କେତେବେଳେ ମୁଁ ସାଗର ସୀମାନ୍ତରେ ସୂର୍ଯ୍ୟୋଦୟ ଦେଖିଛି । ମୋ ଦେଖିବା ଢଙ୍ଗରେ କେହି କେବେ ସମୁଦ୍ରକୁ କି ସୂର୍ଯ୍ୟକୁ, ଲହରିକୁ, ମାଛକୁ କି ଡଙ୍ଗାକୁ କି ଆସ୍ତେ ଆସ୍ତେ ଅପସରି ଯାଉଥିବା କୁହୁଡ଼ି ଆଉ ରାତିର ଅବଗୁଣ୍ଠନକୁ ମୋ ଭଳି ସକେଇ ସକେଇ କାନ୍ଧ କାନ୍ଧ ଗଭୀର ରସାନୁଭୂତି ସହିତ ଦେଖି ନାହାନ୍ତି । ତାର କାରଣ ହେଲା ମୁଁ ହଉଛି ମୁଁ, ଆଉ ତମେ ହଉଛ ତମେ । ଅସରଗ । ବେରସିକ । ସାପ ପରି, ବେଙ୍ଗ ପରି, ଚଢ଼େଇ ପରି ବଞ୍ଚିଥିବା, ଆହାର ଖୋଜୁଥିବା, ମୈଥୁନ ଖୋଜୁଥିବା, ଶୟନ ଖୋଜୁଥିବା ଅନ୍ୟମାନେ ସୁଦ୍ଧୁ କଲେଇକରି ଗୌଣ ଲୋକମାନେ ମୁଁ ହଉଛି ମୁଖ୍ୟ । ମୁଁ ହଉଛି ସାରା ଜଗତର ସୃଷ୍ଟିର ମେରୁଦଣ୍ଡ, ପାଇଭଟ୍, ମେରୁ ହାଡ଼, ରୂପା ଦାଉ ଦାଉ କଳଙ୍କିର ଲଙ୍ଗଳା ଖଣ୍ଡା ବାରହତ ।

|| ୨ ||

ମିଛୁ ମିଛିକା ସ୍ୱପ୍ନ ବୁଣିବାର ପ୍ରୟୋଜନ କିଛି ନାହିଁ । ଯେତେବେଳେ ଏଇ ଲୋକମାନେ ଦେଖିଲେ ଯେ ମୁଁ ନିଷ୍ପାପ ନିଟୋଳ ସଜଫୁଲଟିଏ କଡ଼ ଭାଙ୍ଗି ପେଟେଇ ଦେଲଉଠି ପୁଣି ଉଠି ଗୁରୁଣ୍ଡୁଥିବା, ଡେଗା ଡେଗା ନିର୍ମଳ ଆଖି ଥିବା ନିଷ୍ପାପ ଶିଶୁଟି ଭଳି ଜୀଅନ୍ତା ହୋଇ ଉଠିଲି ଆଉ ଭୂଇଁରୁ ମୁଣ୍ଡ ଟେକି ଉହୁଁକି ସମସ୍ତଙ୍କ ଆଡ଼େ ଗୁହଁ ଅକାରଣରେ ମୁରୁକି ପାଲୁଆ ପାଟିର ହସ ଟିକିଏ ହସିଦେଲି, ସେତିକିବେଳେ ଏଇମାନେ ମତେ

ଆବିଷ୍କାର କରିଥିଲେ ଏଇ ଶିବ ମନ୍ଦିର ବେଢ଼ା ଭିତରେ । କେବଳ କ୍ଲାନ୍ତି-କ୍ଲିଷ୍ଟ ନୁହେଁ ନାଁ ପରିବାର ଗାଁ ଠିକଣା ପଚାରିଲେ ନାଇଁ, ସମଝିଲେ ନାଇଁ । ନିତାନ୍ତ ସରଳ ରୈଖିକ ପରିଚୟ । ବେଧଙ୍କୁଆ । ତାର ପାପୀୟସୀ ଜନନୀ ତାକୁ ବୋଧେ ଏଇ ମନ୍ଦିର ବେଢ଼ାରେ ଏମିତି ଦସ୍ୟୁମାନ୍ଙ୍କ ଉପରେ ଆଖଣ୍ଡଳମଣି ଶିବୋଽହଂ ସୋଽହଂ ଲିଙ୍ଗରାଜ ବେଢ଼ାରେ ଛାଡ଼ି ଦେଇ ଯାଇଛି । ସେ ପୁଣି ଧଳାର ଗଡ଼ି ସ୍ରୋତରେ ଆକ୍ରାମାକ୍ରା ହୋଇ ବାହା ଫଟେଇ କାନ୍ଦୁଚି । ପୁଣି ମନ୍ଦିରେ ମନ୍ଦିରେ କରି କରି ଦମ୍ଭୀ ବଢ଼ୁଚି । ହାଉ ଅଣବାବୁଆ ଯାଁ'ର ଆଗପଛ ଭୂଇଁ ଆକାଶ କିଛି ନାଇଁ ତାକୁ ପଦ୍ମ ଠାକୁର ଆଦରିଲା ତା' ହେଲେ ଚାଲ ଆମେ ନୂତନ ଦାଣ୍ଡ, ଶନିଚ୍ଚ ଦାଣ୍ଡ, ସୁମନ୍ତ ବସ୍ତ୍ରାଳ, ପରମା ନାୟକ ଯୁଗ୍ମଙ୍କୁ ଗୁଣ୍ଡୁଚାନ୍ଦସ ପ୍ରଦାନ କରିବା । ଯୁଗ୍ମ ସାଙ୍ଗେ ଖେଳ ଖେଳିବା । ସଂସାରର ଖେଳ । ହେଲେ ଯୁଗ୍ମଙ୍କ ବ୍ୟୂହ ଭିତରେ ଓଁକାର କାବୁ କରି ରଖିବାକୁ ହେବ । ମୁଁ ବି ତାଙ୍କ ପ୍ରକଳ୍ପରେ ସମ୍ମତ । କିଛି କହିବାର ନାହିଁ, ଚିନ୍ତିବାର ନାହିଁ, କଣ୍ଟିବାର ନାହିଁ । ମୁଁ ବି ଧବଳଚରଣ କରିଚି । ମା ଯୋଗମାୟା, ବାପ ବଜ୍ରକଳା । ନିଃସର୍ଗ ରେତସ୍ଖଳନର ଗୁଣ୍ଡୁଚା ଚିନ୍ ଭଳି ସୃଷ୍ଟି ହୋଇଚି ତମମାନଙ୍କୁ ତମ ସଂସାରକୁ ଦେଖିବି, ବୁଝିବି ଆଉ ପାରିଲେ କିଛିଟା ସମଝିବାକୁ ଚେଷ୍ଟା କରିବି । ସେଇତ ଚମତ୍କାର । ଏତେ ବୁଢ଼ିଆ ଲୋକ ଆଇନ୍ଷ୍ଟାଇନ୍ ବି ଖାଲି ସମୁଦ୍ର ବାଲିରେ ଶାମୁକା ଗୋଟେଇ ଖେଳ ଖେଳୁଥିଲେ । ବୁଝିଥିଲେ ଟିପେ ଧୂଳିର ବିଜ୍ଞାନ । ବାକିତକ ଅନ୍ଧାର !

ଜ'ଣ କେମିତି ହେଲା କହୁଚି । ସେତେବେଳେ ନିଜକୁ ଘର ବୁଢ଼ିଆ ପାରିବାର କ୍ଷମା ସାମର୍ଥ୍ୟବାନ୍ ବ୍ରାହ୍ମଚରଣରେ ଦମ୍ଭିତ୍ ପାଇଥିବା ବେଶ୍ ଲମ୍ବ ଉଚ୍ଚା ସିଧା ମଣିଷଟିଏ ଭଳି ମଧ୍ୟାହ୍ନର ଜଳନ୍ତା ସୂର୍ଯ୍ୟ ତଳେ ଠିଆ ହୋଇ ପଡ଼ିଲି ଆଉ ତମର ଚକ୍ରବ୍ୟୂହକୁ ଘୂରିଆଡ଼େ ନିରେଖି ଗଲି, ମନେ ଲାଗିଲା ଯେ ଏମିତି ଚିହ୍ନ ନିଷ୍ପନ୍ଦ ନିର୍ବାକ ପରିବେଷରେ ଶୂନ୍ ପାଉଥିବା ବଗୁଲିଆ ଠାକୁର ଘର ଛୁଡ଼ା ଥୁଣ୍ଟା ଗଛଟାକୁ ବେଢ଼ି ସବୁତକ ମନୁଆ, ଗୁଲିଆ ଭଉଣୁଆ ଖଞ୍ଜଣୀ ମାଡ଼ରେ ମସ୍ଗୁଲ୍ ଉପ୍ ସ୍କାୟାର ଲେର୍, ସ୍ଲିପ୍ ସେକେଣ୍ଡ ସ୍ଲିପ୍ ଅସଲ ଅସଲ ଥାନରେ ଠିଆ ହୋଇଚନ୍ତି । ସ୍ଥାଙ୍କୁ ସବୁ ପରଖି

ଆପଣେଇ ଚଳାଯିବାକୁ ତ ହେବ । ଗୋଲ ନଟୁପର ଘୁରୁଥିବା ଏଇ ସାରା ପୃଥିବୀର ଚେହେରାକୁ ଆଉ ବ୍ୟୂହ ସଜାଡ଼ ଥିବା ଲୋକ କେଇଟିଙ୍କୁ ଚାହିଁଦେଲା-ବେଳେ ଲାଗେ ଯେମିତି ଏଇନା ନଗଦ ଚନ୍ଦ୍ରର ନିଦ ଭାଙ୍ଗି ଯାଇଚି । ତା' ଆଖିକୁ ଚାହିଁ ସାଗରର ସବୁ ଲହଡ଼ି ସ୍ଥିର । ସବୁ ଉଡ଼ନ୍ତା ପକ୍ଷୀର ଡେଣା ଅଚଞ୍ଚଳ—କାକଳି ନିର୍ବାକ୍ ଶୂନ୍ୟଶାନ୍ । ଗୋଟାଏ କୋଣରେ ଚାରିଜଣ ଆରକ୍ଷୀ ବସି ପଶା ଖେଳୁଛନ୍ତି । ସେଥିରେ ନିୟମ କାନୁନ୍ କିଛି ନାହିଁ । ଯିଏ ଯେମିତି ଗୋଟି ଚଳେଇ ପାରିଲା । 'ନଅ' ପଡ଼ୁ କି 'ଛଅ' ପଡ଼ୁ କି କଚେ ପୁଅ 'ବାର' ପଡ଼ୁ । ଯା'ର ସବୁଠୁ ପାଟି ବଡ଼ ଆଉ ଚମୁଟା ଆଣ୍ଠୁ ତାର ଜିତାପଟ । ସେମାନେ କେବେକେବେଳ ମୋର ଭୋକିଲା ବିକଳ ପେଟକୁ ଚାହିଁ କଦଳୀ ଖଣ୍ଡେ କି ଛେନା ନଡ଼ିଆ ଚକଟା ମେଞ୍ଚେ ବଢ଼େଇ ଦିଅନ୍ତି ମୋର ଗ୍ରାସ ପାଇଁ ଆଉ ତାଗିଦ୍ କରନ୍ତି—

: ଆରେ ଯା ଶୋଳପଡ଼ । ତତେ ଶଳା କିଏ ଉଠିବାକୁ କହିଲା । ତୋ'ର ଭୁଙ୍ଗୁଡ଼ି ମରା ଗହନ ନିଦକୁ ସୁରକ୍ଷିତ କରିବା ପାଇଁ ଆମେ ଏଠି ମହଜୁଦ୍ । ଯେମିତି ଠିଆ ହେଇ ଆଖିଖୋଲି ସମସ୍ତଙ୍କୁ ଚାହିଁବୁ ପଶୁପକ୍ଷୀ ମଣିଷ ଶ୍ୱାପଦ କାହାରି ସ୍ୱର ଶୁଣି ପାରିବୁ ନାହିଁ ।

ମନ୍ଦିରର ଘଣ୍ଟା, ଝାଞ୍ଜ, ମୃଦଙ୍ଗର ତରଙ୍ଗ କି ପଶାପାଲିର ହେଣ୍ଟା କିଛି ଯେମିତି ଏଇ ବ୍ୟୂହର କଯୋଦ୍ଧା କାନକୁ ନ ପହଞ୍ଚେ । ଆଉ ତାର ସମ୍ବିତ୍ ନ ଫେରେ ।

ଆଉ ଗୋଟାଏ ପାଖରେ ଛଅ ଜଣ ସ୍ତ୍ରୀ ଲୋକ ବସି ରୂପା ଗୁଆ କାତିରେ ଠୁକୁ ଠୁକୁ ପାନ ଖଇର ଆଉ ଗୁଆ ରଗଡ଼ୁଛନ୍ତି । ପାନ ଭାଙ୍ଗୁଛନ୍ତି । ଅନୁନାସିକ ସ୍ୱରରେ ବୋହୂ କାନ୍ଦଣା ଆଉ ତା' ସାଙ୍ଗକୁ ଫିଲମ୍ ଗୀତ ବି ଗାଉଛନ୍ତି । ଅକାରଣରେ ହସି ହସି ଗଡ଼ି ଯାଉଛନ୍ତି । ଆଉ ତାରିଫ୍ କରି ଲାଗିଛନ୍ତି ସେମାନଙ୍କୁ ଖଟଣୀ ଦେଇଥିବା ଅଭିଜାତ ପୁରୁଷ-ପୁଙ୍ଗବମାନଙ୍କୁ ଯୋଉମାନେ ଏବେ ମନ୍ତ୍ରୀ, ସାମ୍ବାଦିକ, ବ୍ୟବସ୍ଥାପକ ବଡ଼ ବଡ଼ ଯନ୍ତ୍ରୀ । ସମ ଜପଡି ଯାହାଙ୍କ ଦେହ ଲଗା ବିଳାସିନୀ ଭାବରେ ମୁକୁଳିର ପାଇଛନ୍ତି । ଯେମିତି ମୁଁ ତାଙ୍କଆଡ଼େ ଚାହିଁଚି ସେମାନେ କୃତ୍ରିମ ରାଗରେ ଦର ଦର ହସି ଆଖି ତର୍ରାଟି ମତେ ଚମକଉଚନ୍ତି ।

ଃ ଇଠରେ ବାଗୁକ, ତତେ ତ କାମ କରି ଆସେନା । କଥା କହି ଆସେନା । ଲେଖି ଆସେନା କ ପଢ଼ି ଆସେନା । ତୁ ପୁଣି ପ୍ରେମ କରିବା ଆଉ ରକ୍ଷା ଠାଣିରେ କ'ଣ ଆମକୁ ଶୁଝୁଚୁ ? ପ୍ରେମ କରିବା ଅପୁସ କରିବା ଖ ମାଙ୍କ ଦାରଆଣୀଙ୍କ ସୁବର୍ଣ୍ଣ ଅନ୍ତପୁରର ହାରେମ୍ ସଜାଡ଼ିବା ଖାଲି ଆମର ମାଲିକଙ୍କୁ ସୁହାଏ । ତୁ କଏ ବ୍‌ବେ ! ନେ ନେଏଇଠି କଗଡ଼ରେ ଅଫିମ ଟେଳାଏ ଅଛି । ସେଇଥିରୁ ନଖରେ ଗମ୍ଭୀର ପାନମଘଲା ସାଙ୍ଗରେ ମିଶେଇ ଟିକେ ଟିକେ ପାକୁଳି କର । ଘୁମ ଆସିପିବ । ସେ ଇପଢ଼ିବୁ ଚନ୍ଦ୍ରକାନ୍ତ ନଦ । ତତେ ମରଣ ହଉନରେ ବାନ୍ଧାପିଆ । ଆମେ ଯାଇ ଏଇନା କୋଉ ପଲଙ୍କରେ ଅଗୁରୁ ଚନ୍ଦନ ମଖି ଦେଇ ଆରାମରେ ପହଞ୍ଚ କରୁଥାନ୍ତୁ । ତୋର ଯୋଗୁଟର ନିଜ୍ଞଛଣା ଏଇଠି ପହରା ଦେଇ ତତେ ଜଗିଚୁ ମାସ ମାସ ବରଷ ବରଷ । ପୂରା ଯୁଗଟାଏ ହବପରା ।

ଆଉ ଗୋଟେ ଟାଙ୍ଗରେ କର୍ମାନନ୍ଦ ଆଉ ନରହରଙ୍କ ପହରା । ସେମାନେ ସତ୍ୟସାଇ ବଙ୍ଗଳା ନଭେଲ୍ ଆଉ ବୁକ୍ ସର୍କୁଲର ଇତ୍ୟାଦି ମାରଣାସ୍ତ୍ରରେ ଭୂଷିତ ।

ମୋ ପଶ୍ଚାତରେ ଆଉ ଗୋଟାଏ ଘରେ ବସିଚନ୍ତି ଠାକୁର ହେଲେ ତିନି ଚାରି ଜଣ ଗାଉଁଲି ମଣିଷ । ପ୍ରାୟ ଏକବସ୍ତ୍ର । ସେଇଥିରୁ ଜଣେ ମୋର ପିଲାଦିନର ସାଙ୍ଗକୁ ଚିହ୍ନି ପକେଇଲି । ଘାରେ ଭଲ ପାଠ ପଢୁଥିଲା । ବୁଦ୍ଧିଆ । ମାନ୍ଥ ମଞ୍ଜି ପରି ଅକ୍ଷର । ପଇସା ନଥିଲା ବୋଲି ଉପରକୁ ପାଠ ପଢ଼ି ପାରିଲାନି । ବଡ଼ଲୋକ ହେଇ ପାରିଲାନି । ସେଇ ଲୋକଟା ଏବେ ପୁରୋ-ହିତଗିରି କରୁଚି । ତାର ସାଙ୍ଗ କେଉଟ ମଦନ ବି ଆସିଚି । କାମ ଧନ୍ଦା ଆଉ କିଛି ନାହିଁ । ତା ମୁହଁରେ ମଳି ନେସି ହେଇଚି । ଗୁଣ୍ଡରେ ଓ ପିଞ୍ଜରାରେ ଆଷାଢ଼ ବାଦଲର କଜଳ ନେସି ହେଇଚି । ବାକି ଲୋକ ବି ସେମିତି ଫାଙ୍କା ପେଟ ରୋଗିଣା ଫସଲ ମଣିଷ ।

ଃ କରେ ଲୋକ ତୁ ଏଠିକି କେମିତି ଅଇଲୁ ?

ପଶୁରିଲବେଳକୁ ସେ କହୁଚି—

ଃ ଆମକୁ ପରା ଏଇ ଖାଦାମା ମିଳୁଚି । ଏଇ ବ୍ୟୂହ ଭିତରେ ତତେ ଜଗିବୁ । ତୁ ଯେମିତି ନିଦ ନ ଭାଙ୍ଗୁ, ଠିଆ ନ ହଉ, କାହାରିକି ନ ଗୁହୁଁ ।

ମାଳିକ କହିଛି ଯେ ଯିମିତି ଗାଁର ସଭିଏଁ ସବୁଦିନେ ସମାନ ଭାବରେ ଉଦାର ହୋଇ ଅଟରଗଡ଼ ଦର୍ଶନରେ କବଳିତ ହୋଇ ଆକାଶକୁ ଆଉ ଆଖଣ୍ଡଳମଣିକୁ ଯାବତ୍ ଚନ୍ଦ୍ରାର୍କେ ଚାହିଁ ରହିଥିବେ ସେତେ ବ ସେଇ ଏକାଗ୍ର ସାଧନାରେ କାବୁ କରିବାକୁ ହବ । ପୁଣି ଦୁଧ ମହୁ ସାମ୍ରାଜ୍ୟର ପ୍ରତିଶ୍ରୁତିର ବାହକ ଏଇ ନେତା କେଇଟିଙ୍କି ସଲାମ୍ କରୁଥିବା ଆମେ ସମସ୍ତେ । ସେଇ ଦାରିଦ୍ର୍ୟର ବୈରାଗ୍ୟ ବିଳାସ ଆମ ପାଇଁ ସଜଡ଼ା ହୋଇଛି । କ'ଣ ଭାବରୁରେ ଅର୍ବାଚୀନ ବେପରୁଆ ବିସ୍ଫୋରକ ଛତରଖିଆ ମଣିଷ । ଜାଣିପାରୁନୁକି ଚତେ ଓଟଳା ହଉଛି ଯେମିତି ତୁ ବେଙ୍ଗଳା ପଡ଼ାରୁ ଖସି ନ ଯାଉ । ଯା ଯା ସିଧା ଶୋଇପଡ଼ । ନଇଲେ ମାଲିକମାନେ ଯଦି ଦେଖିବେ ଯେ ତୁ ଉଠି ବସି ଆମ ସାଙ୍ଗରେ ଖୁସିବାସି ହଉଚୁ, ସପ୍ତାହକରେ ଦିନେ ମିଳୁଥିବା ରେସନ୍ ପନ୍ଦର ଦିନରେ ଥରେ ମିଳିବ । ଆଖି ମୁଜୁରୁ ନା ଦେଖିବୁ ଏଇନେ ।

ଆଉ ମୋର ସାହସ ନ ଥିଲା ଭୁଲିରୁଲି ଦେଖିବା ପାଇଁ କିଏ ସବୁ ପୁଣି ଜାଗ୍ରତ ଖେଳୁଆଡ଼ ଯୋଦ୍ଧା ମତେ ଘେରି ଏଇ ଉନ୍ମୁକ୍ତ ମନ୍ଦିର ବେଢ଼ାରେ ସର୍ପଶଯ୍ୟା ରଚନା କରିଛନ୍ତି, ଯା'ର ମଧ୍ୟ ଭାଗରେ ମୁଁ ଅନନ୍ତ ଶୟନ କରିବାକୁ ବାଧ୍ୟ । ଅବଶ୍ୟ ମୁଁ ଯେତେବେଳେ ଆଖି ଖୋଲି ଚାହିଁଚି ସେତେବେଳେ ମନ ଖୋଲି ହୋ ହୋ ହୋଇ ସୁର ଲହରୀ ତାଳ ଲୟ ସବୁ ଖଞ୍ଜି ବେଦମ ହସିଚି । କିନ୍ତୁ ଜାଣି ପାରିଲି ନାହିଁ ଯେ ଏଇ ବିକଟା ହସ କାନରେ ପଡ଼ିଲାବେଳେ କାହିଁକି ଶ୍ରାବଣ ମେଘ ପାହାଡ଼ ଚୂଡ଼ାରେ ମୁହଁ ଲଦି ଅସରା ଅସରା କାନ୍ଦୁଥିବା'ର ଧ୍ୱନି, ବେଳା ବିଳାପର ଧ୍ୱନି ଖାଁ ଖାଁ । ଗଛ ବୁଦା ହୀନ ମରୁପ୍ରାନ୍ତରର ଆଗ୍ନେୟ ପ୍ରଶ୍ୱାସ ପରି ହତାଶାର ଧ୍ୱନି ମତେ ଆତଙ୍କିତ କରିଛି । ଭାରି ଆଶ୍ଚର୍ଯ୍ୟ ଯେ ଏଇମାନଙ୍କ ଭିତରେ ମୋର ହସ ଆଉ କାନ୍ଦର ସ୍ୱର କେମିତି ସମଭାବରେ ବିପନ୍ନ । ଜୁହାର କରିବା ପାଇଁ ଆଉ ବିଧୁଆ ମାରିବା ପାଇଁ ହାତ ଉଠିବାର ଭଙ୍ଗୀ ମୁଦ୍ରା କ'ଣ ସମାନ୍ ଏମାନଙ୍କ ଜଗତରେ ।

## ।। ୩ ।।

ସକାଳ ହେଲା ବେଳକୁ ମୋ ଉପରେ ପିଙ୍ଗା ହୋଇଥିବା ତାର ଜାଲ ଆଉ ତ ନଥିଲା । ମୁଁ ଚୈତନ୍ୟ ଫେରି ପାଇଚି । ସମୁଦ୍ର କୂଳରେ ମାଇଲ୍

ମାଇଲ୍ ଧରି ବାଲି ଗାଲିଚା ଉପରେ ଉହୁଁଙ୍କି ଉପରକୁ ଦେଖିଲି ବେଳକୁ ଚାରିଟି ଟେଙ୍ଗା ନଡ଼ିଆ ଗଛ ମତେ ଅଧା ଆଲୁଅ ଅଧା ଛାଇରେ ବାଣ୍ଟିବାରେ ଲାଗିଚନ୍ତି, ଯଦିଓ ଖୁବ୍ ଉପରୁ । ବାପ୍ସା ଚଢ଼େଇ ବସା ଦି'ଚାରିଟା ଓହଳି ଝୁଲୁଚି । ଉଠି ବସି ପଡ଼ିଲି । କେମିତି ଲାଗିଲା ପାଖରେ ଜଣେ କିଏ ଠୁକୁ ଠୁକୁ ଚାଲିରେ ଚଳପ୍ରଚଳ ହଉଚି । ଦେଖିଲି ଗୋରା ରଙ୍ଗର ଅନେକ ବୟସ ଖସି ଯାଇଥିବା ବୁଢ଼ୀଟିଏ ଠିଆ ହୋଇଚି । ଆଉ ମତେ ଚାହିଁ ଚକୁଆ ପାଟିରେ ମୁରୁକ ମୁରୁକ ହସୁଚି । ଆଖି ବୁଢ଼ା କିନ୍ତୁ ତାଙ୍କର ଭାରି ଉଜ୍ଜଳ । ମତେ ଲାଗିଲା ଯେମିତି ମୁଁ କୋଉ ଯୁଗରୁ ତାଙ୍କୁ ଚହ୍ନିଚି । ତାଙ୍କର ଦୃଷ୍ଟି-ରେଖା ଏଇ ସକାଳର ତରୁଣ ସୂର୍ଯ୍ୟର ମହୁଆ ଟୋଲଟି ଆଲୁଅ ପରି, ଜହ୍ନର ଚହଲୁଥିବା ଥଣ୍ଡା ମୟୂଖ ତରଙ୍ଗ ପରି ଆପଣାର ଲାଗୁଚି । ମ ଟଁକୁ ଟଳି । ବୁଢ଼ି କହୁଚି—

: ହଇରେ ପୁଅ ବହୁତ ଡେରିରେ ଆସିଲୁ । ସମସ୍ତେ ତ ଖାଇପିଇ ଗଲେଣି । ତୁ ହତଭାଗା ଖାଇବୁ କଅଣ । ମୁଁ ଆଶ୍ଚର୍ଯ୍ୟ । କିନ୍ତୁ ବୁଢ଼ି ଚା'ଲିଲନି ।

: ଦେଖ୍ ଦେଖ୍ ସେଇ ବଙ୍ଗଳା ଆଡ଼କୁ ଦେଖ୍ । ମୁଁ ଚାହିଁଲି । ସତରେ ଖୁବ୍ ଖଳପଳ ଲୋକବାକ ଖିଆପିଆ ଆୟୋଜନର ଚିହ୍ନ ସରି ଯାଇଚି । ସେଠାକୁ ଯାଇ ପଚାରିଲି ବଙ୍ଗଳା ଚୌକିଦାରକୁ ସେ କ'ଣ ହଉଥିଲା କି ଏଠି ?

ସେ କହିଲା —

: ସବୁଠୁଁ ବଡ଼ ଇଞ୍ଜିନିୟର୍ଙ୍କ 'ମା'ଙ୍କ ଶ୍ରାଦ୍ଧ ପତର ପଡ଼ିଥିଲା । ସେଠିକି ବଡ଼ ବଡ଼ ଠିକାଦାର ମାନେ ଆଉ ହଜାରେ ଶ୍ରେଷ୍ଠ ବଡ଼ ହାକିମ ହୁକୁମା କାହିଁ କାହିଁ ଦୂରରୁ ଆସିଥିଲେ । ଖୋଦ୍ ମନ୍ତ୍ରୀ ପରଶୁ ଥିଲେ । ଚଉକସ୍ ଭୋଜି ହେଲା, ହେଲେ ବାବୁଙ୍କ ପକେଟରୁ ଗୋଟେ ହେଲେ ପଇସା ଖର୍ଚ୍ଚ ନାହିଁ । ଯେତିକି ଭୋଗ ହେଲା ସେତିକି ଅସଲ ଅସଲ ଦରବ ଏଠୁଁ ବୁହା ହୋଇ ସାହାବଙ୍କ ଘରକୁ ରାଜଧାନୀ ଗଲା । ପଞ୍ଚତ୍ୱଗତ ମାତୃକାଙ୍କ ପଞ୍ଚପ୍ରାଣ ପିଣ୍ଡଶ୍ରାଦ୍ଧରେ ପରିତୃପ୍ତ ହୋଇଗଲେ ଅଧସ୍ତନ କୁନି ହାକିମ

ଠିକାଦାରଙ୍କ ଶ୍ରଦ୍ଧା ଦାନ ଷୋଷଣରେ । ଯେମିତ ମା ଉଧାର କରି ପୁଅକୁ ଜନ୍ମ କରିଥିଲା ଗରିବ ଗୁରୁବାଙ୍କ ପଇସାରେ କାନ୍ତରାଚି ଠିକାଦାର ପଇସାରେ ଶତକଡ଼ା ଶହେ ଉଧାର ନୈବେଦ୍ୟରେ ଆତ୍ମାକୁ ପ୍ରଶାନ୍ତ କରିବ ବୋଲି – ପରିତୃଷ୍ଟ ଚକୁଣୀ ଆତ୍ମ ଟି କହୁଥିବ—

: ରେ ବାବୁ, କେତେ ପରିବାର କେତେ ଗୁଣର ପୁଅ ଜନ୍ମ କରିଥିଲି । ଗୃହାରେ ବ ପା ମାଆଙ୍କୁ ମନ୍ତ୍ରୀ ଠାକୁର ସମେତ କଣା ଯାଇପାରେ, ଏ ଗହନ କଥା କେମିତି ଜାଣିଲୁ । ମୋଟା ମୋଟି ଠିକାଦାର ଅଧା ପାଠୁଆ ସମ୍ରାଟମାନେ ଭଗବାନଙ୍କ କୃପା ଥିଲେଇଁ ଭାଗ୍ୟରେ ଜନ୍ମନ୍ତି । ମୁଁ ନିଶ୍ଚିତ ଭାବରେ ତୋର ସେଇ ଅପୂର୍ବ ଭାଗ୍ୟଶାଳୀ ମାତା ଧରିତ୍ରୀ । ତୁ ବାପା ମୋର ଚଉଦ ପୁରୁଷ ଏଇ ମାର୍ଟରେ ଉଦ୍ଧାର କର ।

ବୁଢ଼ୀଟି ଏଇ ଉକ୍ତିକୁ ସମର୍ଥନ ଜଣେଇଲା ପରି ଆଖି ଓ ଓଠରେ ସରୁ ହସର ପ୍ରଲେପଟିଏ ମାଖି ଦେଲା ବେଳେ କିଛି ଦୂରରେ ଛଗନ ଦାଶ ଆଉ ଶନତ୍ର ଦାଶ୍ କୋଳା କୋଳି ହଉଥିବାର ଦେଖି ମୁଁ ତାଙ୍କର ଆଡ଼କୁ କିଛିଟା ଆକର୍ଷିତ ହେବା କର୍ତ୍ତବ୍ୟ ମନେ କଲି ।

ମତେ ସେ ଦୁହେଁ ଝାଉଁବଣ ଭିତରେ ସାନ ଚଉଖଟିଏ ପଖକୁ ଡାକି ନେଲେ । କହିଲେ—

: ବସ ବାବୁ ବସ । ତମେ ତ ଆମର ବନ୍ଧୁ । ତମେ ଏମିତି ଆଖି ତରାଟି ଆଶ୍ଚର୍ଯ୍ୟ ପରେ ଆଶ୍ଚର୍ଯ୍ୟ କାହିଁକି ହେଇ ଯଉଚ ? ଦେଖୁନ ଏଇ ବିସ୍ତୀର୍ଣ୍ଣ ବେଳାଭୂମି, ଏଇ ମହୋଦଧିର ସହସ୍ର ତରଙ୍ଗର ଉଚ୍ଛ୍ୱାସ । ଯାହାକୁ ମନ୍ଥନ କରି ଅମୃତ ବି ବାହାରିଥିଲା ହଳାହଳ ବି ବାହାରି ଥିଲା । ସବୁର କନ୍ଟ୍ରାକ୍‌ଟରମାନେ ବିଶ୍ୱକର୍ମା ଠିକାଦାର ତ ସେଇ ଯିଏ ବସିଚି ଦେଉଳ ଭିତରେ ଏଡ଼େ ଏଡ଼େ ଦି'ଟା ପଲକ ପଡୁନଥିବା ଆଖିକୁ ଦୂରେଇ । ହେଲେ ଆମେ ଦି'ଜଣ ଆମ ଠିକାଦାର—ମାଲିକ, ଆମ ପ୍ରଭୁ ମିଳିମିଶି ଆଖିମିଟିକା ଦେଇ ଖେଳୁଚୁ । ପ୍ରମାଣ କରୁଚୁ ଯେ ଏଇ ସଂସାର—ତୋର ଏଇ ଖୁଜୁ ବୁଜୁ ଲାଳିତ୍ୟରେ ଆମେମାନେ ସବୁ ଶିଖି ମନାଇଁ ବେଶ୍ ଉଚ୍ଚାଟ ଅଛୁ, ସବୁ ସଲାମତ୍ ଅଛୁ । ରହିବୁ ମଧ୍ୟ । ଦେଖ୍ କଥାଟା ସଫା । ଆମକୁ ଏମିତି

ହଠାତ୍ ଆତସ ବାଜି ଲଞ୍ଚରେ ହୁଳା ଉଠୁଥିବା ରକେଟ୍ ବାଣ ପରି ଆକାଶ ମୁଖୀ କଷ୍ଟୁ କଷ୍ଟୁ କ୍ଷମତା-ପାଗଳ ବ୍ୟକ୍ତିଙ୍କର ଉପଗ୍ରହ କରିବାକୁ ହଉଚ । ସେଗୁଡ଼ାକ ଅକାଳରେ ତୋ କଥ ଫୁଟି ମଉଳ ଯିବେ । ହେଲେ ଆମେ ଦ'ଟା ଥିବୁ ଛଗନ୍ ଆଉ ଶନତ୍ । ଆମକୁ ତମେ ଯିଏ ଯେତେ ଧରବୁଡ଼ା କୁହ, ଫୁଁଫାଁ ସ୍ ଲହୁଣିଦିଆ ଗୁଲିବାଜି କଥାରେ ସମସ୍ତଙ୍କ ଲାଙ୍ଗୁଡ଼କୁ ବଙ୍କା କରି କେମିତି ଉଠିବାକୁ ହୁଏ ତା କରୁଚୁ ବୋଲି ଯେତେ ଠାହୁଲି ଠାପରା କର, ଚିନ୍ତା ନାହିଁ । ସଂସାରରେ ଏମିତି ଚଳେ । ହେଲେ ଲୁଣ୍ଡି ବାନ୍ଧିବାକୁ ଜାଲରେ ଗୁଡ଼େଇ ରଖିବାକୁ ଦରକାରକ ତ ପଡ଼େ, ତମେ ଯେଉଁଠା ଚଇତନିଆଁ ଲଗାମଛଡ଼ା ସିଧା କୁହାରେ ଧୁରନ୍ଧର ବେକ୍ସବ୍ରିଙ୍କୁ । ଆମେ ତ ସେଇଆ କରିଥିଲୁ । ହେଲେ ଜଣା ପଡ଼ୁନି ତମ ଦିହରୁ ଏ ଜାଲଟା ପିନ୍ଧେଇଲା କିଏ ?

ମୁଁ କ'ଣ କହିବି କହିବି ବୋଲି ଭାବୁଚି ଏତିକିବେଳେ ବୁଢ଼ିଟି ପଛରୁ ଆସି କେତେବେଳୁ ଠିଆ ହୋଇ ଆମର କଥା ଶୁଣୁଚି । କହିଲା—

: ଇରେ ପିଲାଏ କେହି କାହାକୁ ଚିହ୍ନି ପାରୁନ । ହେଲେ ମୁଁ ତୁମକୁ ଚିହ୍ନା କରେଇ ଦଉଚି । ଦେଖିଲ ଦେଖିଲ ମୋ ମୁହଁ, ମୋ ଆଖି, ମୋ ନାକ, ମୋ ଓଠରେ ଛାପ ଦେଖ । ମୁଁ ହଉଚି ତମକୁ ପେଟରେ ଧରିଥିବା ମା । ଏଇ ସମୁଦ୍ର ପରି, ଏଇ ଆକାଶ ପରି ମା, ଏଇ ପାଣି ପବନ ପରି ମା । ମୋ ସ୍ତନର ଚୁଚୁକରେ ଖାଆଇଥିବା ଗର୍ଭଧାରିଣୀ । ମୁଖ୍ୟମନ୍ତ୍ରୀ ଭାବଚୁ ମୁଁ ତା'ର ମା, ଠିକାଦାର ହାକିମ ଭାବଚ ମୁଁ ଖାଲି ତା'ର ମା । ତମେ ତିନି ଗୁଣ୍ଡାଟା ବି ଭାବଚ ମୁଁ ତମର ମା । ତମେ ଯେଉଁଠା ଏଇ ହତଭାଗ୍ୟକୁ ଜାଲ ପକେଇ ଗୁରୁପାଖେ ଶିକୁଳି ଜଗୁଆଳି ଲଗେଇ ଘାଏଲା ହୃଦରେ ଖୁଆଉଥିଲୁ ପରା । ଏଡ଼େ ପାରିବାର ପଣିଆ । ହେଲେ ଦେଖିଲତ ସେ ଉଠି ପଡ଼ିଲା । ଠିଆ ହେଇ ପଡ଼ିଲା । ସବୁଆଡ଼େ ଖେଦିଗଲା । କାହିଁ ତା' ଦେହରେ ଜାଲ କାହିଁ ? ଦାଗ ବି ନାହିଁ କଡ଼ା ଆଉ ଫାଶର । ତା' ଗୋଡ଼ରେ ଶିକୁଳି କାହିଁ ?

ଛଗନ୍ ଶନତ୍ ଏଇ ଭିତରେ ଖସି ଯାଇଚନ୍ତି ।

ହିଁ ହିଁ ଆମେ ଜାଣୁ । ସବୁ ଏଇ ବୁଢ଼ିର କାରସାଦି । ଏଇ ତାର ଜାଲ ଖୋଲି ଦେଇଛି ।

ବୁଢ଼ି ଏବେ ସିଧାସଳଖ ଆମ ସାମ୍ନାରେ ଠିଆ ହୋଇପଡ଼ି କହିଲା—

: ହଇରେ ସବୁଗୁଡ଼ାକ ତ ଅଫିମିଆଁ । କାହିଁକି ତେଲ କଡ଼ାକଡ଼ି ହଉଛ । କାହିଁକି କା'ର ଶବଚ୍ଛେଦନ କରୁଛ । ଆଗରେ ମୁଣ୍ଡ ବଳୁଛ ଆଉ ପଛରେ ଖସେଇ ହଉଛ । ଏଇ ଅଳକୂଳ ନଥିବା ଲହଡ଼ି ଭଙ୍ଗା ସାଗର ଭିତରେ ଲୋପ ହୋଇଯିବ । ହାତଗୋଡ଼ ମିଳିବନି । ଖୋଜ ପରିଚୟ ଲୁଚିଯିବ । ହେଲା ଦେଖୁନା ଦେଖ ଦେଖ ।

ଏତିକି କହୁ କହୁ ଯେମିତି ମୁଁ ଆଉ ଛଚନ୍ ଶନର ଡାକବଙ୍ଗଳା, ଝାଉଁ ବଣ ନଡ଼ିଆ ଗଛ, ସମଗ୍ର ବେଳାଭୂମି, ପ୍ରାସାଦ, ହୋଟେଲ, ବଜାର ବାପ୍‌ଣୀ ସେଇ ଅନ୍ଧକାରୁ ଉବସିନ୍ଧୁର ଗର୍ଭ ଭିତରକୁ ନିକ୍ଷିପ୍ତ ହୋଇ ସାରିଥିଲେ । କିନ୍ତୁ କାହିଁକି କେଜାଣି ଖୁବ୍ ଗୋଟାଏ କୁହାଟ ମରା ହସର ବିସ୍ଫୋରଣରେ ମୋର ଗ୍ଲାସ୍ ଫାଟିଗଲା, ଆଉ ମୁଁ ସେଇ ବୁଢ଼ିଟିର କୋଳରେ ଲୁଚିଯାଇ ଭେଁ ଭେଁ କରି କାନ୍ଦ ଉଠୁଥିଲି ।

ଝୁକ୍ କରି ନିଦ ଉଭେଇଗଲା । ଆଖିରେ ତନ୍ଦ୍ରା ବିଲ୍‌କୁଲ୍ ନାହିଁ । ସାତ ପେଗ୍ ରମ୍‌ର ନିଶା ଉତୁରିଲା ପରେ ଏଇ ସୁନ୍ଦର ବିଚକ୍ଷଣ ସ୍ୱପ୍ନଟି ପକ୍ଷରୁ ଓହରି ଗଲା ପରେ—ଏଣିକି ମୁଁ କଏ ବୋଲି ଜାଣିବା ପଚାରିବା ଅନାବଶ୍ୟକ ।

କାରଣ ମୁଁ କେବେ ନଥିଲି, ଏବକୁ ନାହିଁ କି ଆଗକୁ କେବେ ନଥିବ । ସପ୍ତରଥୀଙ୍କ ଘେରିଟିହିଁ ସତ୍ୟ । ମୁଁ ମିଥ୍ୟା । ଜଗତ୍ ମିଥ୍ୟା ।



# କେମିତି କିଏଅଛନ୍ତି !

: କ'ଣ ଉମର ଆଉ ତ ଦେଖା ନାହିଁ !

ସେଇ ପଦକ କଥା ରଟିହେଉଛି ଲୋକଙ୍କଠା ଯାକୁ ଦେଖୁଛି । ତା' ଚଉକ ଦାଣ୍ଡରେ କି ସାମନା ରାସ୍ତାରେ ଗଲ ଅଇଲ ଲୋକ ସିଏ ହାବୁଡ଼ରେ ପଡ଼ନ୍ତି ସମସ୍ତଙ୍କୁ ସେଇ ଗୋଟେ ପ୍ରଶ୍ନ । ଚାଲି ଯାଉଥିବା ଲୋକ ଦଣ୍ଡେ ଥମିଯାଇ ତା' ଆଡ଼କୁ ଚାହାନ୍ତି ଆଶ୍ଚର୍ଯ୍ୟରେ । ଚିହ୍ନା ନାହିଁ, ପରିଚୟ ନାହିଁ ଯାହାକୁ ପାଖରେ ଦେଖନ୍ତି, ପଚାରି ଦିଅନ୍ତି । ଜଣେ ଜଣେ ମଧ୍ୟ କହି ଦିଅନ୍ତି, କ'ଣ ମଉସା ? ମତେ ଡାକିଲ କି ? ସିଏ କା' ପ୍ରଶ୍ନର ଉତ୍ତର ଦିଅନ୍ତିନି । ପ୍ରଶ୍ନଟା ପଚାରି ସାରିଲା ପରେ ଦ୍ୱିତୀୟ ବାର ତା' ଆଡ଼େ ଚାହାନ୍ତିନି । କାଚ ବାଟୁଲି ପରି ନିଷ୍ପଳ ନିର୍ବେଦ ଆଖି । ଲାଗେ ଅନବରତ ନିଜ କଲିଜା ଭିତରକୁ ଚାହିଁଥାନ୍ତି । ବାହାର ଦୁନିଆଁରେ କ'ଣ ଘଟୁଛି, ସିଏ ନିର୍ବିକାର । ଦେହର ଚମଡ଼ା ଶୋଥା ପଡ଼ିଯାଇ ଥିଲେ ବି ତାଙ୍କ ଯୌବନରେ ସେ ଟକ୍ ଟକ୍ ଗୋରାତକ୍‌ର ସଳଖ ବୁନିଆଦ୍ ମଣିଷଟିଏ ନିଶ୍ଚୟ ଥିଲେ । ଏବେ ଧୋବ ଫର ଫର ବାଳ ଚିକ୍କଣ ହୋଇ ପଛକୁ ମାଙ୍ଗ ଭାଙ୍ଗି କୁଣ୍ଡା ହୋଇଛି । ଲମ୍ବ ମୁନିଆ ନାକ । ରଜ ପରି ଆରାମ ଚୌକିରେ ଗୋଡ଼ ଉପରେ ଗୋଡ଼ ଦେଇ ବସିବାର ଠାଣି ବଜାୟ ରଖିଛନ୍ତି । ବଗ ପକ୍ଷୀ ପରି ଧୋବ ଶାନ୍ତିପୁରୀ ଧୋତି ସାଙ୍ଗକୁ ନେଳିଆ ରଙ୍ଗର ସାର୍ଟିନ୍ ଫତେଇ ତାଙ୍କୁ ଲବନ୍ ମାନେ । କିଏ ସବୁଦିନେ ତାଙ୍କୁ ସଜବାଜ କରି ଏମିତି ସକାଳୁ ସକାଳୁ ପିଣ୍ଡା ଉପର ଆରାମ ଚୌକିରେ ବସେଇ ନେଇଯାଏ । ଚୌକି ବାହାରେ ମୋଡ଼ ମୋଡ଼କା ଶିଶୁ କାଠରେ ହାତଧାନ୍ତ ଗୋଲବସା ସଉକ ବାଡ଼ିଟା ଆଉଜି ଥାଏ । ବେଳେ ବେଳେ ସେ ଏଇ ବାଡ଼ିଖଣ୍ଡିକ ଭୂଇଁରେ ଏକ ନିର୍ଦ୍ଦିଷ୍ଟ ତାଳ ଜମକ୍ ଦେଇ ଠୁକ୍ ଠୁକ୍ କରି କରି କ'ଣ ଗୋଟେ ଧୂନ ଆବୃତ୍ତି କରୁ ଥାଆନ୍ତି । ସ୍ୱର ଫିଟେ ନାହିଁ । ହେଲେ ମଥା ଆଉ ଗ୍ରୀବାକୁ ସେ ଏମିତି ଠାଣିରେ ଲଡ଼ାନ୍ତି ଯେ ଲାଗେ ହଜିଲ ହଜିଲ ସ୍ୱକୀୟ

ନିର୍ବୋଳାପଣରୁ ସଙ୍ଗୀତ ଲହରୀଟିଏ ଯିଏ ଖୋଜି ଖୋଜି ପାଇପାଇଛନ୍ତି । ତାଙ୍କ ଓଠରେ ଏତିକିବେଳେ ହସ ପାଖୁଡ଼ାଏ ବିମ୍ବିତ ହୁଏ । କଦବା କେମିତି ନାଟିଆ ପିଲାପରି ଭ୍ରୂବଲ୍ଲୀଗୁଡ଼ିକୁ ନଚେଇ ମୁହଁରେ କଥକ ନାୟକର ଚେତେନା କେତେ ଭାବ ଉକୁଟାଇ ସେ ଆତ୍ମବିଭୋର ହେଲାପରି ଲାଗେ । କିନ୍ତୁ କଥା ପଦାଏ ଭିତରେ ସେଇ ଗୋଟେ ପ୍ରଶ୍ନ ସମସ୍ତଙ୍କୁ :—କ'ଣ ଆଜି ଦେଖା ନାହିଁ ? କିନ୍ତୁ କାହାଠୁଁ ଉତ୍ତର ପ୍ରତୀକ୍ଷା ନଥାଏ ।

ସେଦିନ ଦାଦା କେମିତି ଅଛନ୍ତି କହୁକହୁ ଅନନ୍ତବାବୁ ପଶି ଆସିଲେ । ହରିଶ୍ ଦାସ ଅଧ୍ୟାପକ ଘରୁ ବାହାରିପଡ଼ି କହିଲେ : ଦେଖୁଛନ୍ତି ତ ଦାଦା ବସିଛନ୍ତି ଲଉଞ୍ଜରେ ସେଇଠି ବଗିଚା ଭ୍ୟାଟ୍ ପାଖରେ । ଯାଆନ୍ତୁ କଥା ହେବେ । ଅନନ୍ତବାବୁ ଦାଦାଙ୍କ ପିଲାଦିନ ସାଙ୍ଗ, ସ୍କୁଲକଲେଜରେ ଦସ୍ତର ସାଙ୍ଗ । ଅବସର ନେଲେଣି ଦାଦାଙ୍କଠୁ ଚାରିବର୍ଷ ଆଗରୁ । ଘର ମେଳାପି ଖୁସି ବାସିଆ ମଣିଷ । ବରାବର ଆସୁଥିଲେ ଗପ ଜମଉଥିଲେ ଦିଜଣ ଯାକ । ସଂଧ୍ୟାବେଳେ ଟେପଲ୍ ଘୋଷାରି ଯୁଆନବେଳ ପରି କେତେ କୁଆଡ଼େ ଛଇଁତଗ ମାରୁଥିଲେ । ଯେଉଁ ଦିନଠୁଁ ଦାଦା ମୂକ ହୋଇଗଲେ ଖମ୍ବପରି ସ୍ଥାଣୁ ହୋଇଗଲେ, ଖାଲି ବସିରହିଲେ, ହଲିଲେନି କି ଚାଲିଲେନି ସେଦିନଠୁଁ ତାଙ୍କର ଏ ଆଡ଼େ ଯିବା ଆସିବା କମି ଯାଇଛି । ବେଳେବେଳେ ଓଠାଣି ହୋଇ ସାଙ୍ଗଟା ପାଖକୁ ଟଳେଇ ଆସନ୍ତି । ତାଙ୍କ ସାଙ୍ଗରେ ବସି ଏକତରଫା ଟୁପୁର ଟାପର ହୁଅନ୍ତି । ଦାଦା ଖାଲି ବଲବଲ ହୋଇ ଚାହିଁଥାନ୍ତି । କିଛି କହନ୍ତିନି କି ଉତ୍ତର ଦିଅନ୍ତିନି । ସେ ଦିନର ସାକ୍ଷାତ-କାର ଏମିତି ।

ଅନନ୍ତବାବୁ କହୁଛନ୍ତି : କ'ଣ କରେ ଅରି । କି କଥା ଏତେ ଭାବୁଛୁ । ପିଲାମାନେ ଚିଠିପତ୍ର ଦେଉଛନ୍ତି କି ନାହିଁ ? ଏ ବର୍ଷ କୁଆଡ଼େ ବିଲାତରେ ଭାରି ଶୀତ, ପୁଅ ଲେଖିଥିଲା । ତୋ ଝିଅତ ସୁଇଜରଲାଣ୍ଡରେ । ସେଠି ବି ଭାରି ବରଫ ପଡ଼ୁଥିବ । ଆଉ ପୁଅର କୋଇଲା ବ୍ୟବସାୟ କେମିତି ?

ଗଞ୍ଜରେ ତ ଭାରି ଦଙ୍ଗା ଗୋଳ ଲାଗିଛି । ଯିଏ ବି ଏତେ ଗୁଣ୍ଡ ଜଞ୍ଜାଳ ଗୁଣ୍ଡ କୁଆଡ଼େ ଆସି ପାରୁଥିବ । ହେଲେ ଭାଉଜ ଗଲାପରେ

ତୋର ତ ଭଗବାନ ସାହା । ସୁନା ମୁଣ୍ଡା ପର ଘର ହରେଶ୍ । ତୋର ସବୁ ଜଞ୍ଜାଳ ବୁଝୁଚ । ତୋର ତ ଏକା ଜିଦ୍ । ପୁଅ ବୋହୂଙ୍କ ପାଖରେ ରହିବୁନ । ତାଙ୍କ ପ୍ରାଇଭେସି ଆନନ୍ଦ ନଷ୍ଟ କରିବୁନ । ଆଇଡ଼ିଆଲିଷ୍ଟ ବୁଡ଼୍‌ବକ ହେଲେ କଥା କହୁନୁ କାଇଁକ ?

ଅରିନ୍ଦମ ଦଣ୍ଡେ ଅନନ୍ତବାବୁଙ୍କ ମୁହଁକୁ ଗ୍ଲହିଁ ପୁଣି ବାଙ୍କୁଲି ବାଡ଼ିର ଅଗରେ ଥିବା କୁକୁର ମୁଣ୍ଡକୁ ଏପଟ ସେପଟ ଲଡ଼ ଲଡ଼ କଲେ । ପଦେକଥା ନାହିଁ ।

ତାଙ୍କ କାନରେ ଫୁସ ଫୁସ୍ କରି ଅନନ୍ତବାବୁ କହୁଛନ୍ତି :

: ହେଇରେ ଭୁଲି ଯାଇଥିଲି । କାଲି ରେଳଷ୍ଟେସନରେ ବନକୁ ଦେଖିଲିରେ । ତୋ ବନ । ମନେ ପଡ଼ୁନକିରେ ବର୍ଷ୍ଠାଳି ମ ? ହାଣ୍ଡିପରି ଗୋଲ ବୁଲିଚ । ଛ' ଆଠ ପିଲାର ମା । କଫି ପିଉଥିଲି । କୋଉ ମୁକ ବଧିର ସ୍କୁଲରେ ପ୍ରିନ୍‌ସିପାଲ ଅଛି । ପଗ୍ଲରିଲି କେମିତି ଅଛ ? କହିଲା ଭଲ । ସ୍ୱରରେ ଦୁଷ୍ଟାମୀ ଫୁଟେଇ ଅନନ୍ତବାବୁ ପୁଣି କହୁଛନ୍ତି : ତୋ କଥା ମନେ ପକେଇ ଦେଲି । କହିଲି ଅରିନ୍ଦମ ତମକୁ ଝୁରୁଚି । ଖାଲି ଆରାମ ଚୌକୀରେ ଶୋଇ ଚବିଶ ଘଣ୍ଟା ଆଖି ବୁଜି ତମକୁ ଖୋଜୁଚି । କ'ଣ କହିଲା ଶୁଣିବୁ । କହିଲା 'ସତରେ ତାଙ୍କୁ କହିବେ ମୁଁ ଭାରି ମନେ ପକଉଚି । ଥରେ ମୋ ସ୍କୁଲ ଆଡ଼େ ଆସନ୍ତେନି । ତା' ମନ ଖରାପ ହବ ବୋଲି ତୋର ଦେହ ଅସୁସ୍ଥ କଥା କହିଲିନି । ସିଏ କିନ୍ତୁ ତୋ ନାଁ ଶୁଣିଲାବେଳୁଁ କେମିତି ଅନ୍ୟମନସ୍କ ହୋଇଗଲା ସତରେ ! ହଉ ତୁ'ତ କିଛି କହୁନୁ । ମୁଁ ଯାଏଁ ପୁଣି ଆସିବି । ତୁ ଯଦି ଡକେଇବୁ । ଅନନ୍ତବାବୁ ଅରିନ୍ଦମଙ୍କ ଡାହାଣ ପାପୁଲିକୁ ଟିପି ଦେଇ ଉଠିଲେ ବାହାରକୁ । ଏବେ ହଠାତ୍ ଅରିନ୍ଦମ ତାଙ୍କ ଆଡ଼କୁ ବୁଲି ପଡ଼ି ସେଇ ପ୍ରାଗୈତିହାସିକ ପ୍ରଶ୍ନଟି ପଗ୍ଲରି ଦେଲେ : କ'ଣ ତୋର ତ ଆଉ ଦେଖାନାହିଁ ?

ଏଇ ହିଡ଼ସୁଆ ବିବଶତା ବୁଝିବା ଲୋକ ଅନନ୍ତବାବୁ ଖାଲି ଦୀର୍ଘ ନିଶ୍ୱାସଟାଏ ପକେଇ ଗୁଣୁଗୁଣୁ ହେଇ ଆପେ କହି ହେଲେ । : ମୋର ଦେଖା ହଉଚି । ସମସ୍ତଙ୍କର ଦେଖା ହଉଚି । ହେଲେ ତୁ ତ କିଛି ଦେଖିବାକୁ ନାରାଜ୍ । ଆଖି ବୁଜି ବସିଲେ କେମିତି ଦିଶିବ ?

: ଭରି ହତାଶ ଲାଗୁଛି ଦାଦାଙ୍କୁ ଦେଖିଲେ । ହରିଶ୍‌ବାବୁ କହିଲେ । ଅନନ୍ତବାବୁ ଡାହାଣ ହାତ ଆକାଶ ଦିଗରେ ଉତ୍କ୍ଷିପ୍ତ କରି ଇସ୍ତାହାର ଦେଲାଭଳି କହିଲେ, "ସେ ଶଳାର କିଛି ହେବନି କି ହେଇନି । ଫିଲସଫର ଆକ୍ଟିଂ କରୁଛି !"

ଧୁଙ୍ଗାବନ ସମସ୍ତଙ୍କୁ ଜୁକୁଜୁକୁ ଚାହିଁକରି ମଜା ଦେଖୁଛି !

କହୁଛି କଣ ନାଁ—ଆଉ ତ ଦେଖା ନାଇଁ !

ଅନନ୍ତବାବୁ ଉଗଉଗ ଚାଲିଗଲେ ।

ଆଣ୍ଠୁଯାଏ ଲମ୍ବା ଖାକି ହାଫ୍ ପ୍ୟାଣ୍ଟ, ଦେହରେ ଗୋଟେ ଢିଲା ମିଲିଟାରୀ ସାର୍ଟ, ଆଉ ମୁଣ୍ଡରେ ନାଲି ଗାମୁଛାର ପଗଡ଼ି ଭିଡ଼ି ସାଇକେଲ ଚଢ଼ି ପିଣ୍ଡା ପାଖରେ ଦୁଧବାଲା ପହଞ୍ଚି ଗଲାଣି । ସାଇକେଲ ହ୍ୟାଣ୍ଡେଲ୍‌ରୁ ଚାରିଣ୍ଟ ଅଣ୍ଟା ମସ୍ତ ଜର୍କିନ ଝୁଲୁଛି । ଏଡ଼େ ପାଟିରେ କ୍ଷୀର ନିଅ ବୋଲି ଦିଥର ଉଚ୍ଚାରଣ କଲା । ଯେମିତି କେହି ନ ଶୁଣିଲେ ଗୋଟେ ସିଲଭର୍ ବଟା ଧରି ଉଠି ଆସିଲା ଅରବିନ୍ଦ ବସିଥିବା ଇଜି ଚେୟାର ପାଖକୁ । କହୁଛି : ବୁଝିଲେ ବାବୁ ଆଉ ବ୍ୟବସାୟ କରି ହେବନି । ସରକାରୀ କ୍ଷୀର କମ୍ପାନୀ ଯେତେ କ୍ଷୀର ପାଉଡ଼ର ମିଳୁଛି, ସେଥିରେ ଗାଁ ଗହଳିଙ୍କଠୁଁ କ୍ଷୀର ସବୁ ଠୁଳ କରି ମିଶେଇ ମେସିନରେ ଗାଢ଼ କରି ଜରି ପୁଡ଼ିଆରେ ବିକିଲେଣି । ତାଙ୍କ କ୍ଷୀର ଗନ୍ଧିଆ ହଉ କି ଛେନା ଚିଅ ସେଥିରୁ ନ ବାହାରୁ, ସିଏ ଏବେ ସହର ବାଲାଙ୍କୁ ସ୍ୱର୍ଗ ପରି ଲାଗୁଛି । ଆମେ ଗରିବ ଗୁଡୁବା କ୍ଷୀର ବାଲା । କୁଆଡ଼େ ଭେଜାଲ୍ ବିକୁଚୁ ! ମ୍ୟୁନିସିପାଲିଟି ହେଲ୍‌ଥ ଅଫିସର ମୁନାଫା ନ ଦେଲେ ଆମକୁ ଧରୁଛନ୍ତି । ଏବେ ଜାଣିଛ ନା ବାବୁ ଆମ ଗାଁରୁ ଫିଲମ୍ ବାଲା ପଚିଶି ତିରିଶ୍ ଗଜା ଟୋକିଆ ଆଉ ଝିଅ ବୋହୁଙ୍କୁ ମଟରରେ ମୋଟା ଟଙ୍କା ଦେଇ ସିନେମାରେ ମିଶେଇବେ ବୋଲି ନେଇଗଲେ । ପଇସା ମିଳିବ କ'ଣ ସେଥିରୁ ଚାରି ଛ'ଟା ଯୁଆନ ଝିଅ ଆଉ ଫେରିଲେନି । କୁଆଡ଼େ ମଲେ ଗଲେ ତାର ଠିକ୍ ନାହିଁ । କୋଉ ମନ୍ତ୍ରୀ ପୁଅ ସିନେମା ତିଆରି କରୁଛି ବୋଲି ପୁଲିସ ହାକିମ କେହି ଗାଁବାଲାଙ୍କ ଏତଲା କଥା କାନକୁ ନେଲେନି । ମଟର ପୁଣି ବ୍ଲାକ୍ ବାଲା ମଟରହୁଥିଲେ ଜର୍ସି ଗାଈ

କଣିବାକୁ । ବ୍ୟାଙ୍କ୍ ଋଣ ତିନିହଜାର ବ୍ୟବସ୍ଥା କରିଦେବେ ବୋଲି । ଆଜ୍ଞ ଦ ଗୃହିଜଣ ସାଇଭାଇ ଗଉଡ଼ଙ୍କୁ ପଚାରିଲ ସେମାନେ କମିତି ଋଣ ପାଇଲେ ବୋଲି । ବୁଝ ବୁଝୁ କଣ ନାଁ ତିନି ହଜାରେ ଟଙ୍କା । ଋଣରୁ ହଜାରେ ହାକିମ ଅଫିସର ବେଙ୍କବାଲାଙ୍କ ଖର୍ଚ୍ଚରେ ବାଣ୍ଟମାରିଣ ହୋଇଗଲା । ବାକି ଟଙ୍କାରେ ବେଙ୍କ ଯୋଉ ଫରେନ୍ ଗାଈ ଯୋଗେଇ ଥିଲେ ସେଗୁଡ଼ା ମାସେ ଭିତରେ ଦାନା ଚକଟା ଗୋଳମାଳରୁ ଠକ୍ ଠାକ୍ ମରିଗଲେ । ଏବେ ଲୋନ୍ ସୁଝିବାପାଇଁ ଭିଟା ମାଟି ବାସନ କୁସନ ନିଲାମ ହେଉଛି । କି ଯୁଗ ହେଲା ଇଏ ! ତମେ ପରା ବାବୁ ଏତେ ବଡ଼ ହାକିମ ଥିଲ, ଏ ସବୁ ଫନ୍ଦି ଫିକର କଥା ବୁଝୁନ ଟିକେ । କ'ଣ ଏଇମିତି ଦାରୁଭୂତ ପରି ବସିଛ ? ହୁଁ ଚୁଁ କରୁନ । ହଉ ତମେ ବଡ ହାକିମମାନେ ତ ଚରିବ ଗୁରୁବାଙ୍କ କଥା ଶୁଣି ନ ଶୁଣିଲା ପରି ମୁହଁ ବଙ୍କେଇ ଦିଅ । କୋଉ ନୂଆ କଥା । ଅଶନ୍ଦମ ଏବେ କ୍ଷୀର ବାଲାର ଗୋଡ଼ଠୁ ମୁଣ୍ଡପର୍ଯ୍ୟନ୍ତ ଗୃହି ଲଗିଚନ୍ତି । ପୁଣି କ'ଣ ମନ ହେଲା କେଜାଣି ହଉକ ବାଡ଼ ଗୋଡ଼ଟାକୁ ଟେକି କ୍ଷୀର କ୍ୟାନ୍ ଭିତରେ ପୂରେଇ ଠକ୍ ଠକ୍ କରିବା ଆରମ୍ଭ କରିଦେଲେ ।

: ଇଏ କ'ଣ କରୁଚ ବାବୁ ? ଏଇଟା କ'ଣ ଖାଦ ପାଣି ମାପିବା ଯନ୍ତ୍ରକ ? ମୋ କ୍ଷୀରରେ ଭେଜାଲ ନାଇଁ । ମୁଁ ପରା ଆଠ ବର୍ଷର ନାଗୁଆ । ଘର ଭିତରୁ ପୂଜାରୀ ପିଲା ବାହାରି ଆସି କ୍ଷୀର କ୍ୟାନ୍‌ଟା ଘର ଭିତରକୁ ଓଟାରି ନେଇଗଲା । କହିଆଲା : ଝିଅଟେ ଯା ଭରି ଭାଇ । ବଡ଼ ବାବୁଙ୍କ ଦିହ ମୁଣ୍ଡ ଭଲ ନାଇଁ । ତାଙ୍କୁ ବିରକ୍ତ କରନା । କ୍ଷୀର ବାଲା ପାହାଚ ଓହ୍ଲେଇ ସାଇକଲ ଚଢ଼ି ଆଗକୁ ମାଡ଼ି ଆସୁଥିବା ଦି'ଟା ବୁଲା କୁକୁରଙ୍କୁ ହଟାଇବା ପାଇଁ ବେଲ ଟିଣ୍ ଟିଣ୍ କଲା ବେଳକୁ ଶୁଣିଲା ବଡ଼ ବାବୁ ଆରାମ ଚଉକିରୁ ଉହୁଁ କି ସମଗ୍ର ଘଟଣାଟାକୁ ତେରା ତେରା ଆଖିରେ ପଖାଳି ଏତେ ପାଟିରେ ଚାଲିଉଚନ୍ତି ।

: କ'ଣ ତମରତ ଆଉ ଦେଖା ନାଇଁ ?

କ୍ଷୀରବାଲା ହତବାକ୍ ହୋଇ ତାଙ୍କୁ ଗୃହିଁଲ ଦଣ୍ଡେ, ଅଉ ବଜର ବଜର ହୋଇ ସାଇକେଲ ପେଲିଲା ଆଗକୁ ।

: ସବୁଦିନ ତ ଆସୁଚ ଦେଖୁଚ । ଆଉ କେମିତି ଦିଶନ୍ତା ? ସମସ୍ତଙ୍କୁ ଜଳକା କରିବ କି କ'ଣ !

ସଞ୍ଜ ନଇଁ ଆସୁଚି । ଅରବିନ୍ଦ ଏବେ କେଇ ମିନିଟ୍ ଇଜି ଚେୟାରର ପିଠି ଉପରେ ଭରା ଦେଇ ଘର କାନ୍ଥକୁ ମୁହଁ କରି ସଳଖି ହେଲେ । ପୁଣି ବାଙ୍କୁଲି ବାଡ଼ିଟାକୁ ଅଭିମନ୍ୟୁ ଚକ୍ରବ୍ୟୂହ ଭିତରକୁ 'ଏକଚଙ୍କ' ଘୂରାଇଲା ଭଳି ମଝିରୁ ଧରି ଚାରିପାଖ ଚକାଭଉଁରି ଖେଳ ବନାଠି ପରି ଘୂରେଇବାରେ ଲାଗିଲେ । କଳ୍ପିତ ଶତ୍ରୁସେନାର ଛତ୍ରଭଙ୍ଗ ହେଲା । ପୁଣି ସିଏ ଥକା ମାରି ଆରାମ ଚଉକି ଉପରେ ସାଷ୍ଟାଙ୍ଗ ହେଲେ । ଏତିକିବେଳେ ଗୋଟାଏ ନୂଆ ଚକଚକିଆ ଆମ୍ବାସଡ଼ର ଗାଡ଼ି ଘର ଦୁଆରେ ଅଟକି ପେଁ ପେଁ କଲାଣି । ଦେଢ଼ସ୍ତର ପିଣ୍ଡାଟାରେ ବସିଥିଲେ ମଧ୍ୟ ନିଜକୁ ସମ୍ଭାଳି ନପାରି ସାନଭାଇ ହରିଶ୍ ବାବୁଙ୍କ ପତ୍ନୀ ଖଦା ଶାଳରୁ ଦଉଡ଼ି ଆସିଲେ ବାହାରକୁ । ଆଲୋ ମା ଇଏତ ମୋ ଝିଅ ରୁକୁଣୀର ଗାଡ଼ି । ମୋ ଝିଅ ଜ୍ୱାଇଁ ଆସିଗଲେ କି ? ତାଙ୍କ ବୁକୁ ଭିତରେ ହସ ରୁନ୍ଧି ହେଇ ଯାଉଚି । ଗାଡ଼ିର ପଛ କବାଟ ଖୋଲି ଅଳ୍ପ ବୟସର ସ୍ତ୍ରୀ ଲୋକଟିଏ ଓହ୍ଲାଉଚି । ମଥାର ଚିକୁର ଅବିନ୍ୟସ୍ତ । ଆଖି ଦି'ଟା କାନ୍ଦି କାନ୍ଦି ଫୁଲିଗଲା ଭଳି ଦିଶୁଚି । ଦଉଡ଼ି ଆସି ବୋଉକୁ କୁଣ୍ଢେଇ ପକେଇ କହିଲା : ମୁଁ ଆଉ ସେଇ ଶଇତାନ ଘରେ ଦଣ୍ଡେ ରହିବି ନାହିଁ । ସିଏ ଖାଲି ହୁକୁମ କରୁଥିବ ଆଉ ମୁଁ ତାଲିମ୍ କରୁଥିବି । ସିଏ ରୋଜଗାର କରୁଚି ମୁଁ ବି ଚାକିରି କରୁଚି । କଲେଜରୁ ଫେରି ମୁଁ ଘର କାମରେ ଲହୁ ଲୁହାଣ, ଆଉ ସିଏ ମରଦ ହେଇଚନ୍ତି ବୋଲି ବାହାରେ ଯାଇ ତାସ୍ ଖେଳ କ୍ଲବ ଜଲସାରେ ମଉଜ ମଜଲିସ୍ କରି ରାତି ଦି'ଘଡ଼ିକି ଫେରିବେ । ଆକଟ କରିବାରୁ ଗାଳି ମନ୍ଦ 'ଅନ୍‌କଲ୍‌ଚର୍‌ଡ଼ା' ବୋଲି ଶୁଣିବାକୁ ପଡ଼ିବ । କାଲି ସେମିତି ଆମ କଲେଜର ଅଧ୍ୟାପିକା ଆଉ ପିଲାମାନଙ୍କର ଗୋଟେ ପିକ୍‌ନିକ୍ ଥିଲା ବୋଲି ମୋର ଫେରୁ ଫେରୁ ସକାଳ ହେଇଗଲା । ସେଥିପାଇଁ ସେ ଲୋକ ସ୍ୱାମୀପଣିଆଁ ଦେଖେଇ ମୋ ଉପରେ ପୁଣି ହାତ ଉଠେଇବ ।

: ଚୁନ ହ ଚୁନ ହ । ଦାଦା ବସିଚନ୍ତି । କଣ କହିବେ । ଆଗ ତାଙ୍କ ଗୋଡ଼ତଳେ ପଡ଼ । ଘର କରିଥିଲେ କ'ଣ ଏମିତି ମୁହଁ ଫଟାଫଟି ହୁଏ

ନାହିଁ ? ଝିଅ ଆସି ଚଉକିରେ ଆଉଜିଥିବା ବାଣ୍ଡି ଗୋବରରେ ମୁଣ୍ଡ ଲଟେଇ ଓଳଗି ହେଲା, ଦାଦାଙ୍କ ପାଖକୁ ଲାଗି । ଦାଦାଙ୍କ ମୁହଁରୁ ଗୋଟିଏ ବି ଶବ୍ଦ ଫୁଟୁନି । ଝିଅ ଉଠିପଡ଼ି ଘର ଭିତରକୁ ମୁହେଁଇଲାବେଳକୁ ଅଶରଦ୍ଧମ ଅଳନ୍ଧର ସବା ଉପର ଗୁଳ ଉପରେ ବସି ଢୁମୁରୁଥିବା ପାରା ଯୋଡ଼ିଙ୍କୁ ଏକନିଷ୍ଠ ଦୃଷ୍ଟିରେ ନିଧାକର ଭାରି ନିହଲ ସ୍ୱରରେ ପଚାରୁଚନ୍ତି : କାହିଁ କଣ ଆଜିକାଲି ଦେଖା ନାହିଁ ?

ଝିଅ ବୁଲିପଡ଼ି ଦାଦାଙ୍କୁ କହୁଚି : କଣ ଦେଖା ନାହିଁ ମ ? ମୁଁ ପରା ଯାଇ ଶାଶୁ ଘରେ । ରାଉରକେଲାରେ ? ମା ଝିଅକୁ କଣ୍ଠ ଲଗ୍ନକରି ଚୁପ ଚୁପ୍ କହିଲେ : ତାଙ୍କ କଥା କଣ ଶୁଣୁଚୁ । ସେଇ ଗୋଟାଏ ପ୍ରଶ୍ନ ତ ସେ ସମସ୍ତଙ୍କୁ ପଚାରୁଚନ୍ତି । ହେଲେ ଗୋଟାଏ ଭଲ କଥା । କାଠଉଁ ତାର ଉତ୍ତର ଖୋଜୁ ନାହାନ୍ତି ।

ସତ୍ୟସନ୍ଧ ସ୍ଥିତଧୀ ମଣିଷଟିର ଏକାକୀ ନିଜସ୍ୱ ନିକାଞ୍ଚନତା ଆଉ କାନ ଅତଡ଼ା ପଡ଼ିଯାଉଥିବା ପରି ଅସମ୍ଭାଳ ନିସ୍ତବ୍‌ଧତାକୁ ଛାତିରେ ରୁନ୍ଧି ଅଶରଦ୍ଧମ ଆଖିବୁଜି ସେଇ ପୁରୁଣା ଭଙ୍ଗୀରେ ବସିଚନ୍ତି । ଜହ୍ନ ଉଠିଚି ମ୍ଳାନଏମ ଗୁଡ଼ଇ ଆଲୁଅରେ ଉଲଙ୍ଗ ସହରର ରାସ୍ତା ଜର୍ଜରିତ । ସାତ ଅ.ଠଜଣ ଜୁଆନ ପିଲା ମାଲ୍ ପିଇ ଟଳି ଟଳି ଆସି ହାରଣ୍ଡା ତଳ ରାସ୍ତାର ପୋଳିଆ ଉପରେ ବସିଲେ । ବେସୁରା ଫିଲମ୍ ଗୀତ ଗାଉଛନ୍ତି । ଜଣେ କଞ୍ଚା ଭେଣ୍ଡିଆ ଗୀତବୋଲା ଅଧାରୁ ଛାଡ଼ି ମେହଫିଲ୍‌ରେ ବକ୍ତୃତା ଦେଲାପରି କହୁଚି— : ସତରେ ଭାଇ—କ'ଣ ଗାଇସ୍‌ରେ ଜଲୈଠା ଉସ୍ତାଦ ; ଏ ସହରର ମୌସମ୍ ଏତେ ସୁହାନା ଲାଗିସ ଦୋସ୍ତ ଏ ମୌସମ୍‌ରୁ ଗୋଟେ ଶାମ୍— ସନ୍ଧ୍ୟାବେଳ ବେ—ଭେଟ୍ଟଶିକରି ଲେଇଯିବା ପାଇଁ ଭାରି ମିଜାଜ୍ ହଉଚି । ହବେ ସଞ୍ଜବେଳଟାଏ ଏଇ ସହରକୁ କେମିତି ଭେଟ୍ଟରେଇ ନେଇ ଭାଗିବା କହରେ ! ଆଉ ଜଣେ ଏବେ ମାଉଥ୍ ଅର୍ଗାନ୍ ବଜେଇଲାଣି । ଭାରି ବଢ଼ିଆ ଧୂନ୍‌ଟାଏ ରାଜକପୁରର ପୁରୁଣା ଫିଲ୍ମରୁ । ସେମାନେ ଏବେ ରାସ୍ତାରେ ଯାଉଥିବା ଖାଁ ଭାଁ ମଟର ସ୍କୁଟର କେଇଟାଙ୍କୁ ଅଗରେ ହା ହାଲ୍ଲା କରି ଅଟକେଇ ଠେକା ପକେଇଲେଣି । ଉତ୍ପାତ ହେଲେଣି । ଅଧଘଣ୍ଟାଏ ଭିତରେ ଗୋଟେ ପୁଲିସ୍ ଜିପ୍ ସାଇରେନ ବଜେଇ ତାଙ୍କ ପିଣ୍ଡାତଳ ରାସ୍ତା ପୋଳିଆ ପାଖରେ ଜବର ବ୍ରେକ୍ ଦେଇ ଅଟକିଲା । ଯେମିତି ଗୁରୁନ୍ଥିଅ ଦାଢ଼ିରା ପୁଲିସ୍ ଜିପ୍‌ରୁ ଡିଆଁ ମାରି

ଓହ୍ଲାଇଚନ୍ତି ମାତାଲ୍ ଟୋକାଦଳ ଦୌଡ଼ି ପଳେଇଲେ ଛିନ୍ନଛନ୍ନ ହୋଇ । ଗୋଟେ ଅଳ୍ପବୟସର ପିଲା ସରୁ ନଡ଼ା ନଡ଼ା ହାତଗୋଡ଼ ପେଟଫୁଲା ପାଣିଚଢ଼ା ଫୁଲା ଆଖି ସମେତ ଧାଇଁ ଧାଇଁ ଡଳେ ପଡ଼ି ପୋଲିସ କବଜାରେ ପଡ଼ିଗଲା । ତାକୁ ପୁଲିସବାଲାଏ ଠେଙ୍ଗା ବୁଟ୍‌ରେ ସେକିବା ଆରମ୍ଭ କରିଦେଲେ । ଶେଷରେ ତାର ଦଲିମଳା ଦେହଟାକୁ ଜିପ୍ ପଛ ଝାଲରେ ଅର୍ଦ୍ଧାବସ୍ଥାପର୍ଣ୍ଣ ଫୋପାଡ଼ି ଦେଲେ ।

ଜଣେ କନ୍‌ଷ୍ଟେବଲ ବଡ଼ବାବୁଙ୍କୁ ବାରଣ୍ଡାରେ ବସିଥିବା ଦେଖି ଉଠି ଆସି ସଲାମ୍ କଲା । କହିଲା : ଏ ଗୁଡ଼ା ବଡ଼ ହାରାମଜାଦା ଛ୍‌ଟ୍ରିମା ବାବୁ । ଆଜି ପାନେ ହୋଇଗଲା । ଜିପ୍ ଭିତରୁ ପିଲାଟାର ଟିଁ ଟିଁ ଶବ୍ଦ ଶୁଭୁଚି ।

ଅରବିନ୍ଦବାବୁ ଏବେ ଚୌକିରୁ ଉଠି ଛିଡ଼ାହୋଇ ପଡ଼ିଲେଣି । ତାଙ୍କର ଶକ୍ତି ଫେରି ଆସିଚି ମ୍ୟାଜିକ୍ ଭଳି । ଜିପ୍ ପାଖକୁ ଯାଇ ଆଣି ପିଲାଟାକୁ ତଳକୁ ଓହ୍ଲାଇ ଦବାକୁ ସଙ୍କେତ କଲେ । ପୁଲିସବାଲାଏ କ'ଣ ଭାବି କେଜାଣି ବିରୋଧ କଲେନାହିଁ । ପିଲାଟାକୁ ସସ୍ତା କଡ଼କୁ ଖସେଇ ଦେଲେ । ଆଉ ସାଇରେନ୍ ବଜେଇ ଗାଡ଼ି ଷ୍ଟାର୍ଟ କରି ନାଇଟ୍ ପାଟ୍ରୋଲ୍‌ରେ ଗଲେ ।

ଅରିନ୍ଦମ ଆକାଶରେ ଦରଫୁଟା ଚନ୍ଦ୍ରକୁ ଚାହିଁଲେ ଦଣ୍ଡେ । କୁଆଡ଼େ ଥିଲା ଚମଡ଼ାରୁ ରୁମଉଡ଼ୁଥିବା ରୋଗିଣା କୁକୁର ଛୁଆଟାଏ । ଲଡ଼ିବଡ଼ି ହୋଇ ଆସି ପୋଲିସ ମାଡ଼ରେ ନସ୍ୟାନ୍ତ ପିଲାଟାର ମୁହଁ ଚାଟିବା ଆରମ୍ଭ କରିଦେଲା । ଅରିନ୍ଦମ ଧୀର ପଦପାତରେ ସେଇଆଡ଼କୁ ମୋହିଁଚନ୍ତି । ଘର ଭିତରୁ ସମସ୍ତ ପରିବାରର ଲୋକେ ହରିଶବାବୁ ତାଙ୍କ ପତ୍ନୀ ଆଉ ଝିଅ ସଦର ବାରଣ୍ଡାକୁ ଉଠିଆସି ଚାହିଁ ରହିଚନ୍ତି । ଅଥବା ଅରିନ୍ଦମଙ୍କ ନୈଶ ବିହାରର ମନ୍ତବ୍ୟ ଚଳାନ୍ତିକା ।

ବୁଲୁଫଟା ହସରେ ବିହ୍ୱଳ ହୋଇ ଯାଇଚନ୍ତି ଅରିନ୍ଦମ । ଚେତାପାଇ ଉଠିବସିଥିବା ରୋଗିଣା ପିଲା ଆଉ ବୁଲା କୁକୁରଟାର ମୁଣ୍ଡକୁ ଦି'ହାତରେ ସାଉଁଟିଧରି ସିଏ ଚିତ୍କାରୁଚନ୍ତି କେଡ଼େ ଆହ୍ଲାଦରେ : କରେ କ'ଣ ତମର ଆଉ ଦେଖା ନାହିଁ ! ଏଁ !

# ନିଷ୍ଠୁର ଜାଢ଼

କଅଁଳିଆ ଖରା ପଡୁଚି । ପାହାନ୍ତ ଜାଡ଼ର ଉଷୁମ୍ ଟାଣୁଚି ଏବେ । ରାସ୍ତା ଆରପାଖ ମ୍ୟୁନିସିପାଲଟି ପାଣି ବୁହା ଟ୍ୟାଙ୍କ୍‌ର ଗ୍ୟାରେଜ୍‌ କାନ୍ଥକୁ ଲାଗି ଛିଣ୍ଡା ସିମେଣ୍ଟ ଅଖା ଦି'ଖଣ୍ଡ ଘୋଡ଼ି ହୋଇ ପିଲାଟା କେଡ଼େ ନିଃଶଙ୍କ ଆରାମରେ ଶୋଇ ପଡ଼ିଥିଲା । ଏଇନା ଉଠିଆସି ଖରା ପୋଉଁଚି । ଦି'ଟା ଆଖି ନ ଫିଟିଥିବା କୁକୁର ପିଲା ଆଉ ମା' କୁକୁରଟାଏ ତା'ପାଦ ଜଙ୍ଘ ଚାଟୁଛନ୍ତି । କୁଁ କାଁ କରି ଚେହ୍ଲା ହଉଛନ୍ତି । ପିଲାଟା ରାସ୍ତାକୁ ଚାହିଁ ମୁରୁକି ହସା ଦଉଚି । ସହରର କଙ୍କାଳ ତା' ଆଖି ସାମନାରେ ସ୍ପଷ୍ଟ ହୋଇ ଉଠୁଚି । ଜାଡ଼ ଦିନରେ ରାତିସାରା ପୁଣି ସକାଳ ଆଠ ପର୍ଯ୍ୟନ୍ତ ରାସ୍ତା' କୋଠାବାଡ଼ି, ଦୋକାନ, ବଜାର ସବୁ ଖାଁ ଖାଁ । ଅନ୍ତରା । ଲୋକ ବାକ ଯାନ ବାହାନ କା'ର ନିଦ ଭାଙ୍ଗିନି । ଏବେ ସୂର୍ଯ୍ୟ ତୋରଣ ଉଠିଲା । କେଇ ମିନିଟ୍‌ରେ ପୁଣି କଲରୋଳ ଉଛୁଳିବ । ସାଇଲୋକେ ମାଲିକ, ମଜ୍‌ଦୁର, ଚାକରିଆ, ଦୋକାନୀ, ବେପାରୀ, ରାସ୍ତା', ଗଳି କନ୍ଦି ସବୁଆଡ଼େ ଖେଦି ଯିବେ ସହରର ଉଲଙ୍ଗ କଙ୍କାଳରେ ଆସ୍ତେ ଆସ୍ତେ ମାଉଁସ ଲାଗିବ । ଶିରା ଧମନୀ ସୋଡ଼ ହୋଇଯିବ ଆଉ ରକ୍ତ ଖେଳିବ । ପିଲାଟା ଏବେ ଝାଡ଼ିଝୁଡ଼ି ହୋଇ ପୁଣି ଥରେ ହାଇ ମାରି ଛିଡ଼ା ହେଲା ଆଉ ସରକାରୀ ବସ୍‌ଷ୍ଟାଣ୍ଡ ଆଡ଼େ ମୁହାଁଇଲା ।

କାଲି କୋଉଠି କେତେବେଳେ କଣ ଖାଇଥିଲା ମନେ ନାହିଁ, ଭୋକ ମାଡ଼ି ଆସିଲେ ସେ ଠିକ ଠିକ ଆହାର ଖୋଜେ । ନିର୍ଦ୍ଦିଷ୍ଟ ଖାଇବା ସମୟ କି ଖାଦ୍ୟ ମିଳିବା ସ୍ଥାନ ଏମିତି କିଛି ନାହିଁ । ଏବେ ଜବର ଭୋକ । ରାସ୍ତା ପାଖ ପାଣି କଳରୁ ଦି' ଚଳା ନେଇ ମୁହଁରେ ଛାଟିଦେଲା ଆଉ ଚାରି ଅଞ୍ଜୁଳା ପାଣି ପିଇ ଅସନା ବୋତାମ ନଥିବା ମଳଗୁ ମଳଚ ଜାମାରେ ମୁହଁ ହାତ ପୋଛି ପକେଇଲା । ଖଣ୍ଡେ ଦୂରରୁ ଦେଖିଲା ଚାହା ଦୋକାନ କାଠ ଗୁମୁଟି ଉପରେ ଧୂଆଁ ଉଠୁଚି । ସେଠି ଗରମ ଗରମ ବରା ପିଆଜି

ଛଣା ହଉଥିବ । କେଇଜଣ ଗସ୍ତଖୋର ମଥାରେ ଆଉ ପିଠିରେ ଭୂଦର ଘୋଡ଼େଇ ଉଁଚା ଚୂଳରେ ଉଡ଼ୁଥିବା ନାଲି କୋଇଲି ଗୁଡ଼ପାଖେ ଅଡ଼ବସି ନଆଁ ପୋଉଁଚନ୍ତି । ସେ ଆଡ଼କୁ ଭୁହିଁ ସେ ଦଣ୍ଡେ ଠିଆ ହେଲା । ହେଲେ ମୋଟରୁ ବଇନ ପଡ଼ୁନଥିବାବେଳେ କୋଉ ସକାନୁ ହାତ ପଡେଇଲେ କୋଉ ଦୋକାନୀ ଅବା ମୁଠାଏ ପକେଇ ଦବ ଦୟାର ଅବତାର ପରି । ପିଲାଟା ପୁଣି ଚାଲିଲା ଆଗକୁ । ଆଖିଝିରି ନକ୍ସଲକ ଯେମିତି କଠେଇ ଗୁହୁଁଚି ଦୁର୍ନିରୀକ୍ଷ ଅନ୍ଧାର ଭିତରକୁ । ଫର୍ ଫୁର୍ ମଇଁଷି ଲାଞ୍ଜପରି କହଡ଼ା ବାଳ ଗୋଚ୍ଛାଏ ମଥା ଉପରେ ବାନ୍ଧି ହଉଚି ପବନରେ । କାଏ ଜଣେ ଡାକୁଚି । ପାର୍କ ପାଚେରି ଉପରେ ଉହୁଁକି ଲୋକଟା କହୁଚି ।

: ଚନ୍ଦରା କରେ ! ଆ' ଏଠିକି ! କାଗଜରେ ଅଠା ମାର୍ ! ମୁଢ଼ି ଦେବି ।

ସାମନ୍ତ ଦା' କାନ୍ଥରେ ଚଢ଼ି ପୋଷ୍ଟର ମାରୁଚି । ମୋଟା କାଗଜ ଉପରେ ଜଣେ ଭାରି ସୁନ୍ଦରିଆ ଗୋବ୍ଲା ଟିକି ଟିକି ମଣିଷର ମୁହଁ । ହସୁଚି ଏମିତି ଯେ ଭାରି ମାନୁଚି ତା' ମୁହଁକୁ ଆଉ ଟୋପିକୁ । ସେଥିରେ କଣସବୁ ଲେଖା ହେଇଚି । ତେବେ ଗଣ୍ଡେ ଦାନାର ସମ୍ଭାବନାରେ ତା' ମନ ଉଜ୍ଜ୍ୱଳ ଉଠିଲା । ସିଏ ଏକା ଖେପାକେ ଯାଇ ପାର୍କର ଲୁହା ଗେଟ୍ ସନ୍ଧରେ ପଶି ଓଲଟ ପୋଷ୍ଟର ଧାରରେ ଅଠା ମାରିବା ଆରମ୍ଭ କରିଦେଲା । ଖଣ୍ଡିକୁ ଖଣ୍ଡି ବଢ଼େଇ ଦେଲା ସାମନ୍ତ ହାତକୁ ଉପରକୁ ଉହୁଁକି । ସାମନ୍ତ ପୁରାଦମ୍‌ରେ କାମରେ ଲାଗିଯାଇଚି । ଦି' ଡଜନ ପୋଷ୍ଟର ଝୁଲି ସାରିଲା ପରେ ସିଏ ତଳକୁ ଓହ୍ଲାଇଲା । ତା' ଅଣ୍ଟାରେ ଗୋଟେ ପଲିଥିନ୍ ମୁଣି ଝୁଲୁଚି । ସେ ଭିତରୁ କାଗଜ ଠୁଙ୍ଗାଟାଏ ବାହାର କଲା ଆଉ ବଢ଼େଇ ଦେଲା ପିଲାଟିର ହାତକୁ । ସେଥିରେ ଗୁରେ ଛଅ ମୁଠା ମୁରୁକୁଟିଆ ସିପା ମୁଢ଼ି ଆଉ ଖଣ୍ଡେ ଗୁଡ଼ ଥିଲା । ତାକୁ ଏକା ଲୟରେ ପାକୁଳି କରିଦେଇ ଦି' ମିନଟ୍‌ରେ ସଫା କରି ଦେଲା ପିଲାଟି । ମୁହଁରେ ତୃପ୍ତି ଆଖିରେ ଅକୁଣ୍ଠ କୃତଜ୍ଞତା ।

: ଆଉ କଣ କାମ ଦବ ସାମନ୍ତ ଦା' ?

: ନାଇଁବେ । ଅବ ଭାଗ୍ ଏଠଉଁ ।

ପିଲ୍‌ଟି ବାଘ ଗ୍ରହଟି ପରି ଜାମାରେ ମୁହଁ ପୋଛୁ ପାଦ ବଢ଼େଇଲା ଆଗକୁ । କିଏ କେବେ ତାକୁ ଚନ୍ଦର ବୋଲି ନାଁ ଦେଇଥିଲା ସିଏ ଜାଣେନ । ବାପା ମା' କିଏ, ଭିଟାମାଟି କୋଉଠି, ଚେର ମୂଳ କୁଆଡ଼େ ତା' କେହି ଜାଣି ନାହାନ୍ତି । ତେବେ କଣାନ୍‌ଗଞ୍ଜି ଛକର ପରିବା ଦୋକାନୀଙ୍କଠୁ ଖବର ଯେ, ସାତ ବରଷ ତଳେ ସିଏ ଛକ ପୋଲିଆ ପାଖରେ କଳଅର ମୂଳେ ଢ଼ି' ଦିନର କଅଁଳା ପିଲାଟେ ପଡ଼ିଥିଲା ଆଉ ରଡ଼ିକରି କାନ୍ଦୁଥିଲା । ତାକୁ ଆଣି ଶରଧା ବୁଢ଼ୀ ପାଳିଲା । ଶରଧା ବୁଢ଼ୀ ଗୃହ ଛଅ ଦିନରେ ବାସି ପାଇଟି କରି ଚଳେ । ନିଜର ବୋଲି କେହି ନାହାନ୍ତି । ପିଲାଟାକୁ ଚନ୍ଦ୍ରଉଦିଆ ଘଡ଼ିରେ ପାଇଥିଲା ବୋଲି ନାଁ ଦେଇଥିଲା 'ଚନ୍ଦ୍ର' 'ଚନ୍ଦର' ଏକା କଥା । ବୁଢ଼ୀ ଏବକାର ଜାଡ଼ଦିନ ପରି ଦିନେ କୁଙ୍କୁର କାଙ୍କୁର ହୋଇ ତିନିବରଷ ତଳେ ମରିଗଲେ । ଧଇଁ ସେଇ ଶ୍ୱାସ ଦାଉ ସାଧିଲା । ଚନ୍ଦର ଫିଟିଗଲା ବୁଢ଼ୀ ବସା ବାନ୍ଧିଥିବା ଜଗୁଆଳୀ ଘର ବାଉଁଶ ତଳେଇ ଯେଉଁ ଦାରଣ୍ଡାରୁ ଫୁଙ୍ଗୁଳା ରାସ୍ତାକୁ । କୋଉ ମାୟା ଲାଗିବାର ବୟସ ହୋଇଥିଲା ଯେ ଏଇ ବସ୍ତି ତାକୁ ଓଟାରି ରଖିଥାନ୍ତା । ଗୃହବର୍ଷିର ଚଟଣି ପରି ଦାଉ ଗୋଡ଼ର ମଣିଷ ଶାବକ ଦିନ ଦିନ ଧରି ବୁଲୁଚି ତିନି ବରଷ ହେଲା ସୁଉଦୁ ପବନରେ, ଶୀତ କାକର ନିଦାଘ ବସନ୍ତରେ ବେପରୱା ସବୁ ଋତୁର ଫୁଲ, ସବୁ ବଣର ଚଢ଼େଇଟି ପରି । ସାତ ବର୍ଷ ବୟସର ଚନ୍ଦରର ଜୀବନ ଯୋଗ ସବୁ ସକାଳେ ଏଇମିତି ସୁରୁ ହୁଏ ମନ୍ଥରୁ ଗତାନୁଗତିକତାରେ ।

ବାଁ ପାଖେ ଏ ଯେଉଁ କାଠ କ୍ୟାବିନ୍ ଘ'ଟା ଠିଆ ହୋଇଚି ସେଇଟା ଫୁଲବିକାଳିଙ୍କ ଦୋକାନ । ଏମାନେ ବଡ଼ଲୋକମାନଙ୍କ ମଉଲବ ପାର୍ଟିରେ ଲୋଡ଼ା ପଡ଼ୁଥିବା ଫୁଲ ତୋଡ଼ା, ବୁକେ, ଭଳି ଭଳି ମାଳ, କୋଟ୍ କାଜ ଆଉ ଗଦାରେ ନାଇଲନ୍‌ଭଳି ଫୁଲର କୃତ୍ରିମ ସବୁ ତିଆରି କରି ବିକନ୍ତି । ହେଲେ ଏମାନଙ୍କର ନିଜ ବଗିଚା ନାହିଁ । ବଗାଦ ଦେଇ କାହିଁ କାହୁଁ ଫୁଲ କିଣନ୍ତି । କିଛୁ ଉଦ୍‌ବାସ୍ତୁ ପିଲାଙ୍କୁ ଲଗେଇ ବଗିଚା, ପାର୍କ ଇତ୍ୟାଦିରୁ ଫୁଲ ଗ୍ରେହ କରନ୍ତି । ଏ ଦୋକାନ ମାଳିକ ଚନ୍ଦରକୁ ବି ଗୋଟେ ଲମ୍ବା ତାରର ଆଙ୍କୁଡ଼ି ଦେଇଥିଲା । କହିଲା; ଯଦି ପାରୁଥାଏ ଲେଖାଁ ଫୁଲ ତୋଳିକରି

ଆଣିବୁ ଧନକୁ ଟଙ୍କାଏ ଲେଖାଁଏ ଦେବ । ବଡ଼ ଗୋଲାପ ଆଣିଲେ ଗୋଟାକୁ ପଚିଶ ପଇସା । ଧନାକେତେ ଚନ୍ଦର ଫୁଲ ଚୋରିରେ ବେଶ୍ ପାରିବାରୁ ପଣିଆଁ ଦେଖେଇଲା । ହେଲେ ଧନେ ଧରା ପଡ଼ିଗଲା ଖୋଦ୍ ପୁଲିସ୍ ଦାରୋଗାଙ୍କ କ୍ୱାର୍ଟରର ସାମନା ବଗିଚାରୁ ଫୁଲଡୋଳ ଉଆଁମାରି ଖସି ଯାଉଥିଲାବେଳେ, ତାଙ୍କର ଏଡ଼େ ବଡ଼ ଡାହାଳ କୁକୁର ତା' ବାଁ ଜଙ୍ଘକୁ ଝୁଣି ଦେଲା । ପ୍ରାଣ ବିକଳରେ ରକ୍ତ ଜୁଡ଼ୁବୁଡ଼ୁ ହୋଇ ଚନ୍ଦର ସେଦିନ ଦୌଡ଼ି ପାରି ହୋଇଗଲା ସତ, ସେଦିନୁ ଫୁଲ ଚୋରି ବନ୍ଦ । ଏବେ ଫୁଲ ଦୋକାନୀ ତାକୁ ଇସାରା କରି ପଚାରୁଚି : କିରେ ! କ'ଣ ଧନ୍ଦା ଛାଡ଼ି ଦେଲୁ । ଡରିଗଲୁ । ହିମ୍ମତ ନଥିଲେ କି ମଣିଷ ହବୁରେ । ଖାଇବୁ କ'ଣ—ଶୁଖି ଶୁଖି ମରିଯିବୁଟି ? ଚନ୍ଦର କିନ୍ତୁ ମୁହଁ ଫେରାଇ କିଛି ନ ଶୁଣିଲା ପରି ଚାଲିଚି ଆଗକୁ । ଫୁଲକଢ଼ରେ ଭରା କାହା ବଗିଚାକୁ ଚାହିଁ ଦେଲେ ଏବେ ତାକୁ ଲାଜ ମାଡ଼ୁଚି । ଦେହ ଶିରି ଶିରେଇ ଉଠୁଚି ।

ଇଏରି ହୋଇ ତ କଙ୍କଣ ଅପା । ରୋଗରେ ପଡ଼ିଥିଲା । କ'ଣ ଗୋଟେ ଭାରି ଖରାପ ରୋଗ । ପୁଣି ତ ଏବେ ଚେରେଇ ଗଲାଣି । ନୂଆ ବେଶ ପିନ୍ଧିଚି । ହଳଦିଆ ସିଲ୍କ ଶାଢ଼ୀ ସେଥିରେ ବହଳ ନାଲି ଧଡ଼ି । କାନ୍ଧରେ ଲମ୍ବା ପିପିଲି ମୁଣି ଝୁଲୁଚି । ଗୋରା ଫିଟି ଯାଇନି ଏମିତି ସ୍ନୋ ପାଉଡ଼ର ରୁଜ୍ ମାରି ଡଉଲ ଦିଶୁଚି ଜଣା ପଡ଼ୁନି । ସିଏ ହସି ହସି ତା' ପାଖକୁ ଚାଲି ଆଇଲାଣି ।

ଏଇ କଙ୍କଣ ଅପାକୁ କେଇଥର ସେ ଆଗରୁ ଦେଖିଚି ସାମନ୍ତ ଦା'ର ପଲା ଭିତରକୁ ଯିବା ଆସିବା କରିବାର । ସିଏ ବୋଧେ ସାମନ୍ତ ଦା' ସାଙ୍ଗରେ ଏକାଠି ରହୁଥିଲା କି କ'ଣ । ବୋଲହାକ କାମରେ ସେ ପଲାକୁ ଯାଉଥିବା ବେଳେ ସେ ଦେଖିଚି କେତେବେଳେ ମୋଟର ସାଇକଲଟେ, ରିକ୍ସାଟେ ବା ମଟର ଗାଡ଼ି, ସାମନ୍ତ ଦା'ର ଏକ ବଖରିଆ ଚାଳଘର ଆଗରେ ଲାଗେ । ସେଥିରୁ ଓହ୍ଲାରୁ ଥିବା ଲୋକ ଦାଦା ସାଙ୍ଗରେ କ'ଣ ଫୁସ୍‌ଫାସ୍ କଥା ହୁଅନ୍ତି । କଙ୍କଣ ଅପା ସାଙ୍ଗରେ ହସଖୁସି କରନ୍ତି । ଅଲଗା ଅଲଗା ନୂଆ ଲୋକ ସାଙ୍ଗରେ କଙ୍କୁ ଅପା ରିକ୍ସା କି ମଟର ଚଢ଼ି

ବୁଲିଯିବାର ସେ ଦେଖିଛି କେତେଥର । କ'ଣ ହେଲା ଦିନେ ଜଣାନାହିଁ ଘର ଆଗରେ ପଚୁଣ ଧରିକି ସାଇକେଲ୍ ଖୁବ୍ ପାଟି ତୁଣ୍ଡ କରି ଫେରିଗଲେ । ସାମନ୍ତ ଦ ଦା ଆଉ କଙ୍କୁ ଅପାକୁ ପଦାକୁ ଭିଡ଼ ଆଣି ଘରୁ ବାହାର କରି ଦେଲେ । ତାର ସଉପ, ବିଛଣା ଆସବାବ ଗଣ୍ଠିଲି ଆଉ ଟିଣ ସୁଟ୍‌କେଶ୍ ସବୁ ବାହାରକୁ ଫୋପାଡ଼ି ଛିନ୍ ଛନ କରିଦେଲେ । ବର୍ଷା କି ଶୀତ ରାତିରେ ଯେତେବେଳେ ଜମାରୁ ଶୋଇ ହୁଏନି, ପିଲାଟା ଟେକେଇ ଆସୁଥିଲା ସେଇ ବାରଣ୍ଡାରେ ଶୋଇବାକୁ । ଏବେ ତ ଆଉ ସେ ଘର କଙ୍କୁର ନୁହଁ କି ସାମନ୍ତର ନୁହଁ । ଏଇ ହଟ୍ଟଗୋଳ ଭିତରେ ଯେତେବେଳେ କଙ୍କୁର ଚୁଟି ଧରି ସାମନ୍ତର ବେକକୁ ଓଟାରି ସାଇକେଲ୍‌ଟିକେ ଧକ୍କା ପରେ ଧକ୍କା ମାରି ଗୁଳି-ଥିଲେ ଆଉ କଙ୍କୁ ସାହା ଧରି ଗୀତ ଗାଇଲା ପରି ସେମାନଙ୍କୁ ଭୁହାକୁ ଭୁହା ମାଗୁଥାଇ ଗାଳି ଦଉଥିଲା, ସେତିକିବେଳେ ଡରି ଡରି ଚନ୍ଦର ମାଡ଼ ଉପରେ ଦୌଡ଼ି ପକେଇ ଥିଲା ସେଇଠୁ । ସେଦିନୁ ଆଉ କଙ୍କ ସାଙ୍ଗରେ ଦେଖା ନାହିଁ, ଯଦିଓ କଦବା କେମିତି ସାମନ୍ତ ଦା' ସାଙ୍ଗରେ ଭେଟ ହୋଇଛି ।

କଙ୍କୁ ଅପା ତା' କାନ୍ଧରେ ହାତ ଦେଇ ଫିସାଦ ମନ୍ତ୍ରଣା କଲା ଭଳି କହୁଛି : ଇରେ ଚନ୍ଦର ! ମୋର ଗୋଟେ କାମ କରିବୁ କି ? ପଇସା ଦେବି । ଚନ୍ଦର ମୁଣ୍ଡ ଲଡ଼ି ହଁ କଲା ।

: କଷ୍ଟ କାମ ନୁହଁବା । ହେଲେ ଅକ୍‌କଲର କାମ । ସେଇଠି ଦେଖୁଛୁ ତ ନର୍ସେରି ଉଦ୍ୟାନ ଫରେଷ୍ଟ ବାଲାଙ୍କର । ତା' ଭିତରେ ଗଛମୂଳେ କେଇଟା କଂକ୍ରିଟ୍ ବେଞ୍ଚ୍ ପଡ଼ିଛି । ମୁହଁ ସଞ୍ଜ ହୋଇଗଲେ ସେଠିକି ବାବୁଭାୟା ଲୋକ ଆସି ବସନ୍ତି । ଅପ୍ସୁସ କରନ୍ତି । ମୁଁ ଯାଇ ସେଥିରୁ ଗୋଟେ ବେଞ୍ଚ ଉପରେ ବସିବି । ହେଇଟି ସେଇ ଶେଷ ମୁଣ୍ଡ ନଡ଼ିଆ ଗଛ ତଳ ବେଞ୍ଚରେ । ତୁ ଯାଇ ଆରପାଖ ରେଳଷ୍ଟେସନ ଆଡ଼େ ବୁଲୁଥା । ଯେଉଁଠି ଦେଖିବୁ ବାବୁ ପରି କି ଷଣ୍ଢୁଣ୍ଡ ଧୋବଧାଉଳିଆ ଲୋକ କିଏ ଏକୁଟିଆ ବୁଲୁଛି କି ଠିଆ ହୋଇଛି ତାକୁ ମୋ ଆଡ଼କୁ ଦେଖେଇ ଧୀର ଗଳାରେ କହିବୁ : ଅପା ଡାକୁଚନ୍ତି ପାର୍କକୁ ଯିବାକୁ । ସିଏ ଆଉ ଅଧିକା କ'ଣ ପଚାରିଲେ କହିବୁ ଯେ ମୁଁ ତାଙ୍କୁ ଚିହ୍ନିଛି । ସିଏ ଦେଖିଲେ ଚିହ୍ନିବେ ଯେ, ଆଉ ସିଏ ଆସି ମୋ ସାଙ୍ଗରେ ବସି ଗପ କଲାବେଳେ ତୁ ନର୍ସେରି ଗେଟ୍ ପାଖରେ ଉଣ୍ଡୁଥିବୁ । ଯେମିତି

ମୁଁ ଉଠିପଡ଼ି ପାଞ୍ଚିଟାଏ କରିଦେବ, ତୁ ମୋ ଆଡେ଼ 'ପୁଲସ୍ ପୁଲସ୍' ବୋଲି ଚିଲ୍ଲେଇ ଦଉଡ଼ି ଆସିବୁ । ଏତିକି ତ କାମ । ଠିକ୍ ଷ୍ଟେସନ୍ ଘଣ୍ଟାରେ ପାଞ୍ଚଟା ବାଜିଲା ବେଳକୁ ଆସିଯିବୁ । ନେଏ ଏ ଦଇଟା ସୁକି । ବାଦାମ କିଣି ଖା ।

ଶୀତଦିନଟାରେ ପାଞ୍ଚଟାକୁ ମୁହଁ ସଞ୍ଜ । ଚନ୍ଦର ଷ୍ଟେସନ ରାସ୍ତାରେ ଯିବା ଆସିବା ଲୋକଙ୍କୁ ଚାହୁଁଚି । ଈର୍ଷାରତ ରୂପର ଚରିତ୍ରଟିକୁ ଖୋଜୁଚି । ମଝିରେ ମଝିରେ କଙ୍କୁ ଅପା ବସିଥିବା ପାର୍କ ଭିତର ବେଞ୍ଚ୍ ଆଡ଼କୁ ନଦା କଲା ବେଳକୁ ଦେଖୁଚି ଯେ କଙ୍କୁଅପା ବି ତାକୁ ଚାହିଁଚି । ଆଉ ତା'ହାତ ଘଡ଼ିକି ଦେଖୁଚି । ଏ ଭିତରେ ନଗଦ ରିକ୍ସାରୁ ଓହ୍ଲେଇ ହାତରେ ଏଟାଚି ଧରି ଜଣେ ଧୋତି ଆଉ ଗଳାବନ୍ଧ କୋଟ୍ ପିନ୍ଧିଥିବା ଲୋକ ଆଗରେ ଚନ୍ଦର ତା'ର ଫୁସୁଲେଇବା କାର୍ଯ୍ୟ ଆରମ୍ଭ କରିଚି । ଭଦ୍ରବ୍ୟକ୍ତି ପାର୍କ ବେଞ୍ଚ ଆଡ଼କୁ କେଉଁଠି ଚାହିଁଲେଣି । କଙ୍କା ଗଳାରେ ପାଟି କରି ଉଠିଲେଣି : ଛତର କୋଉଠିକାର । ବଙ୍କଟେ ମେଞ୍ଚଡ଼ା ପିଲା । ସାହାସ ଦେଖ । ଯାଉଚୁନା ଏଇନା ଦେଖିବୁ । ତାଙ୍କ ହାତ ଉଠିବାର ଦେଖି ଚନ୍ଦର ଭାଗ୍ । ସିଏ ଜାଣୁ ସମ୍ଭୁଝି ପାରୁନି ତାର ଦୋଷଟା କେଉଁଠି ? ଚନ୍ଦର ପୁଣି ଲୋକ ଖୋଜୁଚି । ପାନ ଦୋକାନ ଆଗରେ ସ୍କୁଟର୍‌ରୁ ଓହ୍ଲେଇଲେ ଏକା-ବେଳେକେ ତିନିଜଣ ଭେଣ୍ଡିଆ ଯୁବକ । ହୁଗୁଳା ଛୁଟଜାମା ପିନ୍ଧିଚନ୍ତି । ଚପା ପେଣ୍ଟ୍, ସିଗ୍ରେଟ୍ ଟାଣୁଚନ୍ତି । ତାଙ୍କ ଭିତରୁ ଜଣେ କଓ୍ୱସ୍କ ଦାନ୍ତକୁ ପରିଷ୍କାର କରିବାକୁ ଆଗଉଥିଲା । ଏଇ ମୌକା । ଚନ୍ଦର ଯାଇ ତାଙ୍କ ଜାମାକାନିକୁ ଧରି ସଙ୍କେତ କଲା ।

: ଅପା ଡାକୁଚନ୍ତି ।

: କୋଉ ଅପା ବେ ?

: ହେଇ ସେଠେଇଁ ପାର୍କରେ ବସିଚନ୍ତି । ସିଏ ତମକୁ ଚାହିଁଚନ୍ତି ।

: ଗଲା ସେଠୁଁ ଆଲୁଅ ହୋଇଗଲା । ହଇବେ, ଯେତେ ଅପା ମତେ ଚାହିଁଛନ୍ତି, ମୁଁ କ'ଣ ସମସ୍ତଙ୍କ ଗୋଲାମ ଯେ ହୁକୁମ ତାଲିମ୍ କରିବ । ତୀ'ର ଯଦି କାମ ଅଛି ଏଠିକି ଉଡ଼ିଆଣ ।

ଲୋକଟା ଏତେ ଯୋରରେ ହେଁ ହେଁ ହୋଇ ହସିଉଠିଲା ଯେ ଚନ୍ଦର ଉପରେ ତା' ପାଟିଗୁଣ୍ଡ ଦୌଡ଼ି ପଳେଇଲା । ପାର୍କଆଡେ ମୁହଁ ବୁଲେଇ ଦେଖୁଛ ଯେ ଅପା ଅସ୍ଥିର ହଉଛ । କ'ଣ କରାଯାଏ । କାମଟା ଏତେ ମୁସ୍କିଲ୍ ହବ ବୋଲି ସେ ଭାବି ନଥିଲା ।

ଏଇ ବୋଧେ ମୂର୍ଛା ଆସିଗଲା । ସାଦା ଟେଲରିର ପାତଳା ଯୁବକଟିଏ । ସାଇକଲ୍ ହେଣ୍ଡଲ୍‌ରେ ପଡ଼ିବା ମୁଣିଟିଏ ଝୁଲୁଛି । କୋଉ-ଦପ୍ତରର ସାନ କିରାଣି ହବ ବୋଧେ । ପକେଟରୁ ପଇସା ବାହାର କରି ମାଗି ସନ୍ଧି କରୁଛ । ପାନ ଖଣ୍ଡିଏ ଖାଉଛ । ଚନ୍ଦର ଆଗେଇଲା । ତା'ର ବକ୍ତବ୍ୟକୁ ଖୁବ୍ ମନଯୋଗ ଦେଇ ଲୋକଟି ଶୁଣିଲା ଆଉ ଟିକିଏ ଶଙ୍କି-ଗଲାଭଳି ଲାଗିଲା । ତାପରେ କ'ଣ ଭାବି ପାର୍କ ଫାଟକରେ ସାଇକଲ ଚଢେଇଲା, ପଛେ ପଛେ ଚନ୍ଦର ।

ବାଡ଼ ବୁଦାମୂଳରୁ ତାଙ୍କୁ ଦେଖି ହସୁଛ । ଲୋକଟି ଯାଇ ଙ୍କୁଅପା ପାଖରେ ଠିଆ ହେଲା । ଅପା ଆଖିନଚେଇ ହସିହସିକା ତା' ହାତଧରି ତା' ଦେହକୁ ଲଗାଲଗି ହୋଇ ବସିଲାଣି । କ'ଣ ଠୁପୁରୁ ଟାପର କଥା ହେଲେଣି ଦି'ଜଣଯାକ । ଲୋକଟା ଏବେ ଲାଜ ଲାଜ ହୋଇ ହସିଲାଣି । ଅପା ତା'ର ସମଗ୍ର ଦେହଟାକୁ ଲୋକଟାର ଗୁଣ୍ଡରେ ଲଦି ଦେଲାଣି । ପାର୍କରେ ଏଠି ସେଠି ଆଠ ଦଶଜଣ ଲୋକ ବୁଲି ବୁଲି କରୁଚନ୍ତି । କାହାରି ଏଆଡ଼େ ନଜର ନାହିଁ ।

ଲୋକଟାର ଡାହାଣ ହାତ ଅପାର ପିଠି ପାଖେ କବୁଜ ହୋଇ ଆସିଲାଣି କ'ଣ ଏମିତି ହେଲା । ଅପା ଗୁଡ଼ି ପିଡ଼ି ହୋଇ ଠିଆ ହୋଇ ପଡ଼ିଲାଣି । ମୁହଁ ଫଣ ଫଣ କରି ନିଃଶ୍ୱାସରେ ଅଶ୍ଳୀଳ ଛୁଟାଇ ପାଟିକରି ଉଠିଲାଣି : ବଜାତ ଟୋକା! । କ'ଣ ବୋଲି ପାଇଚୁକି ମତେ । ଏ ସହରରେ କ'ଣ ଇଜ୍ଜତ ମହତ ନାହିଁ । ଲୋକଟା କାବୁସ୍ତ ହୋଇ ଗୁଡ଼ା ହୋଇକଡ଼ ଉପରେ କମ୍ପୁଚ । ପାଟି ଖଣ୍ଡ ବାଜି ଯାଉଚ ।

: ହେ ପାଟି କରନ, ପାଟି କରନ । ଲୋକହସା କଥା ହବ । ମୋର ବା କଣ ଦୋଷ ?

ଅପା ଭେଁ ଭେଁ କାନ୍ଦଣା ଆରମ୍ଭ କରି ଦେଲାଣି । କିଏ କେଉଁଠି ଅଛ ଧାଇଁ ଆସନ୍ତୁ । ମୋ ଇଜ୍ଜତ ନେଇଗଲେ ।

ନର୍ଦ୍ଦମାରେ ବ୍ୟବସ୍ଥା ମନେ ପଡ଼ିଗଲା ଚନ୍ଦରର—ସିଏ ଏବେ 'ପୋଲିସ୍, ପୋଲିସ୍' ବୋଲି ଡାକ ଛାଡ଼ି କଙ୍କୁ ଅପା ବାଗରେ ଦୌଡ଼ିଲା । ସ୍ୱରପାଦୁଣ୍ଡ ଦୂରରୁ ଦେଖିଲା ଲୋକଟା ବ୍ୟତିବ୍ୟସ୍ତ ହୋଇ ତା' ଗୁଡ଼ି ପକେଟ୍‌କୁ ଝାଡ଼ି ଝୁଡ଼ି ମୁଠାଏ ନୋଟ ବେଞ୍ଚ ଉପରେ ପକେଇ ଦେଇ ପଚିବା ମୂଣିକୁ ଛାଡ଼ିଦେଇ ଦୌଡ଼ି ପଳେଇଲା ଗେଟ୍ ମୁହଁରେ ଅଡ଼ଉଥିବା ସାଇକଲ ପାଖକୁ । ତାପରେ ସାଇକେଲ ଚଢ଼ି ଝଡ଼ର ବେଗରେ ଛୁ । କୌତୁକିଆ ଆଖିରେ କେଇଜଣ ଦେଖଣାହାର ବେଢ଼ି ଆସିଲେଣି । ଅପା ଝଅଟ ଟଙ୍କା ଚକ ଗୋଟେଇ ପାସ୍‌ବୋଲରେ ଭର୍ତ୍ତିକରି ପଚିବା ମୂଣିକୁ କାନ୍ଧରେ ଝୁଲେଇ ଗଡ଼ଜୟୀ ଦର୍ପରେ ବାହାର ଆସିଲା ନର୍ଦ୍ଦମା ଭିତରୁ । କହୁଚି : ହେର୍‌ପାକ୍ କାହିଁକା । ଯ୍ୱାଙ୍କଠୁଁ ଭଲ ପଇସା ଝଡ଼େଇରେ ବୋକା ଚନ୍ଦର । କ'ଣ କଚ୍ଛୁ ଶିଖୁଚୁ କି ନାହିଁ ? ଗଲାବେଳେ ଅପା ତା' ହାତକୁ ବଢ଼େଇ ଦେଇଥିବା ଗୋଟେ ଦୁ'ଟଙ୍କିଆ ନୋଟକୁ ଏପଟ ସେପଟ କରି ଚନ୍ଦର ଏ ସଂସାରକୁ ଆସିବାଠୁଁ ପ୍ରଥମ କରି ପଇସାକୁ ଚହୁଁଥିଲା ।

ଭାରି ଫୁର୍ତ୍ତି ଲାଗୁଚି ଚନ୍ଦରକୁ ଆଜି । ଏକାବେଳେକେ ଦୁ'ଟଙ୍କା ହାତରେ ପୁଣି ବନା ମେହନତ୍‌ରେ । ପାଖ ଦେଇ ଗୋଟେ ଇସ୍କୁଲ ବସ୍ ଗହଳି କାଟି ଧୀରେ ଧୀରେ ଆଗଉଚି । ସେ ଭିତରେ ଅଳ୍ପ ବୟସର କୁନି ପୁଅଝିଅମାନେ ଚଟେଇ ପଲ ପରି କଚର ମିଚର ହଉଛନ୍ତି । ଝକ ଝକ ଇସ୍ତ୍ରୀ ହୁଆ ଶୁଆପଖିଆ ପେଣ୍ଟ ସାର୍ଟ ଗ୍ରାଉନ ଫ୍ରକ୍ ସ୍କୁଲ ରେଗୁଲେସ ୟୁନିଫର୍ମ ପିନ୍ଧିଚନ୍ତି । ଗୋରା ତକ ତକ, ଅକାରଣରେ ହସି ହସି ଚଢ଼ି ଯାଉଥିବା କୁନି ପିଲାଟାଏ ଗୋଟେ ହାତଘଣ୍ଟା ପିନ୍ଧିଚି । ଆଉ ତାକୁ ଗୁହିଁ ହୁକୁମ୍ କରୁଚି, ଡ୍ରାଇଭର ! ଟାଇମ୍ ହୋଇଯାଉଚି । ଜଲ୍‌ଦି ଚଲ । ପୁଣି ଉଚ୍ଚକିଳ ହସର ନର୍ଝର ।

ଚନ୍ଦର ଏଇ ଦୃଶ୍ୟକୁ କଠେଇ ଗୁହୁଁଚି । ପିଇ ଯାଉଚି । ଏବେ ହାଟ ଆଡ଼କୁ ଗୁଲିଲା । ସେଠି ହରେକ୍‌ମାଲ ସତୁରି ପଇସା ଦୋକାନରୁ ଗୋଟେ ନାଲିଫିତା ବନ୍ଧା ପ୍ଲାଷ୍ଟିକ ଖେଳ—ଘଣ୍ଟା କିଣି ଡାହାଣ ହାତରେ ପିନ୍ଧିଲା । ଚଉଶ ପଇସାର ପୋଡ଼ା ମକା କିଣି ଗେଚ୍ଚିବେଇ ଗେଚ୍ଚିବେଇ ରାଜ ରାସ୍ତାରେ ଗୁଲିଲା ନୂଆ ଭୂଖଣ୍ଡର ସନ୍ଧାନରେ । କୋଉ ଉଆସରେ ସେ ଆଜି

ଗର୍ବୀଯାପନ କରିବ ତାହା ସବୁ ରାତି ପରି ଆଜି ବି ଅନିର୍ଦ୍ଦିଷ୍ଟ । ତେବେ ହାତ ଘଣ୍ଟାଟାକୁ ବାରମ୍ବାର ଆଖି ଉପରକୁ ଟେକି ମନକୁ ମନ କହି ହଉଚି : ଟାଇମ୍ ହେଇଗଲେ । ବେଇଗି ବେଇଗି ଗୁଲ୍ ଚନ୍ଦର । ପ୍ରଥମ କରି ସତେ କ'ଣ ସେ ସମୟକୁ ଚାହୁଁଚି ।

ଆଜି କାହିଁକି ସବୁଠୁଁ ବେଶୀ ଶୀତ । ଖଦଡ଼ର ଜାଗା ଫୁଟି ଯାଇଥିବା ଅସନା ଜାମା ପେଣ୍ଟରେ ଜାଡ଼ ସମ୍ଭାଳୁନି । ଢେର ରାତି ବି ହେଲଣି । ସହରର ପୁବ ଏମୁଣ୍ଡରୁ ସେମୁଣ୍ଡ, ପୁଣି ତାକୁ ଟପି ଉଲଆ ବସ୍ତି ଇଟା ଭାଟି, ମେଟାଲ୍ ଫସର ପାଖା ପାଖି ପହୁଞ୍ଚିଲଣି ସିଏ । କୋଉଠି ରାତିଟା ଶୋଇ ପଡ଼ିବାକୁ ଯାଗା ଟିକିଏ ଆଖିରେ ପଡ଼ୁନି । ଶୁନ୍ ଶାନ୍ ନିର୍ବାତ ରାତି । ପାଦକୁ କଷ୍ଟ ହେଲଣି । ମଝି ସଡ଼କରୁ ବାଁ କରକୁ ଗୋଟେ ଧାରୁ ପିଚୁରାସ୍ତା ପଥର ମୁଣ୍ଡିଆ ପର ଉଚ୍ଚା ଚଟାଣ ପର୍ଯ୍ୟନ୍ତ ଉଠିଚି । ତା' ଉପରେ କେତେ ସାଜରେ ଆଲୋକ ତୋରଣ ଝୁଲିଛି । ପୁଣି କେଡ଼େ ସୁନ୍ଦର କୋଠାଘରଟିଏ । ସେଇଠୁଁ ନାଚଗୀତର ଧୂନ୍ ସଞ୍ଚରି ଯାଉଛି । ମାଳ ମାଳ ଚକଚକିଆ ମଟର ଗାଡ଼ି ଭର୍ତ୍ତି । ଘର ଗୁରିପାଖେ ଧଳା ପୋଷାକପିନ୍ଧା ଟ୍ରାଫିକ୍ ପୁଲିସମାନେ ଜଗିଚନ୍ତି । କେତେଟା ଗାଡ଼ି ଉପରେ ନାଲି ଆଲୁଅ ଆଉ ଇଞ୍ଜିନ୍ର ନାକ ଉପରେ ତ୍ରିରଙ୍ଗା ପତାକା । ମନ୍ତ୍ରୀ ଟାଣିଲା ପରି ଚନ୍ଦରର ପାଦ ସେଇ ଆଡ଼କୁ ଆଗେଇଲା । ଉଆସ ପରି ଘରର ଲୁହା ଫାଟକ ପାଖରେ ପହୁଞ୍ଚି ଦେଖେ ଯେ, ଭିତରେ ପଶିବାର ଜୁ ନାହିଁ । ବ' ଧାଡ଼ି ପୁଲିସ ଆଉ କେତେ ନାଲି କମରପଟି ପିନ୍ଧା ଦରୱାନ୍ ବ୍ୟୂହ ପରି ଘେରି ରହିଚନ୍ତି । ଚନ୍ଦର ମନସ୍ଥ କରିନେଲା ଯେ ଯେମିତି ହେଲେ ସିଏ ଭିତରେ ପଶି ଏଠି କ'ଣ ହଉଚି ଦେଖିବ । ପାଚେରି ବାଁ କଡ଼କୁ ବୁଲିଯାଇ ଦେଖିଲା କଣ୍ଟା ତାର ବାଡ଼ରୁ ଖଣ୍ଡେ ହୁଗୁଳା ହେଇ ବାଛୁରୀଟେ ଗଳି ଗଲା ଭଳିଆ ଫାଙ୍କ ହେଇଚି । ସେଠି ବି ଜଗୁଆଳି କେହି ନାହାନ୍ତି ।

ସେଇ ବାଟ ଦେଇ ସିଏ ପାଦ ଚପି ଚପି ଭିତରକୁ ପଶିଲା ।

ତାଜୁବ୍ କଥା । ଗୁନ୍ଦୁଆଡେରି ସର୍କସ ମୈଦାନ ପରି ଏତେ ବଡ଼ ବ'ଟା ମଲ୍ମଲ୍ ଚଟାଣର ବଗିଚା । ସିଏ ଲୁଚି ଲୁଚି ଯାଇ ଦକ୍ଷିଣ ମୁହାଁ ଖୋଲା ଝର୍କାର ଫାଙ୍କ ବାଟେ ଭିତରକୁ ଚାହିଁଲା । ଆଉ ଟିକେ ଭଲ ଦିଶିବ

ବୋଲି ଝରକା ପାଖ କାଠଚମ୍ପା ଗଛର ଡାଳ ଫାଙ୍କରେ ବାକୁଡ଼ି ଘର ଲକ୍ଷିଗଲା । ଗୋଟାଏ ଘରେ କେତେ ରକମର କଣ୍ଢେଇ ବେଲୁନ ନାଲି ନେଳି ଜରି କାଗଜର ତୋରଣ ପୁଣି ଭଳିକି ଭଳି ସ୍ୟାଣ୍ଡେଲ୍ୟରରେ ସଜା ହୋଇଚି । ତା'ଭିତରେ ଶହେରୁ ଅଧିକ କୁନି ପିଲାମାନେ ଭାରି ଦାମୀ ଜାମାପଟାରେ ବେଶ ହୋଇ ମଥାରେ କେତେ ରକମର ସୁନ୍ଦର ସୁନ୍ଦର ପ୍ଲାଷ୍ଟିକ୍ ଆଉ କାଗଜ ଟୋପି ପିନ୍ଧିଚନ୍ତି । କେଇଜଣ ମୁହଁରେ ବାଘ, ଧେଣ୍ଡା, ହାତୀ, ହନୁ ରୂପର କାଗଜମୁଖା ପିନ୍ଧିଚନ୍ତି । ଘରର ଗୋଟିଏ କଣରେ ଝଞ୍ଜା ହୋଇଥିବା ଯନ୍ତ୍ରରୁ ବାଜା ବାହାରୁଚି । ସଙ୍ଗୀତ ଉଚ୍ଛୁଳୁଚି । ପିଲାମାନେ ହର୍ଷ ଉଲ୍ଲାସରେ ନାଚ ଯାଉଚନ୍ତି । ସେ ଭିତରେ ପୁଣି ଟେବୁଲ ଉପରେ ଭଳିକି ଭଳି ମିଠା ଜିନିଷ ଆଉ ସୁଆଦିଆ ଖାଦ୍ୟ ଏତେ ଏତେ ଉଞ୍ଚାରେ ଚଢ଼ା ହୋଇଚି । ପିଲାମାନେ ଯାହା ଖାଇବାର ଖାଇସାରି ବାକିତକ ସମୁଦ୍ର ବାଲିରେ ଖେଳିଲା ପରି ସ୍ୱା ତା' ଆଉଜୁ ଫୋପାଡୁଚନ୍ତି । ହଁ' ହ ତରେ ଧରିଲା ପରି ଗୋଟାଏ ବଡ଼ ପୁଡ଼ିଆ ଝରକା ଦେଇ ବାହାରକୁ ଛିଟିକି ଆସିଲା । ଚନ୍ଦର ଝଅଟ୍ ତାକୁ ଖୋଲି ପକେଇ ଦେଖିଲା ବହଳିଆ ଖିସ ଦର ଜାଉରେ ଜମାଟ ବାନ୍ଧି ଯାଇଥିବା ଭାରି ବଢ଼ିଆ ଖାଇବା ଜିନିଷ । ଖାଇଲା ବେଳେ ଦାନ୍ତ କୋଲ ମାରି ଯାଉଥିଲେ ବି ସିଏ ତାକୁ ଗୁଟି ଚୁଟି ସଫା କରିଦେଲା । ଏବେ କାଠ ଚମ୍ପା ଗଛରୁ ଓହ୍ଲେଇ ଗଲା ଆଉ ବଟବାର ଝର୍କା ପାଖକୁ । ସେଠି ଦେଖୁଚି ପ୍ରାୟ ଅଶିକି ନବେ ମରଦ ମାଇପ ଯୋଡ଼ି ଯୋଡ଼ି ହୋଇ ଦୋହଲି ଦୋହଲି ନାଚୁଚନ୍ତି । ଗୋଟାଏ କଣରେ ଥାକ ଜମା ହୋଇ କେତେ କିସମର ବୋତଲ ଆଉ ଗ୍ଲାସ ରଖା ହୋଇଚି । ସେଥିରୁ ଏଇ ଲୋକମାନେ ଥରକୁ ଥର 'ଚିୟର୍ସ' 'ହ୍ୟାପି ନିଉ ଇୟର' ବୋଲି କୁହାଟ ମାରି ପିଇ ଯାଉଚନ୍ତି । ପୁଣି ନାଚୁଚନ୍ତି, ପୁଣି ପିଉଚନ୍ତି । ଚନ୍ଦର ତିମା ତିମା ଆଖିକରି ଗୁହିଁଚି । ସିଏ ବୁଝି ପାରୁନି ଯେ ଶୀତରେ ମୁର୍ଦ୍ଧନା ଧରି ଯାଉଥିବା ଏତେ ଗମ୍ଭୀର ରାତିରେ ଏ ଲୋକଗୁଡ଼ା ଖାଇ ପିଇ ଆରାମରେ ନ ଶୋଇ କାହିଁକି ଏମିତି ଡଆଁ ଉକୁଟ କରି ଝଡ଼େଇ ହଉଚନ୍ତି ! ଯୋଉତ ନାଚ ! ବଗୁ କାମୁଡ଼ିଲା ପରି କି ବଛୁଆଡ଼ ଘଷିହେଲେ କୁଣ୍ଡେଇ ହବାପରି ଗୁଡ଼ି ପିଟି ହେବାକୁ କ'ଣ ଏଇ ବଡ଼ଲୋକିଆ ମଣିଷମାନେ ନାଚ କହନ୍ତି । ପୁଣି ଦେଖୁଚି

ସେଥିରୁ ଗୁରୁ ଚାଅ ଜଣ ଏକେ ହଙ୍କେଗୋଳ ଭିତରେ ସୋଫା ବେଞ୍ଚ କ ସୁନ୍ଦୁ ତଳକେରେ ଅଚେତ ହୋଇ ଶୋଇ ପଡ଼ିଲେଣି । କେଶ ବାସ ବିପର୍ଯ୍ୟସ୍ତ । ଚନ୍ଦରର ମୁର୍ଦ୍ଧାରୁ ଠୋ ଠୋ କରି କେଇଟା ହସର ଫୁଲିଙ୍ଗ ଉଠିଆସି ତଣ୍ଟି ପାଖରେ ମିଳେଇ ଗଲା । ଧରା ପଡ଼ି ଯିବାର ଭୟ ।

ଦେହ ଅବଶ ହେଇ ଆସୁଛି । ଆଖିରେ ଢୁଳୁ ଢୁଳୁ ନିଦ । କୋଉଠି ଟିକିଏ ଗୋଡ ହାତ ପକେଇ ଶୋଇ ପଡ଼ନ୍ତାନି । ଦେଖିଲା ଗୋଟାଏ ଲମ୍ବା ମଟର ଗାଡ଼ି ଙ୍ଗ ଦେବଦାରୁର ଧୂପ୍ ଛାୟାଚ୍ଛନ୍ନ ତଳେ ପାର୍କ କରିଛି । ତା'ର ପଛ ଦରଜାକୁ ଅଉଁସୁ ଅଉଁସୁ କେମିତି କୋଉଠି ହାତ ବାଜିଗଲା ଦୁଆର ଆପେ ଖୋଲିଗଲା । ଗାଡ଼ିର ପଛ ସିଟ୍ ଉପରେ ହାତ ବୁଲେଇ ବୁଲେଇ ଉଷୁମ ରେଶମ ଚଦର ପରଶ ଯେମିତି ତାଙ୍କୁ କ୍ଷୁମନରେ ଓଟାରି ଆଣିଲା ଗାଡ଼ି ଭିତରକୁ । ଫୁସ୍ ଫୁସ୍ କରି ତା' କାନରେ ଯେମିତି ଶଇଧା ବୁଢ଼ୀ ସେ ପୁରରୁ ଆସି ଗେହ୍ଲାକରି କହୁଛି—

: ହାଲିଆ ହୋଇ ପଡ଼ିଚୁ ଧନ । ଶୋଇପଡ଼ ।

ଗାଡ଼ିର ଗ୍ଲାସ ସିଲିଂରୁ କେଡ଼େ ସୁନ୍ଦର ଭଲ୍ଭର ଖେଳଣା ଠେକୁଆଟିଏ ଝୁଲୁଛି । ତାକୁ ଆଉଁସିଲେ ବ ଘରର ମୁଲାଏମ୍ ଲାଗୁଛି ହୁକ୍‌ରୁ ଠେକୁଆଟିକୁ ଖୋଲି ଦ'ବାହୁରେ ଗ୍ରହଣରେ ଯାକି ଚନ୍ଦରା ସେଇଠି ଶୋଇପଡ଼ିଲା ।

ପାଖାପାଖି ଭୋର୍ । ଶିଶୁମାନଙ୍କ ପାଇଁ ଆନ୍ତର୍ଜାତିକ ଉତ୍ସବର ଏଇଥିଲା ଶେଷ ରଜନୀ । ତା' ସାଙ୍ଗକୁ ପୁଣି ନୂଆ ବର୍ଷର ଅଭ୍ୟୁଦୟ । ପିଲ୍ଲମାନେ କଳରୋଳ କରି ନର୍ଦ୍ଦିଷ୍ଟ ମଟର ଗାଡ଼ି ଗୁଡ଼ିକରେ ଭର୍ତ୍ତି ହୋଇଗଲେ । ଅତିଥି ଅଭ୍ୟାଗତ ଓ ସୁବେଶ ଶ୍ରୀ ପ୍ରମତ୍ତ ବନ୍ଧୁବର୍ଗଙ୍କୁ ଭୂଲୁଣ୍ଠିତ କରି ପାଛିଥିବା ଅଟୋପରେ ଅଭିଜାତ ସ୍ତ୍ରୀ ପୁରୁଷମାନେ ପରସ୍ପର କଣ୍ଠଲଗ୍ନ କରି ବିଦାୟ ଜଣାଇଁ ସେମାନଙ୍କ ମୋଟର ଗାଡ଼ି ଚଢ଼ି ପେଁ ପାଁ କରି ଯିଏ ଯାହା ବାଟରେ ଚାଲିଗଲେ ।

ପିଠିର ମଝି କଙ୍କାଳ ଉପରେ କିଏ ଗୋଟେ ଯୋର୍ ଟାଖଣା ମାରିଲା କି କ'ଣ ଯନ୍ତ୍ରଣାରେ ଚନ୍ଦରର ନିଦ ଚହଁକିନା ଭାଙ୍ଗିଗଲା । ସେ ଦେଖୁଛି ମଟର ଗାଡ଼ି ସାଇଁ ସାଇଁ ଚାଲିଛି । ଆଉ ସେ ପଛ ସିଟ୍‌ରେ ଆଉଜି ବସି କଣ୍ଢେଇ ଠେକୁଆଟିକୁ ଯାବୁଡ଼ି ଧରି ଢୋଳି ଖେଳୁଛି । ସିନ୍ଦୁରା ଫାଟିଲାଣି ।

ପଛକୁ ଧାଇଁ ପଳଉଥିବା ଗଛ, ବୃକ୍ଷ, ନଈ, ପାହାଡ଼ ଓ ଆକାଶର ଅରୁଣାଭ ଲାଲଟ ଯେମିତି ତାକୁ ମୁରୁକିହସା ଦେଇ ଦୃଗ୍ଧ ଆଲିଙ୍ଗନରେ ଛୁଇଁ ଛୁଇଁ ଯାଉଁଛି ଯାଉଛନ୍ତି । ସାମନାକୁ ଗ୍ରହିଁ ଦେଲାବେଳକୁ ତା ରକ୍ତ ପାଣି ଫାଟିଗଲା । ଗାଡ଼ି ଚଳଉ ଥିବା ଲୋକ ଆଖି ଲାଲ କରି ଚିତ୍କାର କରୁଛି ।

: ସଇତାନ୍ ଏ ଭିତରେ କେମିତି ପଶିଲୁ ?

ତାଙ୍କ ବାଁ ପାଖେ ବସିଥିବା ମୁହଁରୁ କସମେଟିକ୍ସର ଠାଏ ଠାଏ ପଲସ୍ତର ଉଠି ଯାଇଥିବା ଚର୍ବିଳ ସ୍ତ୍ରୀ ଲୋକଟି ଗର୍ଜୁଛି ।

: ପାଜି ଟୋକା । ଚୋରି କରିବାକୁ ପଶିଛୁ । ନାଇଁ ? ଏବେ ଟୋଟାଏ ବଜ୍ରମୁଷ୍ଟି ଚନ୍ଦରର ବେକ ଉପରେ । ଚଳନ୍ତା ଗାଡ଼ିରୁ ପଛ କବାଟ ଖୋଲି ଲୋଟେଇବେଳେ ତାକୁ ରାସ୍ତାକୁ ଫୋପାଡ଼ି ଦିଆଗଲା ତା'ର ହେଜ ନାଇଁ ।

ଚେତା ଫେରିଲାବେଳକୁ ଚନ୍ଦର ଦେଖିଲା ଡାହାଣ ଗୋଡ଼ ଆଣ୍ଠୁଠୁଁ ତଳଯାଏ ପର୍ଯ୍ୟନ୍ତ ରକ୍ତରେ ଭିଜିଯାଇଛି । ଅଣ୍ଟାରେ ପ୍ରବଳ ଯନ୍ତ୍ରଣା, ଉଠି ଠିଆ ହେବାର ଶକ୍ତି ନାହିଁ । ତେବେ ଡାହାଣ କଚଟିରେ ଅଧା ଛିଣ୍ଡି ଲଟକିଥିବା ପ୍ଲାଷ୍ଟିକ ଘଣ୍ଟାଟି ଯେମିତି ତା'ର ମୁହଁକୁ ଉଣ୍ଡି ରହିଛି । ଚନ୍ଦର ତାକୁଇ ଗ୍ରହିଁ ଅକାରଣରେ ମୁରୁକି ହସି ପକେଇଲା ।

—O—

# ଫେରାବାଲି

ବହୁ ବର୍ଷ ପରେ ପୁଣି ଦର୍ଶକ ଆସିଛି ଆଜ ସମୁଦ୍ର ଦେଖିବ ବୋଲି । ବେଳାଭୂଇଁରେ ସୁଜମାର୍କା ବାଲୁକା ଶଯ୍ୟା । ଏଠୁଁ କିଛୁ ଲହଡ଼ି ଭଙ୍ଗା ଧାଡ଼ିକ ଧାଡ଼ି ଉତ୍ତୁଙ୍ଗ ପାହାଡ଼ ଶ୍ରେଣୀର ସ୍ଥିର ତରଙ୍ଗ ଅଦୃଶ୍ୟ । ଦୃଶ୍ୟମାନ ଗଡ଼ନାଦୃଶ୍ୟ ତୈଳ ସାନୁର ବକ୍ଷ ଭାଗରେ ଫୁଲହାର ଲଟକି ଥିବା ଫେଣ୍ଟା ଫେଣ୍ଟା ମେଘର ପଟଳ । ତିଆଲେ ଏଇ ତ ଦୃଶ୍ୟଟି ଥାକ ମଗ୍ନ ହୋଇ କେତେ ମନୋଜ୍ଞ ଅଜସ୍ର ତେଜର କୁନି କୁନି ନେଳ ପାଣିର ପାହାଡ଼ । ଆସୁଛି ତଟରେଖାକୁ ଛୁଇଁ ନ ଛୁଇଁ । କପଲ ଫଟା ଅସମ୍ଭାଳ ଦୁଃଖ ପରି ଲହଡ଼ି ପରେ ଲହଡ଼ି । ପୁଣି ଫେରି ଯାଉଛି । ଧାଇଁ ପଳଉଛି ସୁଦୂର ସାଗର ଅଭ୍ୟନ୍ତରକୁ । ଯେମିତିକ କିଏ ତାକୁ ଛୁଇଁଦେବ, ଆକଟି କରିଦେବ ସେଇ ଆତଙ୍କରେ । ଏଇଠି ସେଦିନ ଏତେ ଡାଗର ଆଦିତ୍ୟ ପରି ଫୁଟିକୁ ଥିବା ଯୁଆନ ଟେକାଟାକୁ ଭସେଇ ନେଲା ଲହଡ଼ି ମଝି ସମୁଦ୍ରକୁ; ଆଉ ପୁଣି ଅଚେତ୍ କରି କୂଳକୁ ଟାଣି ଆଣି ଫୋପାଡ଼ି ଦେଇଗଲା ବାଲି ଉପରେ । ଗୁରିପାଟି ଘେରିଗଲେ ବହୁତ ଲୋକ । କେତେ ଆହା ଆହା ଚୁ ଚୁ ପଦ କେମିତି ସନ୍ତରେ କୋଳାଗ୍ରତ କରିନେଲା ତାକୁ । ତାକୁ ସମୁଦ୍ର ବାହାର କରୁଥିବା କେତେ ଲଳନାଯୁବକ ପୌଡ଼ି ବସ୍ତ୍ର ବାଲି ଅଜାଡ଼ି ଦେଇଗଲେ କରୁଣା ଅଯୁମାର । ସେଇଠି ଦର୍ଶକ ପୁଣି ତାକୁ ଆଉ ଥରେ ଦେଖିଲେ । ଶୋଇଛି ସିଏ । ଆଖି ମେଲା ହୋଇ ରହିଛି । ପଡ଼ା ଟେକା ହୋଇ ଯାଇଛି । ସେଇ ସମୁଦ୍ର ପାଣି ପରି ନେଳ ନେଳ ଇଷତ୍ ଖୋଲା ଆଖି । ଏଇଟା କିଏ ଖୋକା କ ? ସୋନାଗାଛିରେ ପ୍ରାୟ ଦଶବର୍ଷ ତଳେ ଏଇ ରୂପ ସିଏ ଦେଖିଥିଲେ, ଏଇମିତି ଭୂଭ୍ରୁମାଳ ଭୂଜଙ୍ଗୀ ନେଳପାଣି ଜୁଆର ପରି ଉଦ୍‌ବେଳ ତୋଳା ଦଇଟା ସଙ୍ଗେ ସଙ୍ଗେ ତାର ପିଠି ପେଟକୁ ଛୁଡ଼ିକୁ ଜାବୁଡ଼ି ଧରି ମାଲିସ ହେଲା, କୃତ୍ରିମ ନିଃଶ୍ୱାସ ପ୍ରଶ୍ୱାସ ଚାଳନା ପ୍ରକ୍ରିୟାରେ ତାର ସମ୍ବିତ୍ ଫେରିଲା । ବାନ୍ତି କଲା ପେଟେ ପିଇଥିବା ପାଣି ଆଉ ମୁଣ୍ଡ ବୁଲେଇ ଏପଟ ସେପଟ ଚାହିଁଲା । ଜନତା ବିଚ୍ଛିନ୍ନ ହୋଇଗଲେ । କେତେଡ଼ି

ପୁଅ ଆଉ ପିଲଟା ବଞ୍ଚିଗଲେ । ହାହାକାର ପାଲଟି ଗଲା ନୀରବ ଆଶ୍ୱାସନା ଆଉ ଅକୁଣ୍ଠ ହସରେ । ଦର୍ଶକ ପାଟି କରି କହିଲେ—

—ଗୁଡ଼ ଗୁଡ଼ ତାକୁ । ମୁଁ ତାକୁ ଜାଣିଛି । ଘରେ ପହଞ୍ଚେଇ ଦେବି । ବାଇଶି ତେଇଶି ବର୍ଷ ଯୁବକ । ଝାଡ଼ି ଝୁଡ଼ି ହୋଇ ବସିଲା କହିଲା ।

—ଘର ! କି ଘର ? ମୋର ତ ଘର ନାହିଁ । ମୁଁ କୁଆଡ଼େ ଯିବିନି ।

—ନ ହେଲା ନାହିଁ । ତୁ ବାପା ମୋ ସାଙ୍ଗରେ ମୋ ଠାକୁରଘରକୁ ଚାଲ । ହୃଷିକେଶ ମଠର ଗୋଟେ କୁଠରୀରେ ମୁଁ ରହୁଛି । ସେଇଠିକି ଚାଲ । ଟିକିଏ ଦହିପଖାଳ ହୋଇଗଲେ ତୁ ତୋର ଯିବୁ । ତା'ର ହାତ ବାହାକୁ କୁଣ୍ଢେଇ ଧରି ଛିଡ଼ା କରେଇଲେ ଆଉ ଗୋଟାଏ ରିକ୍ସା ଚଢ଼ି ଦୁହେଁ ଚାଲିଗଲେ । ବହୁତ ଖୋଳ ତାଡ଼ ପ୍ରଶ୍ନ ପରେ ଯୁବକ କହିବାକୁ ଆରମ୍ଭ କଲା କେମିତି ବାର ଚଉଦ ବର୍ଷ ଭିତରେ ଓଲଟ ପାଲଟ ହୋଇ ଜୀବନ ଯମୁନା ହିଗଡ଼ାହଜା ହୋଇଛି । ବିକ୍ଷିପ୍ତ ଅଣ୍ୟମୂଲ୍ୟ ହୋଇଛି ।

ଦର୍ଶକଙ୍କ ସଙ୍ଗରେ ସେ କାର ପୁରୁଣା ମୁଲାକାତର ବର୍ଷେ ଦି ବର୍ଷ ହିଡ଼ିଛି କି ନାହିଁ ହଠାତ ମା' ତାର କାଉଁ କା କରିବା ପୂର୍ବରୁ ମାଛି ଅନ୍ଧାରରୁ ଉଠି ପୁଅକୁ କହିଛି ।

—ଧନ ମୁଁ ଯାଉଛି । ଗୁରୁଜଣ ଅଭ୍ୟାଗତ ବନ୍ଧୁ କାର ନେଇ ଆସିଛନ୍ତି । ମୁଁ ତାଙ୍କ ସାଙ୍ଗରେ ଗୋଟେ ଦୂର ସ୍ଥାନକୁ ଜରୁରୀ କାମରେ ଯାଉଛି । କାଲି ସଞ୍ଜବେଳକୁ ଫେରି ଆସିବି ।

ମା' ଯାଇଛି ଯେ ଯାଇଛି । ଆଉ ଫେରିବାର ନାଁ ନାହିଁ । ଖବର ସୁରାକଟିଏ ବି ନାହିଁ । କେଇଟା ଦିନ ପରେ କୋଠା ମାଲିକ ଆସି ତାର ଜିନିଷପତ୍ର ବାହାର କରି ଦେଇ ତା' ଦୁଆରେ ତାଲା ଲଗେଇ ଦେଲା ଆଉ ପିଲାଟାକୁ କହିଲା—

—ଯା ଭିକ୍ ମାଗ । ତୋ ବାଟ ତୁ ଦେଖ୍ । ତୋ ମାଆ ଖାଇବାକୁ ନ ପାଇ ଖାଇ ତ କୁଆଡ଼େ ଉଭାନ ହେଇ ସାରିଲାଣି । ମରିଛି କି ବଞ୍ଚିଛି କିଏ ଜାଣେ । ଏ ଘର ଆଉ ଜଣଙ୍କୁ ଭଡ଼ା ଲଗେଇବି ।

ଯେତେ ସେଇ କୋଠାରେ ମାଉସୀ ଆଉ ଲକ୍ଷ୍ମୀ ପରିବାର ହୋଇ ପହଞ୍ଚିଲେ କରୁଥିଲେ କେହି ଠିକେ ତାଙ୍କୁ ଉପରେ ଗୁହାଳିଲେନି । ଖୋକା କହି ବସ୍ତାନି ଫୋପାଡ଼ି ଦେ.' ମାଆ ଆଉ ସିଏ ଏକାଠି ଥିବା ଫଟୋଖଣ୍ଡିକ ଧରିବାତ ରାସ୍ତାରେ ମାରଫତ୍‌ରେ ବୁଲିଲା । ଦି' ଦିନ ହେଲା ଉପାସରେ ଆଉ ଚାଲି ପାରୁନି । ରାସ୍ତାରେ ଗୁଳିଚ । ବେଦବ୍ୟାସ ଗଳିମୋଡ଼ରେ ଗୋଟେ ଗ୍ରେଟ କୋଠାଘର । ତା'ର ଆଗରେ ଟିଆ ହୋଇ ଇଂରାଜୀରେ ଲେଖା ହୋଇ ଥିବା ନେମ୍ ପ୍ଲେଟକୁ ପଢ଼ୁଚି । ସେ ଭିତରୁ ଅଧା ବୟସର ଗୋରା ତକ ତକ ଜଣେ ହୃଷ୍ଟପୁଷ୍ଟ ସ୍ତ୍ରୀଲୋକ ବାହାରି ଚଢ଼ିଲେ ଅଉ ତା ପାଖକୁ ଆସି ପଚାରିଲେ—

— କ'ଣ କରୁଛୁ କରେ ?

ଖୋକା ଚୁପ ରହିଲା ।

—ତୋ ମୁହଁ ତ ଶୁଖି ଯାଇଚି । ତୋର କ'ଣ ବାପା ମାଆ ନାହାନ୍ତି ? ଘର ନାହିଁ ?

ଖୋକା ତଥାପି ଚୁପ୍ । ସେଇ ସ୍ତ୍ରୀ ଲୋକ ଜଣକ ତାଙ୍କୁ ଘର ଭିତରକୁ ଆଦରରେ ଟାଣି ନେଇଗଲେ । ଖାଇବା ପିଇବାକୁ ଦେଲେ, କହିଲେ

—ଭଲ ଚେହେରାର ପିଲା ତୁ । ଭଲ ଘରର ହୋଇଥିବୁ । ଠିକ୍ ଅଛୁ । ମନ ଊଣା କରନି । ଆମରି ଘରେ ରହ ।

ତାଙ୍କ ଘରର ବାବୁ ଧୋତି ଜାମା ପିନ୍ଧି ଏତେ ଉଚ୍ଚା ଫର୍ଚ୍ଚ ମଣିଷ । ସଞ୍ଜବେଳକୁ ଘରକୁ ଫେରିଲେ । ସ୍ୱାମୀ ସ୍ତ୍ରୀ ଦୁଜଣ ଠିକଏ ଆଡ଼େଇ ଯାଇ ଚୁପଚାପ ମସୁଧା ହେଲେ । ତା' କାନରେ ଖାଲି ପଦେଏ କଥା ପଡ଼ିଲା ।

—ବାହାର ବୁଲାଚଲା ପିଲାଟା । ତାଙ୍କୁ ତମେ କାହିଁକି ପୋଷିବା ମନଉଚ ? ଏଗୁଡ଼ାକ କେତେବେଳେ ଚୋରି ଉଚ୍ଚାଟିତ କରି ପଳେଇ ଯିବେ ।

ମାତୃରୂପିଣୀ ସ୍ତ୍ରୀ ଲୋକଟି ତାଙ୍କ ମୁହଁରେ ହାତ ଦେଇ କହିଲେ –

—ଛି ସେମିତି କହନି । ମାଆ ଛେଉଣ୍ଡ ବାପ ଛେଉଣ୍ଡ ଭଳି ଲାଗୁଚି । କେହି ତାର ନାହାନ୍ତି । ଆମର ତ ପିଲା କବିଲା ନାହାନ୍ତି । ଆମେ ତାଙ୍କୁ ପାଳିବା । ତମେ ମନା କର ନାହିଁ ।

ଖୋକା ସେଇ ଘରେ ରହିଲା । ବଢ଼ିଲା । ଏଇ ଅମଳ କଗ ବାପା ମା'ଆଙ୍କ ଆଦର ସ୍ନେହ ପାଇଲା । କନ୍‌ଭେଣ୍ଟ ସ୍କୁଲ ପଢ଼ା ଶେଷ ହେଲା । ତା' ପରେ ଆଇ. ଏସ୍. ସି.ରେ ନାଁ ଲେଖେଇଲା । ମନ୍ଦ ପଢ଼ୁ ନଥିଲା । ଭାଗ୍ୟ ଆକାଶରେ ପୁଣି ଅଜବ ଧୂମକେତୁ । କ'ଣ ଗୋଟାଏ ଦଙ୍ଗା ହେଙ୍ଗାମା ଚାଲିଲା ସହରରେ । ଦୁ' ଦଳ ସାଇ ଗୋଷ୍ଠୀ ଭିତରେ ଘାରି ହଣା କାଟ । ଘାରି ହେଙ୍ଗାମା । ସବୁବେଳେ ଏପାଖେ ସେପାଖେ ପୁଲିସି ଗାଡ଼ିର ଦଉଡ଼ । ଅଣ୍ଟାରେ ହାତରେ ଦଉଡ଼ି ବନ୍ଧା ହୋଇ କେତେ ଲୋକ ସାଇରୁ ବସ୍ତିରୁ ଏଠି ସେଠୁ ଗିରଫ ହୋଇ ପୁଲିସ ଗାଡ଼ିରେ ବୁହା ହୋଇ ଚାଲିଲେ । ହଠାତ୍ ଦିନେ କଲେଜରୁ ଫେରି ଖୋକା ଦେଖେ ଯେ ଘର ଦାଣ୍ଡ କବାଟ ସାମାନା ଗେଟ୍ ସବୁ ମୁକୁଳା । ଘର ଜଗିଥିବା କୁକୁରଟାର ବି ଭୁକାଭୁକି ନାହିଁ । ଶୋଇବା ଘରକୁ ପଶିଯାଇ ଦେଖେ ଯେ ତାର ପୋଷିଆ ବାପା ମ ଦିଟା ରକ୍ତରେ ଜୁଡ଼ୁବୁଡ଼ୁ । ମା'ର ବେକ ମାନ୍ଥ ଗାଲିସି ପରି ଅଧେ ହଣା ହୋଇ ଝୁଲୁଛି । ବିକଳ ହୋଇ ଦଉଡ଼ି ଆସିଲା ବାହାରକୁ । ସଇଟା ଜାକ ଶୁନ୍ ଶାନ୍ । ଏଇ ସମୟରେ ଗୋଟାଏ ଘୋଡ଼ାଗାଡ଼ିରେ କିଛି ଧୋବ ଧାଉଳିଆ ଲୋକ ଆସି ପହଞ୍ଚିଗଲେ । ନେତା ଭଳି ଦିଶୁଛନ୍ତି । ଜଣେ ଆସି କହିଲା ।

—ରେ ଟୋକା କାହିଁକି ଏଠି ଠିଆ ହୋଇଚୁ ? ଏଠୁ ପଳେଇ ଯା । ଏ ବସ୍ତିରେ ନିଆଁ ଲଗେଇ ଦିଆଯିବ । ଜାଣିନୁ କି ଏଇଠି ବୋମା ତିଆରି ହେଉଚି । ଜନସଂଘୀ ବାଲା ଆନନ୍ଦମାର୍ଗୀବାଲା ସବୁ ଅସାଧୁ ଅସତ କାମ ଏଇଠି କରୁଛନ୍ତି । ସେମାନେ ତ ନିପାତ ହୋଇ ସାରିଲେଣି । ତୁ ଶାଳା ଏଠି କ'ଣ କରୁଛୁ ? ଭାଗ୍ ଏଠୁ ।

ଖୋକା ହତବାକ୍ । ମା'ର ଟ୍ରଙ୍କ ଖୋଲି ଯାହା କିଛି ପଇସା ପତ୍ର ପାଇଲା ଗୋଟେ ମୁଣିରେ ପକେଇ ସେ ଷ୍ଟେସନକୁ ଚାଲି ଆଇଲା । ଆଉ ଯୋଉ ଗାଡ଼ି ପ୍ରଥମେ କଳକଳା ହୁଇସିଲ ମାରି ଷ୍ଟେସନ ଛାଡ଼ିବାକୁ ସଙ୍କେତ ଦେଲାଣି ସେଇଥିରେ ଉଠି ପଡ଼ିଲା । କମ୍ପାର୍ଟମେଣ୍ଟର ଚଟାଣ ଉପରେ ଶୋଇ ଯାଇଚି । ନିଦ ଭାଙ୍ଗିଲା ବେଳକୁ ଯୋଉଠି ଗାଡ଼ି ଅଟକିଚି ସେଇଠି ଓହ୍ଲେଇ ଗଲା । କିଏ ଜଣେ କହିଲା—

—ଏଇଟା ଶ୍ରୀକ୍ଷେତ୍ର । ପୁରୀ । ଜଗନ୍ନାଥ ଧାମ । ଏ ଶବ୍ଦଗୁଡ଼ାକର କୌଣସି ଅର୍ଥ ବା ତର୍ଜମା ତା ଜ୍ଞାନ ଗୋଚରରେ ନ ଥିଲା । ସିଏ ଓହ୍ଲେଇ ପଡ଼ିଚି ।

ଯୁ‌ଦ୍ଧ ପର୍ ଖୋକା ଏ ଦୁନିଆରେ ବହୁତ ଇନ୍ଦ୍ରଧନୁ ପ୍ରେମ ରକ୍ତପାତ ଆତଙ୍କ ପ୍ରଣିପାତ ଯୁଦ୍ଧଂ ଦେହି ପ୍ରମତ୍ତ ଶୋଣିତର ସ୍ଫୁଲିଙ୍ଗ ଆଉ ଅନେକ ଅନେକ କଥାର କଳ୍ପରୂପ । ସବୁ ନୂଆ ହେଉଥିବା ଘଟଣାବଳୀ ଉଠି ଆସୁଚି ସମୁଦ୍ର ଜୁଆର ପରି, ଝଡ଼ ଚମକପ୍ରଦ ଆଉ ନିର୍ବିକାର ଢଙ୍ଗରେ; ଲୋମ ହର୍ଷଣକାରୀ ଦୁର୍ଦ୍ଦାନ୍ତ ନୈରାଶ୍ୟ ଜୀବନ ଯୋଗ ଦେଉଚି ସିଏ । ଜଠରାଗ୍ନି ଜଳୁଚି । କିଏ ଜଣେ କହିଲା—

—ଯାରେ ଟୋକା ସିଂହ ଦୁଆରକୁ । ସେଇଠି ଅଧିଆ ପଡ଼ିବୁ । ବାସ ମିଳିଯିବ । ଆହାର ମିଳିଯିବ । ହାତ ଖଣ୍ଡିଆ ଗୋଡ଼ ଖଣ୍ଡିଆ ପ୍ରଭୁ । ଶରଣ ପଶିବା ଶିଖ ।

କିଛି ନ ବୁଝି ନ ଶୁଣି ଖୋକା ଯାତ୍ରିଙ୍କ ଭିତରେ ଯାଇ ସିଂହ-ଦ୍ୱାରରେ ପହଞ୍ଚି ଗଲା । ପ୍ରବଳ ଭୋକ । ହାତ ଗୋଡ଼ରେ ଆଉ ଦମ୍ଭ ଟିକିଏ ବଳ ଟିକିଏ ନାହିଁ । ଯେଉଁଠି କଣି ଆଙ୍ଗୁଠି ବହଳର ସୁଡ଼ାମୁଣି ଭିତରେ କେବଳ ପଶି ବନ୍ଦ ହଉଚି ତାର ଦୋକାନ ପିଣ୍ଡିରେ ଚୌକାଠ୍ ଶୋଇ ପଡ଼ିଲା । କେତେବେଳେ ରାତି ଯାଇ ସକାଳ ହେଉଚି ଜଣାନାହିଁ । ଲାଗିଲା ଯେମିତି ତାକୁ ତା ମୁଣ୍ଡର କୁଞ୍ଚ କୁଞ୍ଚ ଅଳିଆ କେଶକୁ କିଏ ଗୋଟେ ସାଉଁଳୁଚି । ଚମକ ପଡ଼ିଁ ଦେଲା । କୋଡ଼ିଏ ବାଇଶି ବର୍ଷର ଝିଅଟାଏ । ସାବନା ରଙ୍ଗ । କପାଳ ଉପରେ ଗୋଟାଏ କଟାଦାଗ । କୋଉ କାଳରୁ ମୁଣ୍ଡରେ ତେଲ ଲାଗିନ । ନୁଖୁରା ହେଇଚି । ବସୁଣୀ ଭଳି ଇତସ୍ତତଃ ଉଡ଼ି ବୁଲୁଚି ଫର୍ ଫର୍ ଅବିନ୍ୟସ୍ତ ତା'ର ମୁହଁ ଉପରେ । ହେଲେ ଭାରି ସୁନ୍ଦର ଚକାମୁହଁ । ଆଖିଗୁଡ଼ାକ କଥା କୁହା କୁହା ଜଳିଲା ଜଳିଲା । ସିଏ ଗୋଟାଏ କଳା କନ୍ ପ୍ୟାଣ୍ଟ ପିନ୍ଧିଚି ଆଉ ମଇଳା ଧଳା ର୍ଟସ୍ ଗାୟକଙ୍କ ପରି ଗୋଟେ ତିଳି କୁଞ୍ଚ କୁଞ୍ଚ ଧଳା ଡଟ୍ଟା ବେଲ୍ଟ ନର୍ ।

—ଉଠ ମ ଉଠୁନା । ମୁଁ ତୋର କଲିଠୁ ପିଛୁ କରଚି ।

—ତୁ କିଏ ?

ଝିଅଟା ବେହେଡ଼ା ଭଙ୍ଗିରେ ଖିଲ ଖିଲ ହସି କହିଲା—

—ନାଁ ପଚାରୁଚ ? ଝିକନା ! ମୋ ବାପା ମାଆ ଦେଇଥିଲେ ନାଆଁ । ମୁଁ ମୋ ନାଁ ଦେଇଚ କ'ଣ ଜାଣିଚ ? ସୀତା ଠାକୁରାଣୀ କ'ଣ ବୁଝିଲୁ କହୁ ?

ଝିଅଟି ପୁଣି ନକଲଠା ଭାବରେ ଆଉଥରେ ତମ ହସି ହସି ଗଡ଼ିଗଲା । ଅଜାଣତରେ କେଜାଣି ଖାର ଭଲ ଲାଗିଲା ଖୋକାକୁ ଏଇ ଝିଅଟାର ଉଲଙ୍ଗ ଆତ୍ମାର ଆଳିଙ୍ଗନ । ଝିଅଟି କହିଲା—

—ଦେଖେ ତୁ ଆମ ସାଙ୍ଗରେ ମିଶି ଯା' । ଆମର ଗୋଟେ ଜଙ୍ଗଲ ଅଛି । ବେଶ୍ ପଇସା ପଡ଼ ମିଳିବ । ପେଟ ପାଟେଣା ଗୁଜୁରାଣ ମିଳିଯିବ । ସବୁ ସହରରେ ଆମର ବ୍ରାଞ୍ଚ ଅଛି । ଜଲନ୍ଧରଠୁଁ ଆରମ୍ଭ କରି କଲିକତା ଠୁ ବମ୍ବେ, ଶ୍ରୀନାକୋଳମ୍, କୋରାପୁଟ, ନୟାଗଡ଼, ପୁରୀ, ଭୁବନେଶ୍ୱର, ବାଲେଶ୍ୱର; ଦିଲ୍ଲୀ, ମାଡ୍ରାସ ସବୁଠି ଆଡ୍ଡା । ତୋର କିଛି ଅସୁବିଧା ହବନି । ଏତେ ଚଢ଼ିଆ ହାଡ଼ୁଆ ମାଉଁସିଆ ଦେହ ପାଇଚ ଯୁ କୁ ବରବାଦ କରିବୁ କାହିଁକି ? ଆ ଚାଲିଆ ମୋ ସାଙ୍ଗରେ ।

ଝ ଉଦ୍ଧୁଡ଼ ହେଇ ଉଠି ବସି ଖୋକା ଚାହିଁଲା ଉପରକୁ । ଗୋଟାଏ ଘର ଡେଙ୍ଗା ଦେଉଳ । ତା' ଶୀର୍ଷରେ ଗୋଟାଏ ବଡ଼ ଯୋଡ଼ିଏ ଆଉ ତା' ତଳକୁ ସାନ ଯୋଡ଼ିଏ ବାନା ଲହଲହ କରୁଚି । ଆକାଶକୁ ଖଟେଇ ହଉଚି କି ? ତାକୁ କାହିଁକି ହସ ଲାଗିଲା । ଯାର ଭିତରେ ପୁଣି ଗୋଟେ ଜଗତ ଠାକୁର ଅଛି । ସେ କୁଆଡ଼େ ସବୁ ଭଲ ମନ୍ଦ ବୁଝୁଚି । ସବୁ ପିସାଦ ଚାଲିବାକି ।

—ଚାଲରେ ଝିକନା । ଚାଲିଲୁ । ମତେ କ'ଣ ଖାଇବାକୁ ଦେ ।

ଝିଅଟା ଠିଆ ହେଇ ପଡ଼ିଲା । ବେଶ୍ ଡେଙ୍ଗୀ ଝିଅ । ଖାଲି ଉଛତ ଆଉ ଖୋଲା ମିଞ୍ଜାସ ବୋଲି ତା ଦେହ ହାତ ଗୋଡ଼ ଆଉ ଚାଲିର ଠଣି କହି ଦଉଚି । ଝିକନା ତା' କାନ୍ଧରେ ହାତ ପକେଇଲା । ବାଁ ପାପୁଲିକି ତା' ବାଁ ପାପୁଲିରେ ଜାବୁଡ଼ି ଧରିଲା ଆଉ ଓହଳିଲା ଭଳି ତା ପିଠିରେ ଲଟକି ଚାଲିଲା ।

—ଆମେ ବସରେ ଯିବା ଗୋଟେ ବଡ଼ିଆ ଯାଗାକୁ । ଯେଉଁଠି ତୁ ମୁଁ ଆଉ ଆମ ଜଙ୍ଗଲର ଲୋକେ ସମସ୍ତେ ଏକବାରେ ସୁରକ୍ଷିତ ଆଉ ମସଗୁଲ । ଦେଖିବୁ କେମିତ ମେହଫିଲ ସରଗରମ । ତୋ ନାଁ କଣ କହେରେ ?

ଖୋକା ତା'ନାଁ କହିଲା । ଝିଅଟା ପୁଣି ତା' ଉପରେ ଲେପଟି ପଡ଼ି ତା ବାଁକାଣ୍ଡକୁ ଠିକଏ ଦାନ୍ତରେ ଚମକ ଦେଇ କହିଲା—

— ତତେଇ ମୁଁ ଖୋଜୁଥିଲି । ତୁଇ ମୋର ଆତ୍ମା । ତତେ ମୁଁ ନଜର କରିବ । ଠିକନା ଆଉ ଖୋକନା ଦୁଇଟା ଦଣ୍ଡା ବାଜୁଙ୍ଗା ଅସଲ ମନଲଖି ଯୋଡ଼ି । କ'ଣ ସମଝିଲୁ ?

ଖୋକନାକୁ ଭଲ ଲାଗୁଥିଲା । ଉଦାସ ଲାଗୁଥିଲା । କାନ୍ଦିବାକୁ ଇଚ୍ଛା ହେଉଥିଲା । ଠୋ ଠୋ ହସିବାକୁ ବି ।

—ଚାଲ ବସ୍ ଚଢ଼ିବା ।

—କୋଉ ବସ୍ ?

ଗୋଟାଏ ପ୍ଲେଟ ଭଙ୍ଗା ଆଟିକାରୁ ତୁଳସୀପରି ମହକୁଥିବା ଜାଇଫୁଲ ପରି ଧଳା ଭାତ ମିଠା ହରଡ଼ ଡାଲି ଆଉ ମନ୍ଦାର ବେଶର ଶାଗ, ତାକୁ ଗୁଣ୍ଡା ଗୁଣ୍ଡା କରି ଗୋଳେଇ ଠିକନା ଖୁଆଇ ଦେଲା ସେଇ ବସ ଭିତରେ । ଗୋଟାଏ ବୋତଲରୁ ପୁରା ବୋତଲେ ପାଣି ପିଆଇ ଦେଲା । ମୁହଁ ପୋଛି ଦେଲା ତା ଜାମାର ସ୍ଲିଭରେ ଆଉ ଶୁଆଇ ଦେଲା ତା' କୋଳ ଉପରେ । ବସ ଚାଲିଚ । ଏ ବାଟ ଯେମିତି ସରୁନି । ଢୁଙ୍ଗୁଡ଼ି ମାରି ଖୋକା ଶୋଇଚ । ପ୍ରାୟ ଆଠ ଚାରିଶି ଘଣ୍ଟାର ରାସ୍ତା । ବସ ରହିଲା ବେଳକୁ ତାକୁ ଲାଗୁଚ ଭୋର୍ ହେଇ ଆସୁଚ । କିନ୍ତୁ ସତରେ ସେଇଟା ସଞ୍ଜବେଳ । ଦି ଜଣ ଯାକ ଠେଲି ଠେଲି ବସରୁ ଓହ୍ଲେଇଲେ । ରାସ୍ତାର ଏକ ଚଉଛକ ଯାଗାରେ ଓହ୍ଲେଇଚନ୍ତି । ଜନମାନବର ସୁରାକ ନାହିଁ । ପାଖରେ କୌଣସି ବସ୍ତି ଥିଲା ଭଳି ଦିଶୁନି ।

—କହେରେ କୋଉଠିକି ଆଣିଚୁ ମତେ ?

—ଚାଲରେ ଶାଲା । ଠିକ୍ ଯାଗାକୁ ଆସିଚୁ । ଚାଲ । ତୁ ପରା ମୋ ଖୋକନା । ତତେ କଣ ମୁଁ ହରକତ୍ କରିବି । ଏଇଟା ବୁଝିଲୁ ଓଡ଼ିଶାର

କାଶ୍ମୀର୍ ବୋଲି କହନ୍ତି । ଜଲ୍ଲା କୋଉଠୁ । ଆମର କାରବାର ସବୁ ଏଇଠୁ ସୁରୁ ହୁଏ । ଏଇ ବଣରେ ଦିନ ରାତି ଚବିଶି ଘଣ୍ଟା ନିବୁଜ ଅନ୍ଧାର । ଖୋଦ୍ ସୂର୍ଯ୍ୟ ମହାପ୍ରଭୁଙ୍କୁ ଏଇ ଗଛ ବୁଛ ପତ୍ରଗହଳର ଅନ୍ଧାର ଭିତରେ ନିରେଖିବାକୁ ବି ଭୟ । ହେଲେ ତୁ ଆଉ ମୁଁ ଆଉ ଆମ ଜଙ୍ଗଲର ସଭିଏଁ ଏଠି ନିରାପଦ । ଚାଲ୍ ଦେଖିବୁ ଆମର ଚରାଭୂଇଁ ଆମର ସାମ୍ରାଜ୍ୟ । ମତେ ରାଣୀ କରିବୁ ତ ମୁଁ ତତେ ସମ୍ରାଟ କରିଦେବି । ବୁଝିଲୁ ?

ଗୁଇଁ କରି ଉଠି ଆସି ଝିଅଟା ତା ବେକ ଉପରେ ଗୋଟାଏ ତାତଲା ଚୋକ ଥାପିଦେଲା । ଖୋକାକୁ ଲାଗୁଚି ଯେମିତି ତାର ସ୍ୱର୍ଗାରୋହଣର ଇଏ ହଉଚି ପ୍ରଥମ ପାଦ । ଯେତିକି ମନେ ପଡ଼ୁଚି ଗୋଟାଏ ଗ୍ରେଟିଆ ଗୁଡ଼୍ ଶଗଡ଼ ତଳେ ଅଖରେ ବନ୍ଧା ହେଇଚି ମିଞ୍ଜି ମିଞ୍ଜି ଲଣ୍ଠନଟାଏ । ସେଇ ଗୁଡ଼୍ ଭିତରକୁ ପଶି ବସିଲେ ଦି ଜଣ ଯାକ । ତଳେ ହାତେ ବହଳର ନଡ଼ାର ଶେଯ । ଖୋକାକୁ ଘାରି ନିଦ । ଝିକନା କାନ୍ଧରେ ଆଉଜି ଶୋଇ ପଡ଼ିଲାଣି ସିଏ । ଜମକ ଦେଇ ଧୀର ଧୀର ଗଳିଚି ଶଗଡ଼ । ପହଞ୍ଚିଲାବେଳକୁ ଦେଖୁଚି ତିନିଆଡ଼େ ଗ୍ରେଟିଆ ଲମ୍ବା ପାହାଡ଼ ଚେଇଛି । ଘେରି ରହିଚି । ଉପରେ ଗୋଟିଏ ଭଲ ଏକ ବିରାଟକାୟ ଚତୁଃକୋଣୀ ପଥର । ଭିତର ଦେଇ ସୁଡ଼ଙ୍ଗ । ସେ ଭିତରେ ଏଠି ସେଠି ହେଇ ଗୁରି ଛଅଟା ଦଉଡ଼ିଆ ଖଟ । ଗୋଟାଏ କଣରେ ଗୋଟାଏ ଅତିକାୟ ଚୁଲି ଉପରେ ଟେକିଚି ବସିଚି ଆଉ ତା ଭିତରୁ ମାଉଁସ କଷା ହଉଥିବା ବାସ୍ନା । କାନ୍ଥ ବାହାରେ ଆଉଜା ହେଇଚି ଛଅଟା ଦି ନଳିଆ ବନ୍ଧୁକ ତା ଉପରେ ଚମଡ଼ା ବେଲଟ୍ ଗୁଡ଼ାକ ଓହଳି ହେଇ ଝୁଲୁଚି । ସେଥିରେ ସିଲେଇ ହେଇଛି ପ୍ରାୟ ପଚାଶ ଶହେ ନାଲି ଖୋଳର ଟଳି । ମେଜ ବୋଇଟା ବି ଅଛି । ଚଉକି ଗୁରି ଛଅଟା । ତା ଉପରେ ପାଣି ଜାଗା, ଖାଲି ବୋତଲ । ଗୋଟାଏ ପୁରୁଣା ଟ୍ରାନ୍‌ଜିଷ୍ଟର ଆଉ ଗୋଟେ ଟାଇମପିସ୍ ମଧ୍ୟ । ଝିକନା ପାଟି କଲା—

—ଆରେ ତମେ ମରିଗଲଣି କି ସବୁ ? ଆସ ବାହାରକୁ । କିଏ ଆସିଚି ଦେଖ ।

କୋଉ କଣରେ ଲୁଚି କରିଥିଲେ ନା କ'ଣ ଦୁଇଜଣ ପୁରୁଷ ଓ ଆଉ ଜଣେ ସ୍ତ୍ରୀ ଲୋକ ବାହାରକୁ ଦୌଡ଼ି ଆସିଲେ । ସମସ୍ତଙ୍କର ଦମ୍ଭିଲ ଉଦ୍ଦୀପ୍ତ ଠାଣି । ସଳଖ ହୋଇ ଠିଆହୋଇଛନ୍ତି । ଆଖି ସମସ୍ତଙ୍କର ସନ୍ଦିଗ୍ଧ । କେଶ ଅବିନ୍ୟସ୍ତ । ମୁହଁରେ ବେଳାଏ ବାଦାମୀ ରଙ୍ଗର ନିଶଦାଢ଼ି ଥିବା ଜଣେ ପୌଢ଼ । ମଧ୍ୟବୟସ୍କା ସ୍ତ୍ରୀ ଲୋକଟିର ପୁରା ମୁରବିଆନା ଠାଣି । ସିଏ ଗୋଟାଏ ଅଣକ ହାତରେ ଧରିଛି । ପଚାରିଲେ —

କାଲେ ଝିଅ ଏତେ ଡେରି କାହିଁକି ?

—ମାଉସୀ କ'ଣ କରିବ । ଏଇ ଟୋକାଟାର ପିଛୁ କରୁଥିଲି । ଆମ ସାଙ୍ଗରେ ରହିବ ବୋଲି ମନେଇଁ ଆଣିଛି । ତାକୁ ଦୁଇନମ୍ବର ଗୁମ୍ଫିରେ ରହିବା ବ୍ୟବସ୍ଥା କରିଦିଅ । ଭାରି ଥକା ଯାଇଛି । କିଛି ଖାଇ ନଥିଲା । ଗୋଟେ ମହାପ୍ରସାଦ ପୁଡ଼ିଆ ଜୁଟେଇ ଦେଇଛି । ଦେଖିବ ସକାଳକୁ କେମିତି ତାଜା ହୋଇଉଠିବ ।

ଏବେ ପୌଢ଼ା ସ୍ତ୍ରୀ ଲୋକଟି ବାଟରେ ଏକ ଜାଣିସିଆଣୀ ଆଖିମିଟିକା ମାରି ଗାଧୋଇବା ପାଇଁ ବାହାରିଗଲା । ମାଉସୀ ଟିକିଏ ହସି ଖୋକାର ମଥାର କେଶକୁ ହାତରେ ଆଲଗା କରିଦେଲେ । କହିଲେ —

— ଚାଲ ତୁ ତ ଆମର ଅସଲ କୁଣିଆଁ । ତତେ ବି ମାଲିସ କରିବି । ହେପାଜତ କରିବି । ଏ ଝିଅଟା ସାଙ୍ଗରେ ଚାଲ ।

ତା ଆରଦିନ ସକାଳ ପର୍ଯ୍ୟନ୍ତ ଖୋକାର ଆଉ ଆଖି ଫିଟି ନଥିଲା । ପ୍ରଲମ୍ବ ନବପଦ ଉଶ୍ୱାସ ନିଦର ଆଲିଙ୍ଗନ ଆଉ ଟିକିନାର ସ୍ପର୍ଶରେ । ଅନୁରାଗରେ ଛିଣ୍ଡା ଛିଣ୍ଡା କମନୀୟ ଶ୍ରାବଣୀ ସ୍ୱପ୍ନ । ସୁଡ଼ଙ୍ଗ ପଥର କାନ୍ଥରେ ଭରାଦେଇ ସେ ଆଉଜି ବସିଛି । ମନେ ପଡ଼ୁଛି ଜଣେ ଭାରି ନାମଯାଦା 'ସାୟେର' ଆସିଥିଲେ ତା'ର ମା'ର ଅତିଥି । ଏଇ ମର୍ମରେ ଗୀତ ସିଏ ଗାଇଥିଲେ ସେତେବେଳେ ବିଖ୍ୟାତ ଗଜଲ ।

—ରେ ପ୍ରାଣପକ୍ଷୀ, ରେ ମନ ପବନ, ତୁ ମତେ ଏଇମିତି ଏକ ଭୂଖଣ୍ଡକୁ ନେଇ ଯାଆ ଯୋଉଠି ଆଉ କେହି ନଥିବେ । ସେଠି ସମ୍ପୂର୍ଣ୍ଣ ନିଷ୍କାଞ୍ଚନତା, ସନ୍ନାଟା ବିରାଜମାନ କରୁଥିବ । ସେଠି ଦୟା ଦେଖାଇବାକୁ,

ଖଳାପ କରିବାକୁ, ପିଠିରେ ମଥାରେ ହାତ ଆଉଁସିବାକୁ କେହି ନ ଥିବେ ।

ସିଏ କ'ଣ ଏମିତି ଜାଗା ମନେମନେ ଖୋଜୁଥିଲା । ହେଲେ ଏଠେଇଁ ଗୋଟେ ବାଯୁଖିଆ ଭୁରୁଭୁରୁ ବାଗ୍ରାର ସ୍ୱପ୍ନରେ ବାନ୍ଧି ହେଇଯିବା ପାଇଁ ଜାଲ ମେଲେଇ ବସିଛି ପଗିଟିଏ । ଷୁରଧାର ପରି କଟାକ୍ଷ ଆଉ କଥାର ଗୃଙ୍ଗି । 'ଟିକନାକୁ' ମନରୁ ପୋଛିବା ମୁସ୍କିଲ ।

ଝିଅ ପିଲାଟା ହେଲେ କଣ ହେଲା ଟିକନା ହିସାବରେ ବାଘୁଣୀ ପରି ଓଜ । ମାଂସପୁଷ୍ଟ ଲଥ ଇଞ୍ଚ ଡେଙ୍ଗା । ବଳିଲା ବଳିଲା ମାଉଁସିଆଁ ଶରୀର । କେଶ୍ ଉଜଳ ଡାଉଳ ବି । ହେଲେ ସଭିଙ୍କ ଭିତରେ ସବୁଠୁଁ ତାଗଡ଼ା ଆଉ ଆକର୍ଷଣୀୟ ଥିଲା ଖୋକା । ତାର ବେକମୂଳ ଶିରାରେ । ଖୋଲା ଟ୍ରଙ୍କରେ ପିଠିରେ ମୁହଁର ହନୁହାଡ଼ ଉପରେ ବାଇଲନ ଦଉଡ଼ି ପରି ଲମ୍ବି ଆସିଥିବା ମାଂସପେଶୀ ଉପରେ ହାତ ବୁଲେଇ ଟିକନା କହେ ଯେ—

— ଏଇ ହବ ଦେଖିବ ଆମର ସର୍ଦ୍ଦାର । ଗୃହୀଁଲେ ଖୋକା ସବୁ କଷ୍ଟ କରିପାରିବ । ପାହାଡ଼ ଟଳେଇ ଦବ । ସମୁଦ୍ରକୁ ଶୋଷି ନବ ଇତ୍ୟାଦି ଇତ୍ୟାଦି ।

କେଉଁ ସୂକ୍ଷ୍ମ ବୁଦ୍ଧିରେ ଜାଣି ପରିଥିଲା ଟିକନା ଯେ ଖୋକାକୁ ଫୋଷା ମନେଇବା କାଠିକର ପାଠ । ଭାରି ଗୁମାନିଆ, ଭାରି ମନୁଆ ଏଇ ଖୋକା । କ'ଣ ଯେ କ'ଣ ସବୁବେଳେ ଭାବୁଥାଏ ଆଉ ପାହାଡ଼ ଚୂଡ଼ାକୁ ଆକାଶକୁ ଗୃହିଁ ବେଳେ ବେଳେ ମୁରୁକି ମୁରୁକି ହସୁଥାଏ ସୁଦୁ ଅକାରଣରେ । ଦି ସପ୍ତାହ ଖଣ୍ଡେ ତାକୁ ହେପାଜତ କଲା ପରେ ଟିକନା ଖୋକାର 'ହିଁ' ବାହାକୁ ଧରି ତା ଆଖିରେ ଉଷ୍ମ ପଲକ ବନ୍ଦେଇ କହିଲା ତାର ଭୂତ ଭବିଷ୍ୟତ ଆଉ ବର୍ତ୍ତମାନର କାହାଣୀ । ଯେତେ ଯୋଜନା ପ୍ଲାନ ସିଏ ଏଇନା ହାତକୁ ନେଇଚି, ସେ ଟୁଡ଼ାକ ସତକ ସହଜ ହାସଲ କରିବାକୁ ହବ ।

ଟିକନା ଧନୀ ଖଣ୍ଡାୟତ ଘରର ଝିଅ । ତାକୁ ବାହାହେବାରୁ ଜବରଦସ୍ତ ପାଖ ସହରର ଗୋଟାଏ କଏ ମଇଁଷି ପରି ମୋଟା ଭୁଷୁଣ୍ଡା ଓଜାଲ ଟୋକା ହି ଗୃହିଁଟା ଗୁଣ୍ଡାଙ୍କୁ ଲଗେଇ ଟେକି ଆଣିଥିଲା ଅଧ ରାତିରେ ।

ଆଉ ଢ଼'ଦିନ ଅଟକେଇବାପରେ ଘୁଡ଼ ଦେଇ ଗଲା ରାସ୍ତା ଡକର ଏକ ଶଙ୍ଖ ଗୁମ୍ଫିରେ ରକ୍ତାକ୍ତ ଅବସ୍ଥାରେ । ଠିକଣା ଆଉ ଘରକୁ ଫେରନ୍ତି । କିନ୍ତୁ ବୁଲି ବୁଲି ଜୀବନ ଯାପନର ବହୁତ କର୍ଦ୍ଦମାକ୍ତ ଅସହାୟ ଅଳୀକ ଦାଣ୍ଡମାୟୁ ଚେହେରା ଦେଖି ଆସିଛି ସହର ବଜାର ବିପ୍ପଣୀ ଗଣିକାଳୟ ଅଫିସ ଦପ୍ତର କୋର୍ଟ କଚେରୀ ହବୁଠି । ଶପଥ ନେଇଛି ସେଇ ଦିନୁ, ସିଏ ମାରିବ । ଜୀବନରେ ମାରି ଦବ । ନିପାତ କରିଦବ ଏଇ ଯେତେ ସମାଜ ବୁକୁ ଉପରେ ଝକମକ ରଙ୍ଗରେ ଉହ୍ଳି ଥିବା ଅଳନ୍ଧୁ ଆଉ ସଭ୍ୟ କାକୁସ୍ଥ କଦାକାର ମଣିଷଗୁଡ଼ାଙ୍କୁ ଯୋଉମାନେ ରକ୍ତ ଶୋଷି ମୋଟା ହୁଅନ୍ତି, ସମାଜପତି ହୁଅନ୍ତି । ଯେଉଁମାନେ ନେତା ହୁଅନ୍ତି, ଅପରନ୍ତରର ହାହାକାର ଭିତରୁ ପଦ୍ମ ତୋଳନ୍ତି ଆଉ ତାକୁ ପୁଣି ମକଚି ମକଚି କରି ଦଳି ରାସ୍ତାକଡ଼କୁ ଫୋପାଡ଼ି ଦିଅନ୍ତି ।

—ଶୁଣ ଖୋକା ଏଇମିତି କେତେଟା କାମ ହାତକୁ ନେଇଚି । ତୋର ମଦଦ୍ ଦରକାର । କଣ କହୁଚୁ ?

ଖୋକା ତାକୁ ଗୁହାଁଳା ଦଣ୍ଡେ ।

—କହନୁ ।

— ଶୁଣ ତେବେ । ପ୍ରଥମ କଥା ହେଲା ଏମିତି ବାଳ ଛୁଣ୍ଡେଇ ମରିବା ଅପେକ୍ଷା ମାରିବାଟା ଆହୁରି ଭଲ । ଏ ଭିତରେ ଢ଼'ଟା ବ୍ୟାଙ୍କ୍ ଆମେ ଲୁଟ କରିଚୁ । ଲକର୍ ଭାଙ୍ଗି ଟଙ୍କା ସୁନା କାଢ଼ି ଆସିଚୁ । ଚଳିବାରେ ଏଇନା ବର୍ଷେ ଖଣ୍ଡେ ଆମ ପାଞ୍ଚଜଣଙ୍କର ଅଭାବ ହବନି । ମୁଁ ଗୋଟାଏ ଯାଗା ଠାବ କରି ଆସିଚି । ଶିମିଳିଗୁଡ଼ା ଆଗକୁ ହଟପଡ଼ିଆ, ତତେ ଦେଖେଇଲି ସେଦିନ । ଯୋଉଠି ତେନ୍ତୁଳମଞ୍ଜି, ବରଗୁଡ଼ି, ପଣସମଞ୍ଜି, କୋକଲିଗୁଖୁଆ, ପାହାଡ଼ ଆଳୁ କେତେରକମର ଚେରମୂଳି ବିକି କରନ୍ତି ହାଟୁଆ ଲୋକମାନେ ସେଇ ଜାଗା । କଣ୍ଟ୍ରାକ୍ଟର ଦ୍ୱିବେଦୀର ଆଡ଼୍ଡ଼ା ସେଇଠି । ତା'ର ପାଚେରୀ ଘେର ଭିତରେ ସବୁ ଚୋରାମାଲ୍ ମହଜୁଦ । ଯେତେକ ଶାଗୁଆନ୍ କାଠ, ଦାମୀ ଖଣି ଧାତୁ ପଥର, ପୁଣି ଚୋରା ଗଞ୍ଜେଇ ଚରସ, ଇଲେକ୍‌ଟ୍ରୋନିକ ଯନ୍ତ୍ରପାତିର ହୋଲସେଲ୍ ଷ୍ଟକ୍ । ସେଇ ଶାଳାଠୁଁ ମୋର ବଡ଼ ଗୋଟାଏ ଋଣ ଆଦାୟ କରିବାକୁ ଅଛି । କଣ ଜାଣିଚୁ ? ଆମ ଗାଁର ସବୁତକ ଗୋଷ୍ଠଜମି ସେ ହାତ

ପଇଠ କରଛ । ଗୁଳଖ ଯୋଗାଡ଼ କରଦେବ ବୋଲ କହ ଏମ୍. ଏଲ୍. ଏ ମନ୍ତ୍ରୀଙ୍କ ସାଙ୍ଗରେ ଘର ଭଲ ଟଙ୍କାର ଦାହାରେ କେତେ ଝିଅବୋହୂଙ୍କୁ ନେଇ ସଙ୍ଗ୍ରାନ୍ତ କରଛ । ଆମ କାମଟା.ତାରଠୁ ସୁରୁ ହବ ।

ରକ୍ତବର୍ଣ୍ଣ ଧରୁଚ ଟିକନାର ଆଖି । କହବା କେର କେର ବାଳ ସବୁ ଉଡ଼ୁଚ ଲେଲିହାନ ଅଗ୍ନିଶିଖା ପର । ତାର ପଶ୍ଚାତ୍ତରେ ଅସ୍ତ ସୂର୍ଯ୍ୟର ରଙ୍ଗଛିଟା । ବନାମର ଏଇ ପୃଷ୍ଠ ଭୂମିରେ ଟିକନା ଦିଶୁଚ ଆଉଚି ହିଂସ୍ର ଆତୁର ଲୋଭମୟ ।

ଜଙ୍ଗଲରେ ଯେଉଁ ଗୁରଜଣ ବକୁଆ ଭେଣ୍ଡିଆ ସାହାମା, ଗଣେଶ, ହାସନ ଆଉ ମନ ଦାଦା ମହଜୁଦ ଅଛନ୍ତି, ସେମାନେ ଜଣେ ଜଣେ ଶକ୍ତ ପୁରୁଣା ମୈଦାନ ଖେଳୁଆଡ଼ । ଜୁଡ଼ୋ, କ୍ୟାରେଟେ, ଫେନସିଂ ଛୁରୀ, ବନ୍ଧୁକ ଚଳେଇବାରେ ଓସ୍ତାଦ୍ । ବେଶିଦିନ ଲାଗିଲାନ ଖୋକାକୁ ଭଲକରି ମହଣ ହବାପାଇଁ । ତାର ତ ପରୁଆ ନାହିଁ, ଟିକନା ବ ଗୁର ଦଉଡ଼ କଟା । ଯେମିତି ଗୋଟାଏ ଖାଇବାର ଦୂହ ମିଳ ଯାଇଚ । ମାରବ ନହେଲେ ମରବ । ଦୋଟା ଯାକ କଥା କାରଣ ବିବର୍ଜିତ ହେଉ । କଣ୍ଟା ଯାଏ ଆସେ ନା । ନିର୍ଦ୍ଧାରିତ ପ୍ରକାରେ ସବୁ କାମ ହେଇଗଲା । ସେଦିନ ବ ଝଡ଼ ରାତି । କୁଆଡ଼ୁ ଗୋଟେ ଜବ୍‌ରଦସ୍ତ ଗୁଣ୍ଡର ଯୋଗାଡ଼ ହେଲା, ଆଉ ସେଥିରେ ଖୋକନ୍ ଆଉ ତା ସାଙ୍ଗରେ ଆଉର ଜଣେ ଓସ୍ତାଦ ପହଞ୍ଚିଗଲେ ଦ୍ୱିବେଦୀର ଗୋଦାମ ସାମନାରେ । ଘୂ ପର୍ ପାଟଣ ଗୁଳି କବାଟ ଭଙ୍ଗା ଫାଙ୍କା ଗୁଳି ଆବାଜ, ଦୋଟା ଜଗୁଆଳଙ୍କ ମସ୍ତକ ମାଡ଼ ଆଉ ଗୋଟାକର ପିଠିରେ ଭୁଜାଲି ଭୂକା । ଶେଷରେ ଦିଇଟା ଲମ୍ବାପର ହାତର ବଜ୍ର ଶିକୁଳ ଭିତରେ ଦ୍ୱିବେଦୀର ଲଟକୁଚ । ତଣ୍ଡି ଉପରେ ଶକ୍ତଚାପ ପଡ଼ିଲା । ନିଃଶ୍ୱାସ ରୁଦ୍ଧ ହେଇଗଲା । ମୁହଁ ପଡ଼ିଗଲା ନେଳ । ଆଖି ଦିଟା ଯେମିତି ସକେଟରୁ ଗୁରି ଇଞ୍ଚ ଲେଖେ ବାହାରି ଆସିଲା ପଦାକୁ । ସବୁ ଶେଷ । ତାପର ମୁର୍ଦ୍ଧାରଟାକୁ ଗାଡ଼ିରେ ପକେଇ ଷାର ଦର୍ପରେ ଗଡ଼ ଜପ୍ତ କଲା ପର ଦିଜଣ ଫେରି ଆସିଲେ ପାହାଡ଼ କନ୍ଦରକୁ । ଟିକନାର ଏବେ ଚଣ୍ଡ ଉଦ୍ଦିଆ ରୂପ । ତା ପାଦ ପାଖରେ ପଡ଼ିଚ ମଲକୁଷ ପର ଦ୍ୱିବେଦୀ । ସେଇମିତି ବ୍ୟବସ୍ଥା ବ ହେଲା ସେଇ ମୋଟା ମଇଁଷି ପର ବପୁଥିବା ଓକିଲ ପୁଅର । କପି କର ପଞ୍ଚାୟକଙ୍କୁ ହାତମୁଠା

କର ପଇସାପଣ ବ୍ୟବସ୍ଥା ସମେତ କୋଉଠି ଗୋଟାଏ ପ୍ରାଇଭେଟ କଲେଜରେ ମାଷ୍ଟର ହୋଇଗଲା । ଉଉଣୀକୁ କାରଖାନାଦାରମାନଙ୍କ ପାଖକୁ ପଠେଇ ତାଙ୍କର କୃପାରେ ତାକୁ ମଧ କଲେଜର ଲେକଚରର କରେଇ ଦେଲା । ଏବେ ବ କୁଆଡ଼େ ଶାସକ ଦଳର ଆଞ୍ଚଳିକ ଯୁବନେତା ସାଜିବ । ସମସ୍ତଙ୍କୁ ଧମକ ଚମକ ମାଡ଼ ଛଣାଓଟରେ ହୁଲସ୍ଥୁଲ କରୁଚ ସାରା ସହର । କାହା ର ବାଉଣ୍ଡାରି ଘର ଭଡ଼ାଭ କଲଣି ତ କାହାର ଦୋକାନ ଲୁଟ କଲଣି ଆଉ ଯୌନ ଲାଳସା ଏମିତ ଅଣ ଅକ୍ତିଆର ଯେ ଟିକନାକୁ କୁଆଡ଼େ ବାନ୍ଧା ବେଧାରୁ ଗୁଣ୍ଡା ଲଗେଇ ଟେକ ନେଇଥିଲା । ଦ୍ଵିବେଧାର ଡାହାଣ ହାତ ଇଏ ଏଇନା । ସେଇ ନିର୍ଦ୍ଧାରିତ ବ୍ୟବସ୍ଥା । କଲେଜ ଛୁଟି ପରେ ସ୍କୁଟର ଚଳେଇ ସିଗ୍ରେଟ୍ ଫୁଙ୍କି ସୁସୁର ମାର ଗଡ଼ ଆସୁଚ । ଝିପିଝିପି ବର୍ଷା ପଡ଼ୁଲା । ସେ ମୋଟା ଚୋକା ଗଛ ତଳକୁ ଖସି ଆସିଚ । ସେଇଠି ଧାଏଁ କର ଜିପ୍ ଟାଏ ଅଟକ ଗଲା । ତା ଭିତରୁ ଖେପା ମାର ତନ ଜଣ ଓସ୍ତାଦ ଝାମ୍ପି ପଡ଼ିଲେ ତାର ଉପରକୁ । ତଣ୍ଟିରେ ଯାବ ପଡ଼ଚ । ଶୂନ୍ୟେ ଶୂନ୍ୟେ ଟେକ ଆଣିଲେ ଜଙ୍ଗଲର ଝୁଅଡ଼ ଟିକନାର ସାମ୍ରାଜ୍ୟ ଅଗନା ଅଗଣ ବନସ୍ତର ଗୁମ୍ଫି ଭିତରକୁ ।

ଜଙ୍ଗଲର ଅନ୍ୟମାନେ ମାଲ ପିଇ ଶୋଇଗଲେଣି । ଟିକନା ଖଣ୍ଡେ ଡିମା ପଥର ଉପରେ ଗୁମ୍ ମାର ବସିଛୁ । ଆଣ୍ଠୁ ଉପରେ ଦୁ'ହାତ ଦଉର ଦେଇ ଦୁ'ଗାଲକୁ ଦୁ' ପାପୁଲି ମଝିରେ ଯାକ ସଳଖ ଗୁହିଁଚ ଏକ ଲୟରେ । ଧାରୁଚ ଖୋକା, କଥା କ'ଣ ? ଟିକନା ମୁହଁରେ ଆଜ ହରଷ ଉକୁଟିବା କଥା । ତାର ଆଖି ଆଜ ନାଚିବା କଥା । ସେ ଗୁମ୍ ମୁହଁ କାହିଁକ ? ଗୁଣ୍ଡି ଦୁ'ଘଡ଼ି ହବ । ଖୋକାର ପକ୍ଷରେ ନଦ ଉଲ୍ଲଙ୍ଘନ । ବାହାରକୁ ଆସିଲା । ମାଉସୀ ବୁଢ଼ୀ ଗୋଟାଏ ଦଉଡ଼ିଆ ଖଟକୁ ବାହାରକୁ ଟାଣି ଫାଙ୍କା ଆକାଶ ତଳେ ବସିଛୁ ଆଉ ତାର ପାଖେ ବସିଛୁ ସେଇ ପ୍ରୌଢ଼ ପାର୍ଷିକାସ୍ତ ମୁରବି ପରି ମଣିଷଟି ।

ଖୋକନ ଏଠିକ ଆସେ । କ'ଣ ନଦ ଲାଗୁନ ? ହେଲେ ଘର କାମ ଲାଗିଚ ଗୁଡ଼ସାରା ଟିକନାର । ସେ ଘରଟା ପୁରା ରକ୍ତରେ ଭସିଲାଣି । ତଥାପି ସିଏ ଦୁ'ଟାଙ୍କ ମୁନ୍ଧାରକୁ ଫାଶିରେ ଦାଣି ହାଣି ଜମା କରୁଚ । ପୁଣି ଗୀତର ସୁର୍ ଗୁଡ଼ଚ କାହିଁକରେ କ'ଣ ।

କାନରେ ପଡ଼ୁଚ ଗୋଟାଏ ବେସୁରା ଗୀତର ଲହରୀ । ଖୁବ୍ ଦୂରରୁ କାନ୍ଦୁରା କାନ୍ଦୁରା ସୁରରେ ଚହଲିଲା ପରି ଲାଗୁଚ । ଖୋକା ଆଗେଇଲା ଗୁମ୍ଫି ଆଡ଼କୁ । ସେ ଭିତରେ ଗୋଟାଏ ଖାଲି ମଦ ବୋତଲରେ କିରାସିନ ଭର୍ତ୍ତିକରି ଖଣ୍ଡେ ସଳିତା ଠିପି ଭିତରେ ଗୁଞ୍ଜା ହୋଇ ବତୀ ଜଳୁଛି । ତାର ଆଗରେ ମା କାଳୀ ପରି ଜିହ୍ୱା ଆଉ ପଳାଶ ଫୁଲ ପରି ଆଖିର ବହ୍ନିବାରଣରେ ଝଲୁଚ ଉଦ୍ଭାଠାଣୀରେ ସମ୍ପୂର୍ଣ୍ଣ ଉଲଙ୍ଗ ଆଉ ବିଭତ୍ସ ଭାବରେ ଆକର୍ଷଣୀୟ ଟିକନାର ତନୁଯଷ୍ଟି । ଚଟାଣ ସାରା ରକ୍ତ ଜୁଡ଼ୁବୁଡ଼ । ମୁଣ୍ଡ ଦ'ଟାକୁ ଗୁରଫାଳ କରି ଗଡ଼େଇ ଦେଇଚ । ହାତ ଗୋଡ଼ ଆଣ୍ଠୁ ଗଣ୍ଠି ଜଙ୍ଘ ସବୁ ଶତ ଖଣ୍ଡିତ । କଣ୍ଟ୍ରାକ୍ଟର ଦ୍ୱିବେଦୀର ଗଳା ଚିପିଲା ବେଳେ ଯୋଉ ଗ୍ଧର ସୋରିଆ ସୁନାଚେନ ଆଉ ତା ସାଙ୍ଗରେ ଏଡ଼େ ମୋଟା ରୂପାର ଉଉଁରିଆ ସେ ଦେଖିଥିଲା, ସେଇଟା ଏବେ ଟିକନାର ବେକରେ ଝୁଲୁଚ । ଟିକନା ବାଘୁଣୀ ପରି ଚିତ୍କାର କଲାଣି ।

—ଯା ତୁ ପଳେଇ ଯା ଏଠୁ ମୁଁ ସ୍ୱାଙ୍କୁ ଶାସ୍ତି ଦେଇଚ । ମୁଁ ସ୍ୱାଙ୍କ ରକ୍ତ ପିଇବ । ତୁ କା କୁ ହେଲେ ଛୁଇଁ ପାରିବୁନ ।

କାହିଁକି ଟିକନା ଏମିତି ନାରକୀୟ ଲୀଳାରେ ପ୍ରମତ୍ତ ! କି ଜନ୍ମସୂତାର ସୁଆଦ ପାଉଚ ସିଏ ଯେ ମଲା ଲୋକଙ୍କୁ ଆହୁରି ଘାଇଲା କରୁଚ ? କିଛି ବୁଝୁନ । ପୁଣି ଉଠି ଆସିଲା ବାହାରକୁ । ମାଉସୀ କି ପଚାରିଲା—

— କହ ମାଉସୀ ଟିକନାର ଏଡ଼େ ଦୁଃଖ ରାଗ କାହା ପାଇଁ ?

ମାଉସୀ ତା ବାହା ଟାଣି ଟିକଏ ଦୂରକୁ ନେଇଗଲା ଆଉ କାନରେ ଫିସ୍ ଫିସ୍ କରି କହିଲା—

—ଦେଖ ତତେ କହୁଚ । ତୁ ଟିକନାକୁ ଜମା କହିବୁନ । ସେ ବାହାବାଳି ତତେ କଞ୍ଚା ଖାଇଯିବ । ଏଇ ଦ୍ୱିବେଦୀକି ସେ ଭଲ ପାଇ ବାହା ହବ ବୋଲି ବାପାମାଙ୍କର ସାଇ ପଡ଼ିଶାଙ୍କର ଆପତ୍ତି ସତ୍ତ୍ୱେ ଜିଦ୍ଧ ଧରିଲା । ଦ୍ୱିବେଦୀ ବି ଭଲ ପାଉଥିଲା ସ୍ୱାକୁ । ହ ପାଖ ଗାଁର ପୁଅଝିଅ । ଦ୍ୱିବେଦୀ ଥିଲା ଚଷାବ ଘରର ପିଲା ଆଉ ଇଏତ ଧାମ ଘରର ଝିଅ । ଯାହା ହେଉ ବାହା ବେଦୀରୁ ତ ସେ ଓଟ୍ଲିଲା ପିଲା ଟୁଣ୍ଡା ଲଗେଇ ଚେକି ନେଇଗଲା ସ୍ୱାକୁ ।

କେତେ ପୋଲିସ ହାକିମ ହୁକୁମା ଇନକୁଆରି ଧରପଗଡ଼ ହେଲା । ହେଲେ ସେ ଟୋକାକୁ କେହି ଧରି ପାରିଲେନି କି ସାକ୍ଷୀ ପ୍ରମାଣ କିଛି ପାଇଲେନି । ଏ ଟୋକି ପୁଣି ଗଲା ବିବେକ ପାଖକୁ । କହିଲା—ତୁ ମତେ ଭଲ ପାଉଥିଲୁ । ସେମାନେ ମୋତେ ବଳାତ୍କାର କଲେ ଏଥିରେ ମୋର ଦୋଷ କ'ଣ । ତୁ ମତେ ଆଉଥରେ ବାହା ହୁଅ । ବିବେକ ନାକ ଟେକିଲା, ଘୃଣାକୁ ଗ୍ରହଣ କଲାନି । ଯୁଗ ଦିନ କେତେ ଝଡ଼ ବହି ଯାଇଚି । ସମୟ ଧାଇଁଚି । ବିବେକ ନିଜ ହଟହମଚ ବଦ୍ୟାରେ ପାଣିବାର ପଣିଆଁରେ ବଡ଼ ଲୋକ ହେଇଚି । ବହୁତ ନେତୃତ୍ୱ ହେଇଚି ଟିକିନା ବିବେକକୁ ଆପଣାର କରି ପାଇବ ବୋଲି । ହେଲେ ବିବେକ ତାକୁ ଠେଲି ଦେଇଚି । ଚକ୍ଷୁଲଜ୍ଜ୍ୟା ତ ବଡ଼ କଥା । ତା ପରେ ବିବେକ ତ ପାହାଚରୁ ପାହାଚ ଚଢ଼ି ଏତେ ବଡ଼ ଲୋକ ହେଇଗଲା । ମନ୍ତ୍ରୀ ହଉଥିରି କଲା । ଏମ୍. ଏଲ୍. ଏ. ହଉଥିରି କଲା ପୁରା ଶାସନ ତା କାବୁରେ । ସେଉଁଠିରେ ବାପ ଟିକିନା ସାଜିଚି ଏମିତି ରକ୍ତ ବୁଭୁକ୍ଷୁ ଉଜେଇତ । ଏ ଖଣ୍ଡ ମଣ୍ଡଳରେ ତା ନାଁ ଶୁଣିଲେ ଆଖିରୁ ନିଦ ଉଭେଇଯାଏ ।

ଏଇ ସମୟରେ ପ୍ରୌଢ଼ ମୁରବିଆନା କରୁଥିବା ଲୋକଟି ଡାକ ଦେଲେ—

—କାହିଁକି ତାକୁ ଇଆଡ଼ୁ ସିଆଡ଼ୁ କହି ମୁଣ୍ଡ ଖରାପ କରୁଚ । ଯିଏ ଯାହା ବାଟରେ ଯାଆନ୍ତୁ । ଆମ ଜଙ୍ଗଲ ଆମ ପରିବାର ଅକ୍ଷୁଣ୍ଣ ରହୁ ।

ଖୋକା ପୁଣି ତା ଗୁମ୍ଫା ଭିତରକୁ ଫେରିଲା । ଅଉ ତକା ମାଡ଼ ଦଉଡ଼ିଆ ଖଟିଆ ଉପରେ ଲଥ କରି ବସି ପଡ଼ିଲା । ଗୋଟାଏ ଦୀର୍ଘଶ୍ୱାସ ବି ଛୁଟିଗଲା ଅଜାଣତରେ । ଭଲ ପାଇବା କଣ ରକ୍ତ ଛୁଟେଇବା ପରି ଅହଙ୍କାରର ବିଭତ୍ସ ରୂପ । ସଂସାରକୁ କିଛି କିଛି ସମୁଝିବାକୁ ଚେଷ୍ଟା ଜାରି ରଖିଚି ଖୋକନ । ଦର୍ଶକ ପଚାରିଲେ—

—ହେଲା ଏବେ ଖୋକା ବି ଘଟା ଖୁନ୍ କରି ତୁ ଟିକିନା ସଙ୍ଗରେ କାୟମନୋବାକ୍ୟରେ ଜଡ଼ି ଯାଇଚୁ । ତା ସାଙ୍ଗରେ ବସା ବାନ୍ଧିଚୁ । ହେଲେ ତୁ ପୁଣି ଏଠିକି ଆସି ସମୁଦ୍ର ପାଣିରେ ପଶିଲୁ କେମିତି ? ଆଉ ସେ ଭିତରେ ଆତ୍ମାମାତ୍ମା ହେଇ ମରିବାକୁ ଯାଉଥିଲୁ କେମିତି ?

ଖୋକନ କିଛି ସମୟ ଅନ୍ୟ ମନସ୍କ । ତା’ପରେ ଗୋଟାଏ ଗମ୍ଭୀର ଗୁପ୍ତକଥା ଅତି ସନ୍ତର୍ପଣରେ ବଖାଣିଲା ପରି କହି ଚାଲିଲା—

—ଦି’ଟା ନିଖୋଜ ମଲା ଲୋକକୁ ଖୋଜି ଖୋଜି ପୋଲିସ ଆମର ପାହାଡ଼ ଖୁଆଡ଼କୁ ପାଖେଇ ଆସିବା ଆମେ ଜାଣି ପାରିଲୁ । ଟିକିନା, ଆମ ଦଳର ଅନ୍ୟମାନେ ଆଉ ମୁଁ ସମସ୍ତେ ସେଇ ଖଣ୍ଡ ଖଣ୍ଡ ହୋଇ ପଡ଼ିଥିବା ଶବ ଦି’ଟାକୁ ଏକାଠି କରି ମାଟି ଖୋଳି ପ୍ରାୟ ବାରଫୁଟ ତଳେ ପୋତି ପକେଇଲୁ ଆଉ ପଳେଇ ଗଲୁ ବାସୁପୁର୍ । ସେଠି ବି ନିସ୍ତାର ନାହିଁ । ପୋଲିସ୍ ଆମର ଖୋଜ୍ ଖବରରେ ଲାଗିଗଲା । ସବୁଆଡ଼ ହାଇଚାଇ ହେଲା ଯେ ଡାକୁମାନେ ପଶ୍ଚିମ ଦିଗରେ ପଳେଇ ଯାଇଛନ୍ତି । ଚାରିଆଡ଼େ ପୁଲିସ ଗୁଇନ୍ଦା ସତର୍କ, ଦିନେ ମାଉସୀ ଆସି ଖବର କଲା ଯେ ଆମର ବୁଢ଼ା ମୁରବିଆନା କରୁଥିବା ଲୋକଟି ଧରା ପଡ଼ିଯାଇଛି । ଆଉ ପୋଲିସ ତାକୁ ବହୁତ ବାଡ଼ିଆ ପିଟା ପରେ ଜେରା କରି ଜାଣି ପାରିଛନ୍ତି ଯେ ମୁଁ ଆଉ ଟିକିନା ଏଇ ଦଳର କର୍ତ୍ତା ଆଉ ଆମେ କଣ୍ଟ୍ରାକ୍ଟର ଦ୍ୱିବେଦୀ ଆଉ ସେ ଓକିଲ ପୁଅକୁ ମାରିଚୁ । ଟିକିନା କିନ୍ତୁ ସବୁବେଳେ କେମିତି ଉଦାସ ଆଉ ଅନ୍ୟମନସ୍କ ରହୁଥିଲା । ଆଗଭଳି ତା କଥାରେ କି ଠାଣିରେ ଆଗର ତେଜ ନଥିଲା କି ଓଜ ନ ଥିଲା । ଯୋଉଠି ବସିଥିବ ଖୁଣ୍ଟ ପରି । କେତେବେଳେ କେମିତି ମୋ ଉପରକୁ ଆଉଜି ପଡ଼ିବ । ମତେ କୁଣ୍ଢେଇ ଧରି ଅସ୍ଥିରାଏ ବାଳିଯିବ । ପୁଣି କହିବ—ଦେଖେ ତୁ ମତେ ଛାଡ଼ିବୁନି । ଦି’ଜଣ ଯାକ ଏକାଠି ବଞ୍ଚିବା ନଇଲେ ଏକାଠି ମରିବା । ଆମେ ପାହାଡ଼ାରୁ ଟ୍ରେନ୍ ଧରି ପଳେଇ ଆସିଲୁ ପୁରୀ । ଏଠି ହଂସରାଜ ମଠରେ ସାତଦିନ ରହିଲୁ ପୁରା ଦୁଆର କିଳି ଗୋଟାଏ ଘର ଭିତରେ । ସେଇଦିନୁ ଟିକିନା ମୁଣ୍ଡରେ କଣ ଗୋଟାଏ ଘାଇଲା ସ୍ୱପ୍ନ ପଶିଚି । ଖାଲି ସବୁବେଳେ କହି ଚାଲିଲା, ଦ୍ୱିବେଦୀ ମରିଗଲା ପରେ ତାର ଶେଷ କର୍ତ୍ତବ୍ୟ ସରିଚି । ତାର ବଞ୍ଚିବା ଦରକାର ନାହିଁ । କିନ୍ତୁ ସିଏ ବଞ୍ଚିବ ଯେତେଦିନ ଯାଏ ଖୋକନ ମାନେ ମୁଁ ନ ମରିଚି । ଖୋକନ ତାର ନୂଆ ଆମଦାନୀ ଅମୂଲ୍ୟ ରତ୍ନ । ତାକୁ ସେ ହରେଇବନି । ସିଏ ନିଜେ ମଲେ ଖୋକନକୁ ବି ହରାଇବାକୁ ହେବ ।

କ'ଣ ତ ହେଲେ ଦି ମୁଠା ଖାଇଲେ ଜୀବନ ରହିବ । ଖୋକନ ବାହାରକୁ ଥରେ ଅଧେ ପଳେଇ ଆସେ । ସମୁଦ୍ର କୂଳରେ ଶ୍ରୀମନ୍ଦିର ବେଢ଼ାରେ ଝାଉଁବଣ ଭିତରେ ସ୍ୱର୍ଗଦ୍ୱାର ବାଟେ ଲୋକନାଥ ପର୍ଯ୍ୟନ୍ତ ଘେରେ ବୁଲିଆସେ । କୁଡ଼ୁଆରେ କିଛି ଅନ୍ନ ଅବଢ଼ା କିଣି ଆଣେ । ଏ ଦିହେଁ ଖାଆନ୍ତି । ଅଉ ଯାଜ୍ଞଯୁକ୍ତ ହୋଇ ବସି ଢୁମଉଁ ଥାନ୍ତି । କେତେଦିନ ଏମିତି ଚାଲିବ । ଯା ଆଗକୁ କଣ ଅଛି । ଗୋଟାଏ ଅଡ଼ୁଆ କବଳରେ ଯେମିତି ଦି'ଜଣ ଯାକ ପଡ଼ି ହନ୍ତସନ୍ତ । ଖୋକନ ଦେଖିଲା ଏ ବାପୁଣୀ ହାବୁଡ଼ରୁ ତାକୁ ଖସି ଯିବାକୁଇ ହବ । ଯାର ଆଉ ଆଗ ନାହିଁ କି ଛେଉ ନାହିଁ । ଦିନେ ଏକୁଟିଆ ସମୁଦ୍ର କୂଳରେ ବୁଲୁଚି । ହଠାତ୍ ଦେଖା ହୋଇଗଲେ ତାର କନ୍‌ଭେଣ୍ଟ ସ୍କୁଲର ଜଣେ ପୁରୁଣା ମାଷ୍ଟ୍ରାଣୀଙ୍କ ସାଙ୍ଗରେ । ବୁଢ଼ୀ ହୋଇ-ଗଲେଣି । ଚାକିରୀରୁ ଅବସର ପରେ ଶେଷଦିନ ଗୁଡ଼ିକ ସିଏ ଏଇ ଶ୍ରୀକ୍ଷେତ୍ରରେ କଟେଇବେ ବୋଲି ପୁରୀରେ ବସା ବାନ୍ଧିଛନ୍ତି । ଖୋକାକୁ ଚିହ୍ନିଲେ ଆଉ ତା ସାଙ୍ଗରେ ଆଳାପ ଜମେଇ ଦେଲେ । କହୁ କହୁ ପ୍ରସ୍ତାବ ଦେଲେ—

ଖୋକା, ତୋର ତ ଆଉ କେହି ନାହାନ୍ତି । ଆସେ ମୋର ବସାରେ ରହିବୁ । ଏକାଠି ରହିବା ମା ପୁଅ ଭଳି । ଗୋଟାଏ କିଛି ବେଉସା ବଣିଜ କର । ମଣିଷ ହୋଇ ଯିବୁ ।

ଖୋକାକୁ କଥାଟା ମନ୍ଦ ଲାଗିଲାନି । ଯେମିତି ଆଉ ଗୋଟାଏ ଘର ପାଇଲା । ଘର ଖୁସିରେ ଆସି କହି ପକେଇଲା ଟିକନାକୁ ଯେ ସିଏ କିଛି ଗୋଟାଏ ବ୍ୟବସାୟ କରିବ ଆଉ ତାର ଦିଦିଙ୍କ ଘରେ ରହିବ । ଯଦି ଟିକନାର କିଛି ଆପତ୍ତି ନ ଥାଏ, ସେ ବି ଆସି ସେଇଠି ତାଙ୍କ ପାଖରେ ରହୁ ! କେତେଦିନ ଆଉ ଏମିତି ଅକାରଣରେ ସନ୍ତୁଳି ହଉଥିବା । ଯାହା ହେଇଚି ହୋଇ ଯାଇଚି । ଟିକନା କଟମଟ କରି ତାକୁ ଅନେଇଲା । ତାର ଅବାଧ ଦନ୍ତା ହାତ ଗୁଡ଼ଏ ଗୁଡ଼ଏ ଯେମିତ ଖୋକାର ବେକ ମୂଳକୁ ଉଠି ଆସିଲା, ଫାଶିର ଫନ୍ଦା ଦରି କିଛି ସମୟ ଓଗାଳିଲା । ଲାଗୁଚି କାଳ ସର୍ପିଣୀ ପରି ଟିକନା ଖୋକାକୁ ତା ଆୟତ୍ତରୁ ମୁକୁଳେଇବାକୁ ନ ଚାହେଁ । ହଠାତ୍ ପୁଣି ପ୍ରକୃତିସ୍ଥ ହୋଇ ଟିକନାର ମୁହଁରେ ହସ ଦିଶିଲାଣି ।

—ହଉ ତୁ ଯିବୁ ତ ଯା'ଆ । ମୁଁ କାଲୁ କୁଆଡ଼େ ଯିବନି । ମୁଁ ମୋର ପାହାଡ଼ର ଗୁମ୍ଫାକୁ ଫେରି ଚାଲିଯିବି । ହେଲେ ତୁ ମୋର ଏତେ ସାଙ୍ଗ ଥିଲୁ । ମୋର ସବୁଥିଲୁ । ତୋ ସାଙ୍ଗରେ ଗୋଟେ ଦିନ ମୁଁ ଖୁବ୍ ଖୁସିରେ ଅପ୍ସରେ କଟେଇବି—ତଫାତ୍ ହବା ପୂର୍ବରୁ । ରାଜି ତ ?

ପ୍ରସ୍ତାବ ହେଲା ସେମାନେ ଗୋଟାଏ ନୋଳିଆ ପାଲମରା ହୁଳି ଡଙ୍ଗାରେ ଡେର ସମୁଦ୍ର ଭିତରକୁ ଚାଲିଯିବେ । ସେଠି ସରାବ ପିଇବେ । ଗୀତ ଗାଇବେ । ଉଚ୍ଛନ୍ନ ଅଶେଷ ବେଗରେ ପରସ୍ପରକୁ ସମ୍ଭୋଗ କରିବେ । ଉତ୍ପ୍ରୀତ ହେବେ । ତା ପରେ ଇଏ ଚାଲିଯିବ । ଯା ରାସ୍ତାରେ ଆଉ ସେ ଚାଲିଯିବ ପାହାଡ଼ କନ୍ଦରକୁ । ସେଇ ନିର୍ଦ୍ଧାରିତ ବ୍ୟବସ୍ଥା ଦି'ଜଣ ହୁଳା ଡଙ୍ଗାରେ ସମୁଦ୍ର ମଝିକୁ ଭସି ଯାଇଥିଲେ । ଖୁବ୍ ମାତାଲ ହେଲେ ଆଉ କୋଳାକୋଳି ହେଲେ । ପାଗଳୀ ପରି ଟିକନା କେତେ ହସିଲା, ଚିତ୍କାର କଲା । କେତେ କାନ୍ଦିଲା କୁରୁକଲା । ଲାଗି ରହିଲା ଖୋକାର ଗୁଡରେ । ପୁଣି କଣ ମୁଣ୍ଡରେ ପଶିଲା କେଜାଣି କାତଟାକୁ ଓଲଟା ମାରି ଡଙ୍ଗାର ମଙ୍ଗକୁ ଧରି ପାଣି ଭିତରକୁ ଝୁଲି ପଡ଼ିଲା । ଓଲଟି ପଡ଼ିଲା ଡଙ୍ଗ, ଦି'ଜଣ ଯାକ ଅକାତ କାତ ପାଣିରେ ଉବୁଟୁବୁ ହେଲେ । କଳା କାଳି ଅତଳତଳ ନାରକୀୟ ଚକା ଭଉଁରୀଟାଏ ଶୋଷି ନେଇଗଲା । ଓଟାରି ନେଇଗଲା ଟିକନାକୁ କୁଆଡ଼େ ଯେ ତା'ର ପତା ନାହିଁ । ତା' ମୁଣ୍ଡ କି ହାତ ପାଣି ଉପରକୁ ଉଠ ପଡ଼ ହେଉଥିବା ଆଉ ଦେଖା ପଡ଼ିଲାନି । ଡେର ସମୟ ଯାଏଁ ଠିଆ ପହରା କରି ଟିକନାକୁ ଖୋଜିଲା ଖୋକା । ହାତ ଗୋଡ଼ ତାର ଅବଶ ହେଇ ଆସିଲା । ନିଶ ଚଢ଼ିଛି ମଥାରେ । ତା ପରେ ଢେଉ ଉପରେ ଢେଉ ଲୁଣି ପାଣିରେ ଜବ୍‌ବର ସୁଅ ଛେଚି ଦେଇ ଯାଉଚି । ଏତିକିବେଳେ ପୁଣି ଭଙ୍ଗା ନଆରେ ଖଣ୍ଡେ କାଠମଞ୍ଜି ଲହଡ଼ି ସଙ୍ଗେ ଫୋପାଡ଼ି ହେଇ ଆସି ବାଜିଲା ତା ବାଁ କାନମୂଳେ । ସେ ଅଚେତ୍ । ଚେତା ଫେରିଲା ବେଳକୁ ତ ସିଏ ବାଲିରେ ଶୋଇଚି ଦର୍ଶକ ପାଖରେ ।

ହଠାତ୍ ଷାଷ୍ଟାଙ୍ଗ ପ୍ରଣିପାତ କଲା ଭଳି ଭୂଇଁ ଉପରଟାରେ ଘୁସୁର ସୁଁ ସୁଁ ହେଇ କାନ୍ଦୁଚି ଖୋକା ।

—ଆପଣ କହନ୍ତୁ ତ ମତେ ବୁଢ଼ୋଇ ମାର ସାରିଲା ପରେ ଝିଙ୍କାନା ପାଇଥାଆନ୍ତା କଣ ? ସେ ତ ନିଜେ ମରୁଛି ?

ଦର୍ଶକ ତା ମଥା ଆସୁଡ଼େଇ ଉତ୍ତର ଦେଲେ—

—ପାଇବା ପାଇଁ କଣ ସିଏ ଦୁ'ଜଣ ଯାକୁ ଖତମ କରୁଥିଲା । ସିଏ ହଜଉଥିଲା, ଦୁ'ଜଣଙ୍କୁ ଏକାଠି; ଯେମିତି ତମେ ଦୁହେଁ ଯ୍ଯା ପରଠୁଁ କେହି କାହାକୁ ଆଉ ପାଇବନି, ଖୋଜିବନି । ସେ ବୁଝିନି କଣ ଜାଣିଛ ଯେ ମଲା ପୂର୍ବରୁ କି ମଲା ପରେ ବାଟ ଚାଲିବାର ଅନ୍ତ ନାହିଁ ବୋଲି ।



# ଚନ୍ଦ୍ରମଧୁ

ଆକାଶରୁ ଚନ୍ଦ୍ରମଧୁ ଝରୁ କି ନ ଝରୁ, ସପନକୁ ଲାଗୁଚି ଯେମିତି ତା ମଥା ଭିତରେ ମୁଦା ଆଖିପତା ଭିତରେ କେତେ ନା କେତେ ଫୁଲଫୁଟି ବସ୍ଲା ଚହଟେଇ ଦେଉଚି; କେତେ ଖିଲ୍‌ଖିଲ୍ ହସର ଝରଣା ଝରି ଯାଉଚି, କେତେ ସୁନ୍ଦର ଚକା ଜହ୍ନର ମୟୂଖ ବାଞ୍ଛି ଦେଉଚି । ଆଉ ସପନ ଖେଦ୍ ଶୋଇଚି ମେଘମାଳାର ଇଷତ୍ ଆରକ୍ତ ଆଲିଙ୍ଗନରେ । ସପନ ଆକାଶ ଦେଖି ପାରିବନି । କାରଣ ସେ ଅନ୍ଧୁଣୀ । କ'ଣ ଗୋଟାଏ ରୋଗ ହେଲା ତାଙ୍କୁ ବାରବର୍ଷ ବୟସରେ । ଆଖି ଫୁଟିଗଲା । ତେବେ ତା ଆଗରୁ ତ କୈଶୋରିକା ଆକାଶର ଭଲକି ଭଲ ବିଚିତ୍ର ରଙ୍ଗ ଉତ୍ସବ ଦେଖିବା ମନେ ଅଛି । ଏବେ ଦିଶୁ କି ନ ଦିଶୁ । କିନ୍ତୁ ସତ ଏଇଆ ଯେ ଅବକା ଅପରାହ୍ଣର ଆକାଶ ଭାରି ଚମତ୍କାର ପାଟବରେ ଗଢ଼ା ଯାଇଚି । ସତରେ ଭାସୁଥିବା ଖଣ୍ଡଖଣ୍ଡ ପାଉଁଶିଆ ବଉଦ ଧଡ଼ିରେ ଯେମିତି ଲାଜରକ୍ତ ଛିଟାଏ ଛିଟାଏ ତରଳ ରୁପାର ଓଢ଼ଣି ଟେକାଏ ଟେକାଏ ବର୍ଣ୍ଣାଢ୍ୟ ଅଞ୍ଚଳରେ ଆକାଶକୁ ନୂଆବୋହୂ ପରି ଡାଙ୍କି ଦେଇଚି । ଆକାଶ ଏମିତି ଦିଶୁଚି ଆଉ ତାର ଭାରି ପ୍ରାଣ ନଥାଉଥା ଯେଗାତ ମନ୍ଦାକିନୀ କାଲି ରାତି ଗାଡ଼ିରେ ଗାଁକୁ ଆସୁଚି ବୋଲି ନାରଣ ଚପରାଶି ଏଇନା କହି ଦେଇ ଗଲା । ନାରଣ ବାଠ ମାଇଲ ଦୂରରେ ସରକାରୀ ଆଖୁପେଡ଼ା ଆଉ ଚିନି କାରଖାନାର ପିଆଦା । ଲୋକଟା କଥା-ବାର୍ତ୍ତାରେ ଟିକିଏ ବେହୁଦିଆର । ହେଲେ ମୋହମନ୍ତିଆ ଲୋକ । ଯା' ପାଖରେ ମନ ଲାଗି ଯାଇଚି ତା ପାଖ ଛାଡ଼ିବନି । ଅନ୍ଧୁଣୀ ନାରମଣି ସପନ ତା'ର ଗାଁର ଝିଅ । ଅନ୍ଧୁଣୀ ବୋଲି ବାହା ହୋଇ ଘର କରି ପାରିଲାନି । ତାର ସମବୟସୀ କି ଭାଇ ଭଉଣୀ ଜ୍ଞାତି କେହି ତା ସାଙ୍ଗରେ ମିଶନ୍ତିନି । କଥା ହବାକୁ ପଡ଼ିଲେ ବି କ'ଣ ଗୋଟାଏ ସାହାଯ୍ୟ ମାଗିଲେ କେମିତି ଆଡ଼େଇ ଆଡ଼େଇ ରହନ୍ତି । ହେଲେ ନାରଣା ଯାଉଣୁ ଆସୁଣୁ ତା ଘର ପିଣ୍ଡାରେ ଅନେକ ସମୟରେ ବସିଥିବା ସପନ କୁ ଡାକଟେ ମାରିଦେଇ ଯାଏ । କେତେବେଳେ ପାଖରେ ବସିପଡ଼ି ରାଇଜ ଯାକର କଥା ମେଲିଦିଏ । ଏଇନା

ଗୋଟେ ସାଇକଲ ଚଢ଼ି ଆସିଥିଲା । ଆଖି ଗଲାଦିନଠୁଁ ସପନର କାନରେ ଶବ୍ଦ ବାରିବା ଶକ୍ତି ଯେମିତି ଗୁରି ନ'ଗୁଣା ବଢ଼ି ଯାଇଛି । ତା ସାଇକେଲ ଚଳେଇବାର ଢଙ୍ଗ ଆଉ ଘଣ୍ଟି ବଜେଇବାର ଜମକ୍ ସେ ଠିକ୍ ଜାଣି ପାରିଲା; ଯେ କିଏ ସେ ଆସୁଚି । ନାରଣା ଛଡ଼ା ଆଉ କିଏ !

କହିଲା —

: ବୁଝିଲୁ ସପନା ଅପା ଗୋଟେ ଅଦ୍ଭୁତ ଲୋକ ଏବେ ଗାଁ ଟାଁ ବୁଲୁଚି । କାଲି ଆମ କାରଖାନାକୁ ଆସିଥିଲା । ତା ସାଙ୍ଗରେ ତା ସ୍ତ୍ରୀ । ଦି'ଜଣ ଯାକ ସାହେବଙ୍କ ପରି ପ୍ୟାଣ୍ଟ ସାର୍ଟ ପିନ୍ଧିଚନ୍ତି । ଭାଲୁପରି ମୁଣ୍ଡବାଳ ସବୁ ଭୁଷୁଭୁଷୁ ହୋଇ ଝୁଲୁଚି । ଆମକୁ ଉଦ୍‌କୋଉଚନ୍ତି ବେଶୀ ରୋଜଗାର କମେଇଁ ହବ । ତାଙ୍କ ସଙ୍ଗେ ଦୂର ଦେଶ ବିଲାତ କି ଆମେରିକା ଯିବାକୁ । ଆଗେ ସେମାନେ ଆମକୁ ନେଇ ତାଲିମ୍ ଦେବେ ସାଉରକେଲା କି କଟକରେ । ସେଠୁଁ ଦି' ମାସ ଭିତରେ ଉଡ଼ା ଜାହାଜରେ ପାର୍ ।

ସପନ ହସି ପକେଇଲା । ଆଖି ମୁଦ ଦେଇଥିଲେ କଣ ହବ ହସିଦେଲେ ସପନ ଚନ୍ଦ୍ରଉଦଆ କଇଁଫୁଲ ପରି ଦିଶେ । ସପନ ଚାହୁଁକି କରି କହିଲା —

: ଯାଉନୁ ତା ସାଙ୍ଗରେ ଜବ୍‌ବର ରୋଜଗାର ସାଙ୍ଗରେ ଗୋଟାଏ ସାଇବାଣୀ ମଧ୍ୟ ଇପି ବାହାହେଇ ପକେଇ ଆସିବୁ । ଗାଁ ଲୋକ ତ ଆଶ୍ଚର୍ଯ୍ୟ ହେଇଯିବେ । ଯା ବେଇଗି ବେଇଗି ଗୋଟାଏ ଆଖି ଦୁଶିଆ କାମ କର୍ ।

: ଅପା ତୁ କ'ଣ ଭାବୁଚୁକି ମୁଁ ତୋ କଥା ବି ତାକୁ ପଚାରିନ ବୋଲି ? କହିଲି ଆମ ସପନା ଅପା ଅନ୍ଧୁଣୀ ହେଲେ ବି ଘର କାମିକା । ତା ହାତରେ ଆଙ୍ଗୁଠି ଗୁଡ଼ିକରେ କମିଆଁ ଅଛି । ବୁଣାବୁଣି ସିଲେଇ କାମ, ମାଟି, ମୂର୍ତ୍ତି ଗଢ଼ିବା ଇମିତି କେତେ କଥା ଜାଣିଚି । ତା କଣ୍ଠଟି ବି ସେମିତି । ଗୀତ ବୋଲିବ ତ କୋଇଲି ପଞ୍ଚମ ହାର୍ ମାନିବ ! ତାଙ୍କୁ ବିଦେଶରେ ଗୋଟେ ଭଲ ଧନ୍ଦାରେ ଭର୍ତ୍ତି କରି ଦଉନ !

: ସେଠୁ ସିଏ କଣ କହିଲା ?

: କହିଲେ ପରୱାଏ ନାଇଁ । ଏଠି ଆମ ଗରିବ ଦେଶରେ ସିନା ଦୁର୍ବଳ ଅକ୍ଷମଙ୍କ ପାଇଁ ସୁବିଧା ନାହିଁ । ସେସବୁ ଦେଶରେ କେହି ଅକ୍ଷମ

ନାହାନ୍ତି । କେତେ ପ୍ରକାର ଯନ୍ତ୍ରଚାଳିତ ମେସିନ୍ କମ୍ପ୍ୟୁଟର ଅଭିମାନେ ଚଳାଉଛନ୍ତି । ସତରେ ଅପା ତୁ ଯିବୁକି କହ ?

ନାରଣା ସ୍ୱରରେ ଭରପୂର ଆଗ୍ରହ । ସପନ କହିଲା—

: ମୋର ଗୋଟେ ଅସୁବିଧା, ମତେ ଉଠେଇବାକୁ ଓହ୍ଲାଇବାକୁ କେହି ନାହାନ୍ତି । ଭାଇ ଭାଉଜ ତ ବାହାରେ ରହିଲେ । ତାଙ୍କ ଚାକିରି ଜାଗାରେ । ଅନ୍ଧୁଣୀ ନଣନ୍ଦଟାକୁ କୋଉ ସଭ୍ୟକନିଆଁ ଭାଉଜ ଏ ଯୁଗରେ ପାଖରେ ରଖି ପୋଷିବ ଭଲା ! ମୋର ଯୋଗେ ଶ୍ୱାସ ରୋଗିଣୀ ମାଆଟା ଭାଇ ପାଖରେ ନ ରହି ଏ ମାଟି ଘର ବାଉଁଶ ବଖରାରେ ଘୁଷୁରୁଛି । ମୁଁ ପାର୍ ହେଇଗଲେ ସେ ବି ପାର୍ ହେଇଯିବ । କଣ କହୁଚୁ ? ହେଲେ ମୁଁ ଅନ୍ଧୁଣୀଟା । ମତେ ତ ଗୋଟେ ସାହାବା ଲୋକ ପାଖେ ପାଖେ ଦରକାର । ଯଷ୍ଟିଟିଏ ଦରକାର । ମୋ ସାଙ୍ଗରେ କିଏ ଜାହାଜ ଚଢ଼ି ବିଦେଶ ଯିବାକୁ ବାହାରି ପଡ଼ିବ କରେ ?

ନାରଣାର ମୁହଁ ଶୁଖି ହେଇଗଲା । ସପନ ଅପା ସତ କଥା କହୁଚି ।

: ତେବେ ମୁଁ ସେ ଯାଇବି ଟୋକା ଟୋକୀଙ୍କୁ ପଚାରିବି । ଯାଆଁର ଗୋଟେ କଣ କନାବ ଥିବ ନା । ଲୋକଟା ଓଡ଼ିଆ, ହିନ୍ଦୀ, ବଙ୍ଗଳା, ଇଂରାଜୀ ସବୁ କହୁଚି । ରୋକ୍ ଠୋକ୍ ମଣିଷପରି ଲାଗୁଛି । କାଲି ତାଙ୍କୁ ଡାକି ଆଣିବି ଏଇଠିକି ଅପା । ମସୁଧା କରିବା ।

ତା'ର ଘର ମୁହାଁ ସାଇକେଲ ଉପରକୁ ଉଠିଲାବେଳେ କହିଲା—

: ମନ୍ଦାକିନୀ ଅପା ଆଜି ପତ୍ନୀଲଗାଳି ଶାଶୁଘରୁ ଆସି ଗାଡ଼ି ଟ୍ରେନ-ଗାଡ଼ିରେ ପହଞ୍ଚିବ । ଏଇଲେ ସେ ଥିଲେ ଯାକ ତୋର ତ ଜମିଗଲା । ଦି'ଜଣ ଯାକ ଆଗଭଳି ପାଖଯୋଡ଼ ହେଇ ବସି କେତେ ଟପ୍ପୁରୁ ଟାପୁରୁ ହବ । ପୁଣି ହସ ଆଉ ଗୀତ ଉଛୁଳିବ ନା କ'ଣ !

ଦଶମ ଅଟକି ଯାଇ ପୁଣି କହିଲା—

: ଅପା ତତେ ତ ଦିଶୁନ । ହେଲେ ଏଇ ଉପରଓଳିଆ ଆକାଶଟା ଭାରି ଚମତ୍କାର ଦିଶୁଚି । ଆଜି ମେଘ ନାହିଁ କି ଘଡ଼ଘଡ଼ି ନାହିଁ । ସୂର୍ଯ୍ୟ ଉଠିଲା ଆଗରୁ ଯୋଉ ବର୍ଷୁଛିଟା । ବୁଝି ହେଇଚ ନା ସେ ଗୁଡ଼ାକ ସବୁ

ଉଷା ମେଘମାଳାକୁ ଏପଟୁ ସେପଟୁଁ ଶରପର ବିଦ୍ଧ ରକ୍ତାକ୍ତ କରି ଦେଲେଣି । ମନ୍ଦର ପରି ନୀଳ ମୁଗ୍ଧଲଜା ଭିତରେ ନେଳି ମେଘ, ରୂପା ମେଘ ଲୁଚକାଳି ଖେଳୁଛନ୍ତି ।

. ଘରି ତ ! ତତେ ଖାଲି ଦିଶୁଚି ! ମତେ ବି ସବୁ ଦିଶୁଚି ରେ ନାରଣା । ଅନେକ କଥା ଆଖିରେ ନ ଦିଶିଲେ ବି ଗ୍ରନ୍ଥ ଭିତରେ ଛବି ଉତାରି ହୋଇଯାଉଚି । ତୁ ଯାଆ ତୋ ସାଇବ ସାଇବାଣୀ କ'ଣ କହିବେ କାଲି ଆସି କହିବୁ । ମା ହାଣ୍ଡିଶାଳରୁ ଡାକିଲାଣି ।

: ସପନ ଲୋ, ଆ ଆ ଜଲଦି । ଦୋଅଡ଼ା ପଖାଳ ଦି'ଟା ଭୁଣ୍ଡିରେ ପକେଇ ଦେ । ଡେରି ହେବଣି ।

ତା' ଆରଦିନ ସକାଳ ପ୍ରାୟ ଆଠଟା ବେଳକୁ ଫଟ୍ ଫଟ୍ ଆୱାଜ୍ କରି ଗୋଟେ ଲମ୍ବା ଚକଚକିଆ ମଟର ସାଇକଲ ଆସି ସପନ ଦୁଆର ମୁହଁରେ ଅଟକିଲା । ତା' ଉପରେ ତିନିଜଣ ସବାର ହୋଇଥିଲେ । ଦି'ଟା ଭେଣ୍ଡିଆ ସାଇବ ସାଇବାଣୀ ଆଗପଛ ହୋଇ ଆଉ ସବା ପଛରେ ନାରଣ ଚମ୍ପବଣି । ଗୁହିରପାଖେ ପିଲା କବିଲା ସମେତ ଗାଁ ଲୋକ ଦଶ ପନ୍ଦର ଜୁଟି ହୋଇଗଲେ । ଦି' ତିନିଟା କୁକୁର ମଧ୍ୟ ଆସି ସେଇ ମେଳ ଭିତରେ ଭୁକିବା ଆରମ୍ଭ କରିଦେଲେ । ନାରଣା ଓହ୍ଲେଇ ପଡ଼ି ତାଗିଦ୍ କରି ସମସ୍ତଙ୍କୁ କହିଲା—

: ଗୁଲି ଯା ! ଏଠି ଗହଳି କରନି । ଏ ବାବୁ ଆସିଚନ୍ତି ଫରେନ୍ ସରକାରୀ କାମରେ ।

ଯୁବାଙ୍କ ପାଟି ଗୋଳ ଶୁଣି ସପନ ଝାଞ୍ଜି ଭିତରୁ ହାତ ପାପୁଲିରେ କାନ୍ଥ କବାଟ ବାରି ବାରି ପିଣ୍ଡାକୁ ଆସିଲା । ଆଗନ୍ତୁକମାନେ କିଏ ହୋଇଥିବେ ଜାଣି ପକେଇଲା ପରି ମିଠା ଗଳାରେ କହିଲା—

: ଏଇ ଭିତରକୁ ଆସନ୍ତୁ । ଦାଣ୍ଡ ଘରକୁ ।

ସହଜ ଠାଣିରେ ଫର୍ଚ୍ଚା ଯୁବକ ଆଉ ଯୁବତୀଟି ଆଗେଇଲେ । ସେମାନଙ୍କ ଆଖିରେ ଭରପୂର କୌତୁହଳ ଆଉ ବିସ୍ମୟ । ସପନ ପାଖକୁ ସାଇବାଣୀ ବେଶର ଯୁବତୀଟି କୋଳର ସାଙ୍ଗଭଳି ଲାଗି ଆସି ମସିଣା

ଉପରେ ବସି ପଡ଼ିଲେ । ତାଙ୍କ ସାମ୍ନାରେ ବସିଲେ ସେଇ ଯୁବକ ଆଉ ନାରଣା । ସପନ ସେମିତି ଅଭ୍ୟାସଗତ ଭାବରେ ଯୁବକଟିର ମୁଣ୍ଡ ବାଳଠୁ ପାଦ ପର୍ଯ୍ୟନ୍ତ ହାତ ବୁଲାଇ ଅଣ୍ଡାଳ ଆଣିଲା । ପରଧାନ ଜନ୍ କୁର୍ତ୍ତା ଆଉ ମ୍ଲକ୍ସ୍‌କୁ ସାଉଁଳାଇଲା । ପରଖିଲା । ଯୁବକଟି ଶୁଦ୍ଧ ଓଡ଼ିଆରେ କହୁଛି –

: କଣ ଦେଖୁଛନ୍ତି ଭଉଣୀ ? ମୋର ପୋଷାକ ? ମୁଁ ଓଡ଼ିଆ ହିଁ । ସାଇବାଣୀ ନୁହଁ । ଯୀଏଙ୍କ ସାଙ୍ଗରେ ମିଶିବାଠୁ ଇଏ ମତେ ଇମିତି ଅଦ୍ଭୁତ ବେଶ କରୁଛନ୍ତି । ମୋ ନାଁ ମାଳତୀ । ତାଙ୍କ ରଙ୍ଗ ତକ୍ ତକ୍ ଗୋରା ହୋଇଥିବା ଯୋଗୁଁ ଆଉ କହରା ମୁଖ ରୂରା ବାଳ ବାଗ୍ଦା ଚଢ଼େଇ ବସା ପରି ମଣ୍ଡି ହୋଇଥିବାରୁ, ସମସ୍ତେ ଭାବନ୍ତି ସିଏ ବିଦେଶୀ ସାଇବ ଟୋକା । ଆଖି ବ ତାଙ୍କର ନୀଳରା । ଅସଲ ଗୁମର କଥାଟା ତମକୁ କହି ଦେଉଛି । ଉଡ଼ାପରି ଭଳି କୋଉଠୁ ଆସିଲେ, ତାଙ୍କ ଘର ପରିବାର କେଉଁଠି ସେ କିଛି ଜାଣନ୍ତିନି । ପିଲାଦିନେ ତାଙ୍କୁ ଖୋକନ୍ ଡାକୁଥିଲେ ବୋଲି ସେତିକି ତାଙ୍କର ମନେ ଅଛି । ଆମ ଗାଁରେ ଆସି ଜଣେ ଖାଉନ୍ଦର ଗୁହବାସ ବୁଝୁଥିଲେ । ମୁଁ ଥିଲି ବାଲ୍ୟ ବିଧବା । ସମସ୍ତ ଚଳଣରେ ଆମେ ଦୁ'ଜଣ ଘର ବାନ୍ଧି ଦେଲୁ । ତାଙ୍କର କେତେ କ'ଣ ଉଦ୍ଭଟ ଯୋଜନା ସେ ସବୁ ମୁଁ ବୁଝୁନାହିଁ । ଖାଲି ମଟର ସାଇକଲରେ ଯେତେ ହୋଇ ଗାଁ ସହର ବସ୍ତି ଘୂରି ବୁଲୁଛୁ । କହୁଛନ୍ତି ମଣିଷଙ୍କ ସଙ୍ଗେ ଖୁବ୍ ମିଶିବା । ମଣିଷକୁ ଚିହ୍ନିବା । ଅବହାଓ୍ୱାକୁ ଚିହ୍ନିବା, ତା'ପରେ ବ୍ୟବସ୍ଥା କରିବା କେମିତି ଅଲଗା ଗୋଟାଏ ଗାଁ ବସେଇବା, ସାମ୍ରାଜ୍ୟ ଗଢ଼ିବା । ଯେଉଁଠି ପ୍ରବେଶ କରିବା ପୂର୍ବରୁ ଏଇ ଉପ୍ଯାବହ ବଂଶ ଶତାବ୍ଦୀର ମୃତ୍ୟୁ ହୋଇ ସାରିଥିବ ଏବଂ ଶବ ବ୍ୟବଚ୍ଛେଦର ବେଳ ଆସି ଯାଇଥିବ ।

ସପନ ଟିକିଏ ମୁରୁକି ହସି କହୁଛି—

: ମୁଁ କିଛି କିଛି ବୁଝିବାକୁ ଆରମ୍ଭ କଲିଣି । ପଇ ମୌକା ପାଇ ଖୋକନ ସାହେବ ଭାରି ଉଷ୍ମ ଆଉ ଗମ୍ଭୀର କଣ୍ଠରେ କହି ଗଲେ—

: ଭଉଣୀ ଆପଣ ଗୁଲକ୍ ଚତୁର । ଅନ୍ୟମାନଙ୍କ ପରି ଆଖି ବନ୍ଦ କାନ ବନ୍ଦ କରି ବସିନାହାନ୍ତି । ଖାଲି ଡୋଳା ଦି'ଟା ନଷ୍ଟ ହୋଇଗଲେ କ'ଣ

ଲୋକ ଅନ୍ଧ ହୋଇଯାଏ ! ଆପଣଙ୍କ ମନଶ୍ଚକ୍ଷୁ ତାଜା ଅଛି । ଏଇ ମଟେ ଦେଖନ୍ତୁ ମୁଁ ଚୋର, ତସ୍କର, ଡକେଇତ, ରାଜମିସ୍ତ୍ରୀବାଲା, ମୂର୍ଖ ପଣ୍ଡିତ ସମସ୍ତଙ୍କ ବାଟ ଦେଇ ଆସିଲିଣି । ସମସ୍ତେ ନିଦାବସ୍ଥା ପର ବସି ରହିବାକୁ ଚାହାଁନ୍ତି । କାହାର ଯାତ୍ରା ସୁରୁ ହେବାର ଲକ୍ଷଣ ନାହିଁ । ପହଞ୍ଚିବା କଥା ତ ଦୂରେ ।

ନାରଣା ଭରସି କରି ପଦେ କହିଲା—

: କ'ଣ ବାବୁ ? ବିଦେଶ ଯିବା କଥା କୁଆଡ଼େ ଗଲା ? ପଇସା କମେଇବା କଥା କୁଆଡ଼େ ଗଲା । ଏବେ କ'ଣ ଆଉ ଗୋଟେ ଗାଁ ବସେଇବ ବୋଲି କହୁଛ !

ଖୋକନ୍ ସାହେବ ଠୋ ଠୋ କରି ହସି ପକେଇଲେ । କଣିକା କୁଆଡ଼ଥରଚ ଦରେ ଅସରାଏ ଡୋଫା ହମକାକର କରକା ଧସେଇ ପଡ଼ିଲା ଭୂଇଁ ଉପରେ । କହୁଚନ୍ତି—

: ଅପା ! ତମ ବାପୁରେ ମୁଁ ସବୁ ଖବର ସଂଗ୍ରହ କରିଚି । ଏଇ ଗାଁର ସୁଖ ଦୁଃଖରେ ଭାଗୀ ହୋଇ ତମେ ମାଟି କାମୁଡ଼ି ପଡ଼ି ରହିଚ ଅଗତ୍ୟା । କାରଣ ତମ ଚମ ଆଖିକୁ କିଛି ଦିଶୁନି । ହେଲେ କଥାଟା ବୁଝ । ଶହେ ଶହେ ବର୍ଷ ହୋଇ କୋଡ଼ିଏ ଶହ ବର୍ଷ ବିତିବା ଉପରେ । ସମସ୍ତେ ଘରି ଚକ୍କର କରୁଚନ୍ତି । ଏକବିଂଶ ଶତାବ୍ଦୀର ସୁଡ଼ଙ୍ଗ ଭିତରେ କେତେ ଥାଟରେ ପାଦ ଥାପି ଅଗେଇବେ । ମୁଁ ବୁଲି ବୁଲି ଦରବୁଢ଼ୀ ବିଂଶ ଶତାବ୍ଦୀର ଚେହେରା ଉଖାରୁଚି । ଯାହା ମୁଁ ଦେଖିଲି ସେଇଆ ସମସ୍ତେ କେମିତି ଦେଖିବେ ସେଇ ମୋର ଭାବନା । ଲୋକଙ୍କୁ ଭଲ କଥାରେ ହଉ କି ମନ୍ଦ କଥାରେ ହଉ ଉସ୍କେଇବାକୁ ହେଲେ ମତେଇବାକୁ ହେଲେ ଗୋଟେ ଢଙ୍ଗ କାଢ଼ିବା ଦରକାର । ଏଣୁ ନାରଣ ଭଲ କିସ୍ତିପଟ ଖୋଲି ମଣିଷଙ୍କୁ କହୁଚି ଯେ ଏ ଦେଶ ବାହାରେ ଆଉ ଗୋଟେ ଦେଶ, ଆଉ ଗୋଟେ ଜଳବାୟୁକୁ ପଳେଇବା ଭଲ । ସେଠି ସର ଲହୁଣି ମହୁ ମଣି ମାଣିକ୍ୟ ନ ମିଳୁ ପଛେ, ମଣିଷର ମୂଲ୍ୟ ବଢ଼ିବ । ପୁରୁଷକାର ବଢ଼ିବ, ଉପାର୍ଜନ ବଢ଼ିବ । ସମ୍ମାନ ସୁରକ୍ଷିତ ହବ । ମଣିଷ ସନ୍ତାନକୁ ନେଇ କଣା ବକାର ଖେଳ ଚଳିବ ନାହିଁ । କଥାଟା ସହଜ । ଏଠି ଗାଁରେ ତ ଦେଖୁଥିବ ଭୂସଂସ୍କାର ହେଉଚି

ଚଷିବଙ୍କୁ ଜମି ମିଳିବ । ସାମ୍ୟ ଆସିବ । ହେଲେ ସବୁ ଜମି ସେମିତି ଏବକାର ସାହୁକାର ମହାଜନ ସରପଞ୍ଚ ସ୍ୱଜମାଡ ବାଲ୍ଲ ଆଉ ଗୁଣ୍ଡା ବା ତସ୍କରଙ୍କ ହାତରେ ଠୂଳ ହୋଇ ରହିଚ । ଝିଅଟିଏ ବାହାହେଲେ ଆକାଶ-ଛୁଆଁ ଯୌତୁକ ଦାବି । ପିଆଦା ପିଅନଙ୍କ ଠାରୁ ଆରମ୍ଭ କରି ମନ୍ତ୍ରୀ ବାଧାପ୍ରକ ପର୍ଯ୍ୟନ୍ତ ସମସ୍ତଙ୍କ ପୁଅ ବାହାଘରରେ ଲକ୍ଷେ ଅଙ୍କରେ ଡାଉରି ଦାବି । ଘରକୁ ବଳାଳି ନବ ତ ଶଦ୍ଦୋଟଙ୍କା ଘୁସ୍ ଧିଅ—ଗ୍ୟକରି ଖୋଜିବ ତ ଏକ୍ସଚେଞ୍ଜଠୁ ଆରମ୍ଭ କରି ହାକିମ ବାଟେ ମନ୍ତ୍ରୀ ପରିଷଦ ପର୍ଯ୍ୟନ୍ତ ମୋଟା ଆକାରରେ ଘୁସ୍ ଦେବା ଛଡ଼ା ଅନ୍ୟ ପନ୍ଥା ନାହିଁ । ରାସ୍ତା ତିଆରି, ସ୍କୁଲଘର ମରାମତି, ପାଣି ନାଳ ଖୋଳା ସବୁଥିରେ ବାରିକ ମିସ୍ତ୍ରୀଙ୍କର ଅଧା ମୁନାଫା । ବ୍ୟାଙ୍କ ଋଣ ହଉ ବା ସରକାରୀ ଦଳ, କୁଳନେତା, ଆର୍. ଆଇ., ଅମିନ, ବ୍ଲକ୍ ସେବକ, ସାଇ ଗୁଣ୍ଡା ସମସ୍ତଙ୍କୁ ହାତ କରିବା ଦରକାର । ପାଠ ପଢ଼ିବ ତ ଉଚ୍ଚଭଜନ୍ ରଖିବା ପାଇଁ ନାଁ କମେଇବା ପାଇଁ ମାଷ୍ଟ୍ରଙ୍କୁ ଅଧ୍ୟାପକଙ୍କ ପାଖକୁ ବଡ଼ଲୋକଙ୍କ ସୁପାରିଶ୍ ଆଣିବା ଦରକାର । ଜ୍ଞାନ ଗାରିମାର ଉପାଧି ଖୋଲା ବଜାରରେ ବିକି ଗ୍ଲଲିଚି । ପାଜି ସରତାନ୍ ଅପଗଣ୍ଡ ଗୁଣ୍ଡା ତଥା ବଡ଼ ଲୋକଙ୍କ ଘୋଡ଼ାମୁହାଁ କୁଳଚନ୍ଦ୍ରମାମାନେ ଏବେ ସମାଜପତି ବୋଲାଉଚନ୍ତି । କଳା, ଶିକ୍ଷା, ସଂସ୍କୃତି, ସବୁ ଆସରରେ ଏଇମାନେ ଅଧ୍ୟକ୍ଷ ଆଉ ବଡ଼ପଣ୍ଡା, ଅଥଚ ଆମ ପୋଥିରେ ଲେଖାହୋଇଚି ସମାଜର ପ୍ରଶାନ୍ତି ପାଇଁ, ସଂସ୍କୃତିର ଅଭ୍ୟୁତ୍ଥାନ ପାଇଁ, ଦୁଷ୍କୃତର ବିନାଶ ପାଇଁ ଏଇମାନେ ସବୁ ଜଅଲ ଭିତରେ ରହିବା କଥା । ଦରବୁଢ଼ୀ, ବିଂଶ ଶତାବ୍ଦୀ ଗୋଟେ ଦ'ଟା ବାହାଡ଼ା ଦାନ୍ତ ନିକୁଟି କ'ଣ ତମୁକୁ କହୁଚି ସପନ ଅଟା ? ସବୁ ସହିଯା, ସବୁ ସହିଯା ଏଇନା ? ଆମେ ଧବୁ ଭୁନ ହୋଇ ବସିଥିବା । ଅଜଗର ନିଦରେ ଶୋଇବା । କସିନ୍କାଳେ ଫଣା ଉଠେଇବାନି କି ଗ୍ଟେଠ ମରିବାନି । ଏଁ ?

କେଜାଣି କାହିଁକି ନାରଣା ଚହିଁକି ଉଠି କହିଲା—

: ଏ ଗୁଡ଼ାକ ତ ସବୁଦିନିଆ ଦେହସୁଆ କଥା । ଅଧିକା ଟା କଣ କହୁଚ ? ଗାଁ ଲୋକେ ସିନା ହଇରାଣ ହରକତ ହଉଚନ୍ତି, ତମ ସହର

ଲୋକେ ତ ଆରାମ କରୁଛନ୍ତି ଧନ କମାଉଛନ୍ତି । ସିନେମା ଟି. ଭି. ଦେଖୁଛନ୍ତି । ଉଡ଼ାଜାହାଜରେ ଉଡ଼ୁଛନ୍ତି । ନଗର ଲଳନାମାନେ ପଶ୍ଚ ପର ବେଶ ହଉଛନ୍ତି । ସବୁଆଡ଼େ ଚକ୍ ଚକ୍ କରୁଛି ମଟରଗାଡ଼ି ବିଜୁଳି ଆଲୁଅ । ଆଗତ ଶତାବ୍ଦୀରେ ତମପରି ସହସ୍ର ଲୋକଙ୍କର ଆତୁର ଭାଗ୍ୟ ଖୋଲିଯିବ ।

ସପନର ଚେତନାରୁ ନିମିଷକ ପାଇଁ ଝର୍ବିତ ହାହାକାର ଏକ ଦୀର୍ଘଶ୍ୱାସ ମୁକୁଳି ଗଲା ।

କହିଲା—

: ଦେଖ ତମେ ଯାହା କହୁଛ ଖାଲି ଗରମ ରକ୍ତର କଥା କହୁଛ, ଏମିତି ନୁହେଁ । ଅକଲର କଥା ବି କହୁଛ । ଗାଁର ପଣ୍ଡିତ ପୁରୁଣା ଢଙ୍ଗିଆ ମୁରବିମାନେ ପିଲାଦିନେ ଆମକୁ ସମଝାଉଥିଲେ, ଅନ୍ୟାୟ ଉତ୍କଟ ହୋଇଗଲାବେଳେ ବାହାରିବ କଳ୍କୀ ବାରହାତ ଖଣ୍ଡା । ତାଙ୍କୁ ଢେଟେଟେଗ ଲଟଗଇ ତ ଦରିଆରେ ବିସର୍ଜନ କରିଦେଲ । ମୋ ଭାଇ କଲେଜରେ ପା'ଠ ପଢ଼ିଲା ବେଳେ ମତେ ପଢ଼ାଇ ଶୁଣାଉ ଥିଲା ଯେ ଫରାସୀ ବିପ୍ଳବ ଠେ କ ଗାନ୍ଧୀ ମହାତ୍ମାଙ୍କ ସ୍ୱାଧୀନତା ସଂଗ୍ରାମ ପରି ଗୋଟେ ଭାରି ଜୋର୍ ସଂଗ୍ରାମର ସମୟ ଆସିଗଲା । ଏଥିରେ କେତେ ରକ୍ତପାତ ହବ । ପାପର କୃମିଅଦ୍ ଭୂଷୁଡ଼ି ଯିବ । ନୂଆ ମଣିଷର ଅଭ୍ୟୁଦୟ ହବ । କାହିଁ ଖୋକା ସାହେବ, ଆମ ଗାଁରେ ତ ସେମିତି କିଛି ହେଲା ଭଳି ଦିଶୁନି । ଟିକିଏ ସହର ନଅର କଥା କହିଲ ଶୁଣିବା । ସେଠି ବି କ'ଣ ସମସ୍ତଙ୍କ ରକ୍ତ ପାଣି ପାଲଟି ଗଲାଣି ?

: ସେ କ'ଣ କହିବେ । ମୋ ଠୁଁ ଶୁଣ । ଠାଣିରେ ଦୁଷ୍ଟାମି ଉକୁଟାଇ ସାଇବାଣୀ କହୁଛ ।

: ହେଲେ କ'ଣ ହେଲା ନା, ଆମର ଜଣେ କନିଷ୍ଠଙ୍କର ରାସ୍ତାରେ ଦୁର୍ଘଟଣା ହୋଇଗଲା । ମଟର ଆକ୍ସିଡେଣ୍ଟ୍ । ମୁଁ ଫୋନ୍ କଲି ପୁଲିସ ଷ୍ଟେସନକୁ ଆଉ ହସ୍ପିଟାଲ୍‌କୁ । ଯେତେ ଡାଏଲ୍ ଘୁରେଇଲେ, ଖୁନ୍ଦା ବାଧା ମାଇଲେ ଫୋନ୍ ଆଉ ନ ଲାଗନ୍ତି । କଥା କ'ଣ ନା ଫୋନ୍

ମାଲିକ ନିର୍ଦ୍ଧାରିତ ମୁନାଫା ଦେଉନାହାନ୍ତି । ଫୋନ୍ ବାଲାଙ୍କ ସାଙ୍ଗେ ସଲସୁଲୁର କରିଥିଲେ ଯେତେ ଫୋନ୍ କଲ୍ କରାହେବ ସେଥିରୁ ଅଧାବିଲ୍ ସେମାନେ କାଟି ଉଡ଼େଇଦେଇ ପାରିବେ । ପୁଣି ଏତିକିବେଳକୁ ଟେଲିଫୋନ୍ ଟେକ୍ନିସିଆନ୍‌ମାନଙ୍କ ଷ୍ଟ୍ରାଇକ୍ । ମଟର ସାଇକଲ୍‌ରେ ଛୁଟିଲୁ ହସ୍‌ପିଟାଲ୍‌କୁ । ସେଠି ବୁଝିଲୁ ତିନିଟା ଆମ୍ବୁଲାନ୍‌ସ ଗାଡ଼ି ବେମରାମତି । ଡ୍ରାଇଭରମାନେ ଓଭର୍ ଟାଇମ୍ ଦାବି କରି ଅନଶନ କରିଚନ୍ତି । ଡାକ୍ତରଙ୍କୁ କହିଲୁ ସାଙ୍ଗରେ ଚାଲନ୍ତୁ ନଇଲେ ଅଧାମରା ଲୋକଟାକୁ ଏଇଠିକି କୌଣସି ପ୍ରକାରେ ନେଇଆସିବୁ । ଡାକ୍ତରଖାନାରୁ ବାହାରକୁ ନଯିବା ପାଇଁ ଡାକ୍ତରଙ୍କୁ କଡ଼ାକଡ଼ି ନିର୍ଦ୍ଦେଶ ବୋଲି କହିଲେ । ପେସେଣ୍ଟ୍ ଆସିଲା ପରେ କହିଲେ ଅପରେସନ୍ ହବ କିନ୍ତୁ ରକ୍ତ ଦରକାର । ଏଇ ବ୍ଲଡ୍ ଗ୍ରୁପ୍‌ର ରକ୍ତ ଡାକ୍ତରଖାନାରେ ନାହିଁ । ଚଉଗୁଣା ଦାମ୍ ଦେଲେ ଜନୈକ ବେହେରା କୌଣସି ନିଭୃତ କେନ୍ଦ୍ରରୁ ଏ ପ୍ରକାର ରକ୍ତ ଆବିଷ୍କାର କରି ପାରନ୍ତି । ତା'ର ବ୍ୟବସ୍ଥା କରି ସାରିଲା ପରେ ସର୍ଜନଙ୍କ ରାତି ଡିଉଟି ସମୟ ସରିଯାଇଥିବାରୁ ସେ ପରବର୍ତ୍ତୀ ସର୍ଜନଙ୍କ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲେ । ଯେହେତୁ ଦୂର ସର୍ଜନଙ୍କ ଯିବା ଆସିବାର ବ୍ୟବଧାନ ଦୁଇ ତିନି ଘଣ୍ଟାରୁ ଟପି ଯାଇପାରେ ବୋଲି ଉଦ୍‌ଘୋଷିତ ହେଲା, କାର୍ଯ୍ୟଟି ତ୍ୱରାନ୍ୱିତ କରିବା ପାଇଁ ହଠାତ୍ ଦୁଇହଜାର ଟଙ୍କାର ବ୍ୟବସ୍ଥା କରିବାକୁ ହୃଦୟବାନ୍ ଲୋକମାନେ ପରାମର୍ଶ ଦେଲେ । ହଠାତ୍ ଏତେ ଗୁଡ଼ାଏ ଟଙ୍କା ଯୋଗାଡ଼ କରିବା ପାଇଁ ଆମର ଜଣେ ବନ୍ଧୁଙ୍କୁ ଫୋନ୍ ଉଠେଇବାବେଳକୁ ଘଟଣାଟିର ସର୍ବାଦୌ ଅବସ୍ଥା ଏ ପର୍ଯ୍ୟନ୍ତ ଜାରି ରହିବା ଓ ଫୋନ୍ ଅଚଳ ବୋଲି ଖୋଦ୍ ହାସ୍‌ପାତାଳର ଇମର୍-ଜେନସି ଟେଲିଫୋନ୍ ଅପରେଟର୍ ପ୍ରକାଶ କଲେ । ବିଚରା ଜଖମ ରୋଗୀଟି ବିଂଶ ଶତାବ୍ଦୀର ଶେଷ ପାଦରୁ ସୁବିଧାରେ ସ୍ୱାହା ପାଇଗଲା । ଏମିତି ଅନେକ ଚିଜ ଭଉଣୀ ! କେତେ ବଖାଣିବି । କହି ଲାଗିଲେ ପୂରା ଶତାବ୍ଦୀଏ ଭିତରେ କଥା ସରିବନି । ନାରଣା ହଠାତ୍ ଦିବ୍ୟ ଜ୍ଞାନ ପାଇଗଲା ପରି ଏକରକମ ଚିତ୍କାର କରି ଉଠିଲା—

: ନାଇଁ ଗୋଟେ କିଛି କରିବାକୁ ପଡ଼ିବ ।

ଖୋକା ସାହେବ ଓଠକୁ ସପନାର କାନ ପାଖରେ ଝୁଲେଇ ଖୁବ ନଦାଁ ସ୍ୱରରେ ପଚାରିଲେ —

: ତମେ ଇ ଠିକ୍ କହିପାରିବ ଅପା ଆମକୁ କ'ଣ କରିବାକୁ ହବ ।

ଅପା ଆଶ୍ଚର୍ଯ୍ୟ—

: ଭଲ କଥା କହୁଚ । ମୁଁ ଭାବିଥିଲି ତମେ ଆସି ଆମକୁ ଉପଦେଶ ଦେଇ ବାଟ ବତେଇ ଦବ । କିମ୍ବା ଆଉ ଗୋଟେ ଶୋଭାବନ୍ତ ସୁଖସ୍ୱପ୍ନର ରାଜ୍ୟକୁ ପଳେଇବା ବୋଲି । ଓଲଟା ମତେ ପଚାରୁଚ ମୁଁ କହିବି ବୋଲି ! ଭାଇ ଭାଉଜ ସହରରେ ରହିଲେ । ସେ ତାଙ୍କ ଦୁଃଖ ସୁଖ ଭୋଗୁଚନ୍ତି । ମୁଁ ଅନ୍ଧୁଣୀ ଆଉ ଧଇଁସେଇଁ କାଶର ଶିକାର ମୋ ବୁଢ଼ୀମାଆ, ହ'ଗୃଖଣ୍ଡି ପେଟ । ଟଙ୍କା ତ ଯାଉଚି, ଭାଗ ଜମି ହ'ମାଣରୁ ଯାହା ଆଉଚି । ମୋ ଆଖି ଯଦି ବିଧାତା ଫୁଟେଇ ଦେଲା, ମୁଁ ଯଦି ଘରସଂସାର କରି ନ ପାରିଲି ଏଥିରେ କାହାକୁ ଦୋଷ ଦେବି ? କି ଏ ଗୋଟେ ନବଜଆ ପରମ ପୁରୁଷ ଇଏ ସବୁ ଉଆଣ କରି ମଜା ଦେଖୁଚି ବୋଲି ଭାବିନିଅ ! ଆତ୍ମା ଉଶ୍ୱାସ ଲାଗିବ । ମୋ ପାଇଁ ତ ନାରଣୀ ସାଙ୍ଗରେ ହ ପଦ କଥା, ମା' କୋଳରେ ନଦୋଳିଆ ନଦ, ପଣ୍ଡା ଜଗା ପିଲାଙ୍କ ଗୋଠ ଲେଉଟାଣି ବଇଁଶୀର ଧୂନ୍, ଝୁଲଣ, ଯାତ୍ରା ସୁଆଙ୍ଗର କୋଳାହଳ, ଆମ୍ବବଗିଚ ଭିତରେ କାକଳୀ, ବର୍ଷା ଶରତ ହେମନ୍ତର ଶୀତ୍କାର ସବୁ ଏକାଠି ଏକାକାର ହେଇ ମତେ ଭୁଲାଇ କରି ସାରିଚି । ବାହାରକୁ ଚାହିଁ ପାରୁନି, ଦେଖି ପାରୁନି ସିନା, ହେଲେ ଆତ୍ମା ଭିତରେ ଆଲୁଅ ଅନ୍ଧାରକୁ ନିରେଖିଲେ ଦିଶୁଚି ଜଳ ଜଳ । ଏଙ୍କ ଲୋମହର୍ଷଣକାରୀ ଦୃଶ୍ୟ । ଭଅଁରମାନେ ଫୁଲର ଆଘ୍ରାଣ ଗର୍ଭରେ ମୂର୍ଚ୍ଛା ଯାଉଚନ୍ତି ।

ଅପାର ସ୍ୱର ଗଦ୍ ଗଦ୍ ଅଥଚ ଉଦ୍ଧତ ।

: ଠିକ୍ କଣ ଦିଶୁଚି ଅପା ? ପଚାରୁଚି ଖୋକା ।

: କହିବି ? ଏ ଭବସିନ୍ଧୁରୁ ଏ ମାୟାବର୍ତ୍ତରୁ ନିସ୍ତାର ଅଛି । ଅଲବତ୍ ଅଛି । କିଏ ଜଣେ ଆଗ ମଶାଲ୍ ଟେକି ବାହାରିବ ସେଇ ହେଲା ପ୍ରଶ୍ନ !

ଏକାବେଳେକେ ହ'ଟା ସ୍ୱର ମିଶେଇ ଖୋକନ୍ ସାଇବ ଆଉ ମାଳଶ୍ରୀ ପାଟିକରି ଉଠିଲେ—

： ସେଇ ଲୋକ ହାଡ଼ର ତମେ ସପନ ଅପା । ତମେ ମଶାଲ ଟେକିବ ।

ବାପ୍‌ରେ ବାପ୍ । ତାପରେ କ ବେଦମ୍ ହସର ଲହଡ଼ି । ଗୁରୁଜଣ-ଯାକ ଏକାବେଳେକେ ଅଟ୍ଟା ଖସିଲା ଭଳି ହସି ଗୁଳଚନ୍ତି ।

ଖେ କା ଆଉ ସାଇବାଣୀ ଦୁ'ଜଣ ଯାକ ଉଠି ଠିଆହେଲେ । କହିଲେ ଆମେ ଯାଉଚୁ ଶମକଳ ଅଡେ । ସେଠଉଁ ଫେରିଲାବେଳେ ଏଇବାଟ ଦେଇ ଦେଖା କରିଯିବୁ । ତାଙ୍କୁ ବାଟେଇବା ପାଇଁ ସପନ ଗୋଡ଼ରେ ଟିପ ମାରି ମାରି ବାଟ ପରଖି ଦୁ'ଟ ପାହୁଣ୍ଡ ଓହ୍ଲେଇ ଆସିଲା ।

ଗତ ଦଶଟା ପ୍ରାୟ । ଅବହାଓ୍ୱାରେ ନଦୁଆ ନଦୁଆ ମଟାଳ ବାସ୍ନା ଚହଁରି ଲାଗିଚ । ଖୋଲା ଦମ୍ପତ୍ତ ସାଙ୍ଗରେ ଦ୍ୱିପ୍ରହରର ପ୍ରଲମ୍ବ ଆଲୋଚନା ପରେ ମୁଣ୍ଡଟା ଓଜନ ଧରି ଯାଇଥିଲା । ଏବେ ହାଲ୍‌କା ହେଇ ଆସୁଚ । ଆକାଶରୁଁ ଅତଳ ପାତର ପର୍ଯ୍ୟନ୍ତ କ'ଣ ଯେ ସେ ଭାବି ଯାଉଚ ଜାଣି ପାରୁନ । କିନ୍ତୁ ଅନେକ ପ୍ରାଚୈତିହାସିକ ପ୍ରଶ୍ନର ମଞ୍ଜୁସାର ଖୋଜିବାକୁ ମନ ଟାଣୁଚ । କୁଆଡ଼ୁ କେମିତି ଗୋଟାଏ ଟିକ୍ରା ବି ଆସି ପାଇଚ ଭିକ୍‌ରେ, ଶୋଣିତ ପ୍ରବାହରେ । ଯୁଝିବାକୁ ଏକ ଅଜ୍ଞାତ ଶତ୍ରୁର ବିପକ୍ଷରେ ।

ତାଙ୍କ ସାହିର ପଚଗଲା ପଧାନ ସାହିର ବାହୁତ ଠାକୁରାଣୀ ବେଡ଼ା ଆଡ଼ୁ ହଠାତ୍ ଶୁଣାଗଲା ଏକାଠି ପଚିଶି ତିରିଶି ମାଇପିଙ୍କର ବିକଳ କାନ୍ଦଣା । ସପନ ହଠାତ୍ ପିଣ୍ଡା ଦାଡ଼କୁ ଉଠି ଠିଆ ହେଇ ପଡ଼ିଲା । ମନରେ ଛନକା ପଶିଗଲା । ପାପ ଛୁଇଁଲା । ଇଏ କାନ୍ଦଣାର ସୁର ତ ତା'ର ସଙ୍ଗାତ ମନୁ ଘର ଆଡୁ ଆସୁଚ । କିଏ ଗୋଟେ ଦଉଡ଼ି ଦଉଡ଼ି ଆସି ତାକୁ ଅଟକି ସ୍ୱରରେ କହୁଚ—

： ସପନ ଅପା ମୋ ସାଥିରେ ସାଙ୍ଗେ ସାଙ୍ଗେ ମନ୍ଦାକିନୀ ଅପା ଘରଠିକି ଆସ । ସିଏ ତମ୍ଭକୁ ଖୋଜୁଚ । ନଇଲେ କାନ୍ଦି କାନ୍ଦି ତା ପିଣ୍ଡରୁ ପ୍ରାଣ ଛୁଡ଼ିଯିବ ।

"କ'ଣ ହେଇଚ କ'ଣ ହେଇଚ" କହି କହି କେମିତି ବାଟ ବାରି ଦଉଡ଼ି ଗଳିଚ, ଆଉ ପହଞ୍ଚି ଯାଇଚ ସିଏ ମନୁଆଁ ଘର ଭିତରେ—ତା'ର ହୋସ୍ ନାହିଁ । ଦୁ'ହାତ ପାପୁଲିରେ ଅଣ୍ଡାଳି ଅଣ୍ଡାଳି ସିଏ ଜାଣିପାରିଲା ଯେ ଯୋଉ ଟେହେରଟି ଏଇ ଦଉଡ଼ିଆ ଖଟଟି ଉପରେ ଲଟକି ରହିଚ ସେଇଟା ମନ୍ଦାକିନୀ । ତା ପ୍ରାଣର ଅତି ଅନ୍ତରଙ୍ଗ ସହଚରୀ । ମଥା ଆଉଁସିଲା । ଥିର୍

ଥିର୍ ନିଶ୍ୱାସ ଚାଲିଛି । ଆଖିରୁ ଦ'ଧାର ଲୁହ ଦାଗ ଲିଭିନି । ଓଠ ଫୁରୁଛି । ଇଏ କ'ଣ ! ତା କାନରେ କି ବେକରେ ନୋଳିଟିଏ କି ମାଳିଟିଏ ନାହିଁ । ହାତ ଦ'ଟା ଫୁଙ୍ଗୁଳା । କ'ଣ ହେଲା ! କାହିଁକି କେମିତି ତା'ର ସବୁ ସରିଗଲା ! ସପନ ମୂକ ପାଲଟି ଗଲା । ଆଖିରୁ ଲୁହ ଖସେଇ ପାରୁନି, ଏବେଶ ମୂର୍ଚ୍ଛନା ଫାଟି ଯାଉଛି । ମନୁର ବାପା ଭୁହାକୁ ଭୁହା କୋହରେ ଧକେଇ ଧକେଇ କହୁଚନ୍ତି —

: କ'ଣ ଆଉ ଅଣ୍ଡାଳୁଚୁ ଲୋ ମା । ତୋ ସଙ୍ଗାତ ବିଧବା ହେଇଗଲା । କ'ଣ ଜ୍ୱାଇଁର ଗୋଟାଏ ଜର ହେଲା ଦ' ତିନଦିନ । ତା'ପରେ ସବୁ ଶେଷ୍ । ହେଲେ ତା ଶାଶୁ ଶଶୁର ଦ'ଟା କେମିତି ରାକ୍ଷସ ଦେଖୁଚୁ ! ଆଗରୁ କିଛି କାରଣ ନ ଜଣେଇ ଅସଲ ଘଟଣା ନ କହି ସମ୍ପତ୍ତିରୁ ଭାଗ ନେଇଯିବ ବୋଲି ଘରୁ ନିକାଳି ବାପ ଘରକୁ ପଠେଇ ଦେଇଚନ୍ତି । ଖବର ଦେଇଚନ୍ତି କ'ଣ ନା ବୋହୂ ପହିଲି ପାଳି ବାପ ଘରକୁ ଆସୁଛି । ଏ'ଙ୍କୁ କ'ଣ ଧର୍ମ ସହିବ ?

ମାଦାକମାର ମା ବାପା ଦୁହେଁ ପୁଣି ଭୁହାଏ ମୂର୍ଚ୍ଛନା ଫଟା କାନ୍ଦ ଭିତରେ ଗଛ କାଟିଲା ଭଳି ଝିଅ ଉପରେ ଲଦି ହେଇ ପଡ଼ି କୁଣ୍ଢେଇ ଧରିଲେ ତାକୁ । ବିସ୍ମୃତକର ଭାବେ ବିଭ୍ରବଶ ଏବେ ନିର୍ବାକ, ନିଷ୍ପଲକ ।

ସପନକୁ ଖୋଜି କେତେବେଳେ ଏଇଠେ ଆସି ପହଞ୍ଚି ଯାଇଚନ୍ତି ଖୋକନ୍ ସାଇବ ଆଉ ତା ଭାରିଯା । ଏ ଦ'ଜଣଙ୍କୁ ବାକି ଲୋକେ ଜୁଳୁଜୁଳୁ ଚାହୁଁଚନ୍ତି । ହଠାତ୍ ସପନ ଉନ୍ମାଦିନୀ ପରି ଠିଆ ହେଇ ପଡ଼ିଲା । ତା ପାଟିରୁ ଓଠରୁ ଯେମିତି ଅନଳ ଝରୁଛି । ଗୋଟିଏ ଚରଚାପ ପିଟି କରି କମ୍ପାଇ ଦେଲା ।

: ଧର୍ମ ସହୁ କି ନ ସହୁ, ଆମେ ସହିବା କାହିଁକି ? ସଙ୍ଗାତର କିଛି ହେଇନି । କିଛି ବିଗିଡ଼ିନି । ସିଏ ଖାଇଚି ଯେମିତି ଆମେ ସମସ୍ତେ ଖାଅନ୍ତା । ସିଏ ମୋ ସାଙ୍ଗେ ମଶାଲ୍ ଟେକିବ !

ଆଉ କିଏ କିଛି ବୁଝିନ୍ତୁ କି ନ ବୁଝିନ୍ତୁ ପ୍ରମତ୍ତ ଆବେଗ ଆଉ ପ୍ରତ୍ୟୟର ଏକ ଝଲକ ଖେଳି ଯାଇଚି ଖୋକନ୍ ଦମ୍ପତିଙ୍କ ଲଲାଟରେ । ସପନର ମୁଦା ଆଖିରୁ ଝରି ଚାଲିଛି ଚନ୍ଦ୍ରମଧୁ ।

ଆଉ ଆକାଶ ମୂର୍ଚ୍ଛା ଯାଇଛି ।

—o—

# ତରଳ ବହ୍ନି

ସିଏ ଚନ୍ଦ୍ରପୁ ପ୍ରଶାନ୍ତ ଖୋଜିବାକୁ ଆସିଛନ୍ତି ।

ଯେଉଁଆଡ଼କୁ ଗୃହିଁ ଖାଲି ଡେଙ୍ଗା ସଳଖ ଗଛମାନଙ୍କ ସମାରୋହ । ଉପରକୁ ଥୁଣ୍ଟା କେନା କେତେ ମେଲି ଦେଇଚ । ବାହୁଙ୍ଗାରେ କୋଉଠି ହେଲେ ଗୋଟିଏ ପତର ନାହିଁ, ବଉଳ ନାହିଁ କି ଚଢ଼େଇ ନାହିଁ । ବଙ୍କା ଜହ୍ନଟାଏ ଝୁଲୁଚ ଆକାଶରେ । ତାରି କ୍ଷୀଣପ୍ରଭାରେ ଅର୍ବୁଦ ଅର୍ବୁଦ ଗୁଇ ଆଲୁଅ ମାଖିହୋଇ ଠିଆ ଠିଆ ଗଛମାନଙ୍କ ପଲ୍ଟଆଗ । ଆଉ ଏ ସବୁର ନେପଥ୍ୟରେ ଏକ ଜନମାନବ ନାକ କାନ୍ଧୁଶ ଅକସ ବାଭବସର ଭୂଚହ । ସେ ଗୃହିଁଚ ଜୁଳୁଜୁଳୁ କରି ତାର ଏକ ବଖୁରିଆ ମାଟି ଘରର ଏକୁଟିଆ ଝରକାଟି ଭିତରୁ ପଦାକୁ । ଯାହା'ର ଆସିବା'ର ଥିଲା ତାକୁ ଏମିତିକା ଶୂନ୍‌ସ୍ଥାନ୍ ଉନ୍ନିଦ୍ର ରାତିରେ ଆସିବାକୁଇ ହେବ, ନହେଲେ ଏ ପ୍ରତୀକ୍ଷାର କନକନିଆଁ ଚମତ୍କାର ସମ୍ଭାବନା ସବୁ ହବାକ୍ ଉଜୁଡ଼ି ଯିବ ଯେ । ଆଜି ତ ପ୍ରଥମ ଦଫା ସିଏ ଅପେକ୍ଷା କରୁନି । ଦିନ ଦିନ ରାତି ରାତି ବିତି ଯାଇଚ । ଅଲବତ୍ ଆସିବାର ଲୋକଟି ଏଯାଏଁ ଆସିନି । ଜମାରୁ ଆସିବନି କି ଆଉ !

ଲାଗୁଚ ଯେମିତି ମାଣିକ ସବୁ ଗଛ ବାହୁଙ୍ଗାରେ ଦ୍ଵିଖଣ୍ଡ ଭିଥିର ବଙ୍କା ଜହ୍ନପରି ଝୁଲୁଚ । ତାର ଗୋଟାଏ ଅଭ୍ୟାସ ପଡ଼ି ଯାଇଚ ଯେ ଏମିତି ଉଦୁଉଦିଆ ନକାଞ୍ଚନ ମନର ସାମ୍ରାଜ୍ୟରେ ଯେତେ ଥୁଣ୍ଟା ଗଛ ଉଭା ରହିଥିବେ ସେ ସବୁକୁ ଖେପା ମାରି ମାରି ଛୁଇଁ ଛୁଇଁ ଯାଉଥିବ । ଆଉ ବାହୁଙ୍ଗାରେ ମାଣିକମାନେ ବେକରେ ପଘା ଫାନ୍ଦ ଝୁଲୁଥିବାର ହାହତୋହ୍ନି ଦୃଶ୍ୟ ତା ଆଖି ଆଗରେ ନାଚୁଥିବ । ହାତ ଟେକି ଉପରକୁ ମାଣିକ ଯାଏଁ ପହଞ୍ଚିବାକୁ କି ତାକୁ ତଳକୁ ଓଟାରି ଆଣିବାକୁ ଯୁ ନଥିବ, କାହିଁକି ନା ଶବମାନେ ଖରି ଆରାମରେ ଏଇ ନିର୍ଲଜ ଢେଙ୍ଗସେଡ଼ିଆ ଗଛଗୁଡ଼ିକ ଶୀର୍ଷରେ ଝୁଲିବାକୁ ଭଲ ପାଆନ୍ତି । ତଳ ମଣିଷ ଯେତେ ଡିଆଁ ଉକୁଣ୍ଡି କଲେ ତାଙ୍କର ହାତ ପାଆନ୍ତ ହୁଅନ୍ତ ନାଇଁ ।

ଏଇ ତ କ'ଣ ଗୋଟାଏ ଦୂରରୁ ଏଆଡ଼କୁ ଆସିଲା ଭଳିଆ ଦିଶୁଛି । ଗ୍ରାଇଟା ପାଖ ହୋଇଗଲା । ଅବିନାଶ ତା ଗୁମ୍ଫି ଭିତରୁ ବାହାରି ଉଚ୍ଚ ପିଣ୍ଡା ତଳକୁ ଓହ୍ଲାଇ ସାନ ପାଣିଚକିଆ ଗାଡ଼ିଟି ପାଖକୁ ଲାଗି ଆସିଲେଣି । ଗ୍ରାଇଟା ଚକିଆର ଆର ପାଖେ ଠିଆ ହୋଇଛି ଆଉ ଏପାଖେ ଅବିନାଶ । ଠିକ୍ ଜଣା ଯାଉନି କିଏ ସେ ଲୋକଟା ହୋଇପାରେ । ତେବେ ନିହାତି ଅର୍ବାଚୀନ ଅଚିହ୍ନା ମୁହଁ ପିଠି ବି ଲାଗେ ଯେମିତି ବେଳେ ବେଳେ ଅତି ଆପଣାର ।

ଚକିଆ ଆର ପାଖରୁ ଗ୍ରାଇଟା କ୍ରମେ ହାତ ଡେଇଁ ଡେଇଁ ଏଇ ପାଖକୁ ଆସୁଛି । ପାଣି ଭିତରେ ଉଜ୍ଜ୍ୱଳ ଜହ୍ନର ଛପିଛପିକିଆ ଆଲୁଅ । ସେଇ ଭିତରୁ ବେଙ୍ଗ ଫୁଲା ମାନ୍ଦ କେଇଟା ହାତ ଉପରୁ ପାଣି ଭିତରକୁ ଡିଆଁ ମାରିଲେଣି । ଫାଳେ ପଣତର ଛନ ଛନ ଗ୍ରାଇ ଚହଲୁଛି ସେଇଠି । ଏଇ ଗ୍ରାଇଟା ଏକାବେଳକେ ଅବିନାଶର ଦେହ ଉପରେ ଓହ୍ଲାଇଗଲା ଭଳି ଝାଙ୍କି ଆସିଲାଣି ।

ଇଏ କିଏ ମ ?

ଠୋ ଠୋ ହୋଇ ଅସରାଏ ଜଳ ତରଙ୍ଗର ହସ ଓଜାଡ଼ି ଦେଇ ଗ୍ରାଇ କହୁଛି—

: ମତେ ଚିହ୍ନିନୁ କିରେ ? ତତେ ମୁଁ ଖତମ କରିବି ଆଉ ମାଣିକର ତଣ୍ଟି ଚିପିବି । ତମ ଦି'ଜଣଙ୍କ ରକ୍ତ ପିଇ ସାଇଲା ପରେ ତମେ ଦିହିଁ ପୁଣି ଖାଇଁଚ ? କି ବେହେଡ଼ା ମରଦ !

ଶୁଖିଲା ଗାଡ଼ିଆରେ କେଉଣ୍ଡି ଛଟପଟ ହେଲାଭଳି ଇଏ କେମିତି ଜୀବନ ! ମାଣିକଟା ତ ବାୟାଣୀ ପରି ରାସ୍ତା ଘାଟ, ବସ୍ ଷ୍ଟାଣ୍ଡ, ସିନେମା ଘର, ବଜାର ହାଟ ସବୁଠି ଅଧନଙ୍ଗଳା ହୋଇ ନାଚୁଛି ଆଉ ତୁ ବସିଚୁ ଯାଇ ସେ ଗୁମ୍ଫି ଭିତରେ । ହୋଇଛି ହୋଇଛି ଭଲ ହୋଇଛି । ଦେଖ ତମେ ଦି'ଟା ଖାଇଚ ହେଲେ ମୁଁ ନାଇଁ । କୋଉଠି ହେଲେ ନାହିଁ । ଖାଲି ସୁର୍‌ଟିଏ । ଧୂନଟିଏ । ଗ୍ରାଇଟିଏ । ପ୍ରାଣ ପିଣ୍ଡକୁ ମୋର ଚିପୁଡ଼ି ନିଗାଡ଼ି ନିଃଶେଷ କରି ଦେଇଚୁ ତୁଇ । ତୁଇ । ଅବିନାଶ ଚିହ୍ନି ପାରୁଛି—

: ସରସୁ କଲେ ? କାହିଁକି ଏମିତି ଉଦ୍ଭଟ କଥା କହୁ ତୁ ? କେତେଦିନ ପରେ ଦେଖା । କେତେ ଯୁଗ ପରେ, ମନ୍ୱନ୍ତର ପରେ । ଆସୁନୁ ଆଃ । ଘର ଭିତରକୁ ଆସେ । ଘର ଏକୁଟିଆ ଲାଗୁଚି । ଉଦାସ ଲାଗୁଚି । ସେଇଠି ସବୁ କଥା ହବା । ଆଗ କଥା । ପଛ କଥା । ତୋର ମନେ ନାହିଁକି ଯୋଉଦିନ ହାସ୍‌ପାତାଳରେ ତୁ ଅପରେସନ୍ ହେଇ ଶୋଇଥିଲୁ ଆଉ ମୁଁ ତୋ ପାଖରେ ପହଞ୍ଚି ମସୁଣି ଟେକି ଦିଏତ ତୋ ମୁହଁରେ ଫିକ୍ କରି ହସ କେରିଏ ଉକୁଟି ଗଲା । ତାପରେ ଦେଖିଲେ ମା ଅସମ୍ଭାଳ ଲୁହ । ଡାକ୍ତର ତୋ ନାଡ଼ି ଚିପି ନାକରେ ହାତ ମାରି ଗୁଣ୍ଡିତରେ ଷ୍ଟେଥୋ ପକେଇ କହିଲେ ସବୁ ସରିପାଇଚି । ତୁ ଆଉ ସୁରକୁ ଚାଲି ଯାଉଚୁ । ସେ ପୁରରୁ ଏ ପୁରକୁ ବା କେତେ ବାଟ । ଦେଖୁନୁ କେତେ ସୁମରଣା କରି କରି ତୁ ତ ପୁଣି ଆସିଗଲୁ । ହେଇ ପାଖରେ ଲାଗି ଠିଆ ହେଇଚୁ । ହେଲେ ତୋ ହାତ ମୁହଁ ଦିହ କହୁ ମୁଁ ବାରି ପାରୁନି । କୋଉଁଠି ଉତ୍ତାପ ନାହିଁ କି ଚମକ ନାହିଁ । ତୁ ସତରେ ଅଛୁ ନା ନାହିଁ ବା ?

ଗୁଇ ତାକୁ ଏବେ କଟମଟ କରି ଅନେଇଲା ଆଉ କହିଲା —

: ମୁଁ ତ ଭୂତୁଣୀ । ଆଉ ତମେ ରଇଜଳା ସବୁ ଖାଅନ୍ତା ମୂର୍ଦ୍ଦାର । କହୁ ଫରକ୍ ନାହିଁ । ମୁଁ ତମ ଦିହାଙ୍କୁ ତଣ୍ଟି ଚିପି ନେବାଏଁ ନେବାଏଁ କରି ମାରୁଥିବି ଆଉ ଯୋଜନ ଦୂରକୁ ହଟେଇ ତଡ଼ାଇ କରି ରଖିଥିବି । ହଉଥା ସାନୁକା ।

ଗୁଇଟା ଉଭାନ୍ ହେଇଗଲା । ଅବିନାଶ ଦେହରେ ଗମ୍ ଗମ୍ ଝାଳ । କାହିଁ ସେ କାହାକୁ ଦେଖୁଥିଲା କାହା ସାଙ୍ଗେ କଥା ହଉଥିଲା । କୁଆଡ଼େ କିଏ ସବୁ ଚାଲିଗଲେ । ଧାଡ଼ି ଧାଡ଼ି ଡେଙ୍ଗା ଗଛ ଝାଳି ତା ଚାରିପାଖେ ଘେରି ରହିଛନ୍ତି । ଆଉ ସବୁ ତାହାରେ ଦ୍ୱିତୀୟା ଚନ୍ଦ୍ରର ବଙ୍କା ଅଧର ପରି ମାଖି ହେଇଚି ମାଣିକର ଉନ୍ମନା ସରୁ ହସ ପଁଉଏ ପାଖୁଡ଼ିଏ । ଅବିନାଶ କାଳିକାଳା ସବଳର ଧାଇଁ ଚାଲିଗଲା ତାର ରୁମ୍ ଭିତରକୁ । ଆଉ ଧଡ଼୍ କରି ଦରଜା ବନ୍ଦ କରି ନେଲା ।

ସହର ତଳି ନଗ୍ନଟିଆ ରାସ୍ତା । ଚଉଛକ ଶଙ୍ଖ ଉପରେ ଅବିନାଶ ବସିଚନ୍ତି । ସଞ୍ଜ ବେଳ । କୋଉକାଳୁ ତାଙ୍କର ଅଭ୍ୟାସ ଏମିତି ସଞ୍ଜବେଳେ

ଅଫିସରୁ ଫେରିଲା ପରେ ଗୁ’ କପେ ଖାଇ ଦେଇ ବାଡ଼ି ଖଣ୍ଡିଏ ଧରି ବାହାରି ଯାଆନ୍ତି ଏଇ ନଗ୍ନଟିଆ କାଠଗୋଲା ଘଡ଼ାରେ । ଆଉ ଦି’ କଲେ ମିନିଟର ଖଣ୍ଡେ ବୁଲିଲା ପରେ ଆସି ବସି ପଡ଼ନ୍ତି ଏଇ ଶଙ୍ଖ ଉପରେ । କାଁ ଭାଁ ଲୋକ ପ୍ରଚଳ । ମଟର ଗାଡ଼ି ବଜାର ହଟ୍ଟଗୋଳ କନ୍ତୁ ନାହିଁ ଏଠି । ବୁଢ଼ା ହୋଇଗଲେଣି । ବୟସ ପାଖାପାଖି ପଁଷଠି । କନ୍ତୁ ଆଉର ବୁଢ଼ା ଦିଶୁଚନ୍ତି । ଆଉର ଝୁଲି ପଡ଼ିଲା ପରି ଦିଶୁଚନ୍ତି । ଅଣ୍ଟାରେ ବାତ ଧରିଚି । କୋଉଠି ଗୋଟାଏ ଶିଡ଼ି ଚଢ଼ିଗଲେ କି ଓହ୍ଲେଇ ଆସିଲେ ବୁକୁ ଭିତରେ ନିଃଶ୍ୱାସ ରୁନ୍ଧ ହୋଇ ସବୁ ପୂଜା ଅଚଳ କରିଦେଲା ଭଳି ଲାଗୁଚି । ଅବିନାଶ ଅବସର ନେଲେଣି ଗୃହକସ୍ଥିରୁ ପ୍ରାୟ ନଅବର୍ଷ ହେଲା । ଭାରି ଦମ୍ଭ ସ୍ୱଭାବର କାମିକା ଲୋକ ଥିଲେ । କିରାଣୀରୁ ଉଠି ଉଠି ଅଣ୍ଡରସେକ୍ରେଟାରି ଯାଏଁ ଗଲେ । କ୍ୟାପିଟାଲରେ ଗୃହ ବଖରା ଭଲ ଟାଣୁଆ କୋଠାଟିରେ ଭିଆରି କରିଚନ୍ତି । ସୁନ୍ଦର ବଗିଚାଟିଏ ବି ବାନ୍ଧିଚନ୍ତି । ଯୋଉଦିନ ରିଟାୟାରମେଣ୍ଟ ନୋଟିସ୍ ମୁତାବକ ତାଙ୍କର ଅଫିସ୍ ଗ୍ଳଡ଼ିବା କଥା ସେଦିନ ବି ସିଏ ସବୁଦିନର ଦିନହୁଦା ସଞ୍ଜ ସାତଟା ପର୍ଯ୍ୟନ୍ତ କୁର୍ସିରେ ବସି ଫାଇଲ୍ ଗଦାକୁ ସାଉଁକୁଚନ୍ତି । ମନେ ବି ପଡ଼ୁନି ଯେ ଆଜି ତାଙ୍କ ଗୃହକସ୍ଥିର ଶେଷ ଦିନ । ପାଞ୍ଚଟା-ବେଳେ ଠିକ୍ ପଳେଇ ଗଲେ ଯାଆନ୍ତା । ହେଲେ କଣ ଗୋଟେ ତାଙ୍କୁ ଏଇ ତେତିଶ୍ ବର୍ଷ ଗୃହକସ୍ଥିରେ କମିଆଁ କରି ବିବଶ କରିଚି ଯେ କାୟମନୋ-ବାକ୍ୟର ସବୁ ରୁଟିନ୍ ଯେମିତି ସୀମାବଦ୍ଧ ଆଉ ମନସିକସ୍ତରରେ ସେ ବାକିଟା ସଂସାର ପ୍ରତି ପ୍ରାୟ ଉଦାସୀନ ଆଉ ଅଥର୍ବ । ମନେ ପଡ଼ୁଚି ରିଟାୟାର୍‌ମେଣ୍ଟର ପରଦିନ ତା’ପରଦିନ ଏମିତି ଲଗାତର୍ ପନ୍ଦର କୋଡ଼ିଏ ଦିନ୍ ସେ ଯେମିତି ନିଜର ଅଜାଣତରେ ଅଫିସ୍‌କୁ ବୋଷାରି ହୋଇ ଗ୍ଳାଲେ ଠିକ୍ ଦଶଟାବେଳେ । ତାଙ୍କ ଜାଗାରେ ଆସିଥିବା ନୂଆ ଅଣ୍ଡର ସେକ୍ରେଟେରୀଙ୍କ ସାମ୍ନାରେ ପଡ଼ିଥିବା ଚୌକିରେ ଯାଇଁ ବସିଲେ । କନ୍ତୁ ସହାନୁଭୂତି ଆଉ ଭବିଷ୍ୟତର କଳ୍ପନା ନେଇ ସାନ୍ତ୍ୱନା ବାଣୀ ବି ଶୁଣିଲେ । ପୁଣି ବୁଲିଲେ ସେକ୍ରେଟେରିଏଟ୍ କରିଡ଼ର୍ ସାରା । ଯେତେ ଚହ୍ଲା ମୁହଁ ତାଙ୍କୁ ଦେଖି ଶୁଖିଲା ହସ ହସିଲେ । ବଡ଼ବାବୁ, କିରାଣୀ, ଚପରାସୀ, ଡାକବାଲା, ପାନ ସିଗ୍ରେଟ ଦୋକାନୀ, ଯାହାକୁ ସେ ଦେଖିଲେ କହି ଗ୍ଳାଲେ—

ଜାଣିଲନ୍ତି । ମୁଁ କାଲି ରିଟାୟାର୍‌ମେଣ୍ଟ ନେଇଗଲେ ।

ସେଠଉଁ ବି ଭବିଷ୍ୟଦ କଥା କୋଉଠି ରହିବେ । କିଁ ପରିବାସ୍ଥ କଣ । ପିଲାମାନେ ତ କୂଳରେ ଲାଗି ଯାଇଚନ୍ତି । ଏଣିକି ଭଗବାନ୍ ଚଳେଇ ନେବେ । ଆଗରୁ ଲାଗୁଥିଲା ସେ ସବୁ ବଡ଼ ହାକିମ କମିଶନର୍‌ର ସେକ୍ରେଟାରୀ ତାଙ୍କର ଡେପୁଟି ଆଉ କେତେ ଓଜନଆ କର୍ମଧାରିସ୍ଥ ଏତେ ବଡ଼ ଦପ୍ତର ଭିତରେ ଶାସନ କରୁଚନ୍ତି ସମସ୍ତେ ତାଙ୍କୁ ସମ୍ମାନ କରୁଥିଲେ, ଭଲରେ କଥା ଦି'ପଦ ହଉଥିଲେ । ଖାଲି ତାଙ୍କର ବୟସ ଯୋଗୁ ନୁହେଁ, ଜ୍ଞାନ ବି ସେମିତି ଥିଲା, ପାରିବାର ପଣିଆ ବି ସେମିତି ଥିଲା । ଅବିନାଶ ବାବୁ ନୋଟ୍ ଲେଖି ଦେଇଚି ମାନେ ସେଥିରେ ଆଉ ଟିପ୍ପ କେହି ଛୁଇଁବେନି । ତାବି ତଳେ ଖାଲି ଗୋଟେ ଗୋଟେ ଦସ୍ତଖତ ଦେଇ ଦେଇ ଡେପୁଟି ସେକ୍ରେଟାରୀଠାରୁ ଚିଫ୍ ମିନିଷ୍ଟର ଯାଏ ସିଧା ସଳଖ ଉଡ଼ି ଚାଲିଯିବ ଫାଇଲ୍ । ଆଉ ସିଆଡ଼ୁ 'ଧନ୍ୟବାଦ' ସଙ୍କେତ ସହ ଆଦେଶ ଆସିଯିବ । କିନ୍ତୁ ଏଣିକି ତାଙ୍କୁ ଦେଖି ପକେଇଲା ମାତ୍ରେ ସମସ୍ତେ କେମିତି ନ ଜାଣିଲାଁ ଖସିଗଲା ଭଳି ହଉଚନ୍ତି । କେଜାଣି ତାର ଦୁଃଖ କହି ପକେଇବେକି, ବଖତ୍ ବରବାଦ୍ କରି ପକେଇବେ କି । ପୁଣି ପୁରୁଣା କଥା ଦୋହରେଇବେକି । ନାଃ ଆଉ ନୁହେଁ । ଆଉ ଏ ଦପ୍ତରକୁ ସେ ଆସିବେନି । ବି କିରଣ ଉଠା ଉଠି ଲିଫ୍ଟରେ ଏ ଫ୍ଲୋର୍‌ରୁ ସେ ଫ୍ଲୋର୍‌କୁ ଉଠିଲେ । ଏଇତ ଦେଖା ହେଇଗଲା ଜଣେ ଚହ୍ଲାମୁହଁ । ଠିଆ-ହେଇ ଅଳ୍ପ ମୋଟି ହିଁଅଛି ନମସ୍କାର କରୁଚି । କ'ଣ ତ ତା ନାଁ ? ତମେ ସୀମନ୍ତିନୀ ଟି ? ସେ ହଁ ମାରିଲା । ଆଉ ଏବେ କୋଉଁ ଡିପାର୍ଟମେଣ୍ଟରେ ? ସେ ତାର ନୂଆ ଡିପାର୍ଟମେଣ୍ଟ କଥା ଜଣେଇଲା ଆଉ ପଚାରିଲା କୃପା କଲାଭଳି—

: ଷ୍ଟୁକଣ୍ଟ ତ ଆପଣଙ୍କର ସରିଲା । କ'ଣ ଗୋଟାଏ ଏଥର କରନ୍ତୁ । ମନ ବଦଳି ଯିବ ।

ମନେ ମନେ ନିଜ ଉପରେ ରାଗ ଚଢ଼ିଯାଉଥିଲା । ସରମ ଚଢ଼ିଯାଉଥିଲା । କ'ଣ ହେଲା । ଏଇ ଟୋକା ଖଣ୍ଡିକ ପାଇଁ ପୁଣି ସେ ସ୍ଥାନଟା ବ୍ୟବସ୍ଥା କରି ଦେଇଥିଲା । କେତେ ଆସି ଗୋଡ଼ ତଳେ ପଡ଼ି ନେହୁରା ହେଇ ଷ୍ଟେନୋଗିରି କରିବ ବୋଲି ଲାଗିଥିଲା । ଯାଙ୍କ ଚେଷ୍ଟାରୁ ପାଇଗଲା ।

ସେତେବେଳେ ନହକା ପତଳା ହତାସିଆ ରୂପ । ଏବେ କେତେ ମୋଟି ହେଇଗଲଣି । ଏତେ ଟୋପାଏଁ ସିନ୍ଦୂର ମାରିଛ୍ତି ।

କେତେ ପିଲା ଛୁଆ କେତୋଟି ? ସାମନ୍ତମା କହୁଚ ପୁଅଟିଏ, ଝିଅଟିଏ । ଦୁଇଟା ଯାକ ଭଲ ପଢୁଚନ୍ତି । ଆଉ ଏଙ୍କର ବାପ ତ ବ୍ୟବସାୟରେ ମାତିଲେ ଚବିଶି ଘଣ୍ଟା । ଘର କଥା ମୁଁ ସବୁ ବୁଝୁଚ ।

: ହଉ ଭଲ ହେଲା ଭଲ ହେଲା । ଭଗବାନ ସୁଖରେ ରଖନ୍ତୁ ।

ଏତକ କହିଦେଇ ଖସି ପଡ଼ନ୍ତିଇଲା ଭଲ ଠାଉଠାଉ ଚାଲି ଗଲେ ଅବିନାଶ । ଅବସର ନେଲା ପରେ କଣ ତାଙ୍କର ପୁନର୍ଜନ୍ମ ହେଇ ଯାଇଚ କି ? କି ପୁଣି ଏକ ବାଜୁତ ଅବସ୍ଥା । ଯାହାକୁ ଯାହା ମନରେ ଆସୁଚ ଖାଲି ଉପଦେଶ ଦେଇ ଦଉଚନ୍ତି, ଆକଟ କରି ଚାଲିଚନ୍ତି । ସେତେ ଯିଏ ଅର୍ଦ୍ଧଶିକ୍ଷିତ ଅଧମ ପଞ୍ଚୁକୁଳିଆ ମଣିଷର ମେଳ, ଏଇମାନେ ପୁଣି ତାଙ୍କୁ ସଲାହ ଦଉଚନ୍ତି । ଧେତ୍ତେରି, ବାଡ଼ଟାକୁ ଘାସ ଉପରେ କେଞ୍ଚି କେଞ୍ଚି ଅନାମନା ଘବୁଚନ୍ତି । ସବୁ ରୁଟିନ୍ ପ୍ରାପ୍ତ ଠିକ୍ଠାକ ଅଛି । ଖାଲି ଦପ୍ତର ଯିବାଟା ଛଡ଼ା । କା ସାଙ୍ଗରେ ଟିକିଏ ମନ ମିଳିଲା ଭଲ କଥା ହେବାର ସୁଯୋଗ ମିଳିଗଲେ ଆଉ ଆଗପରି ଦପ୍ତରର ଫାଇଲ ହାକିମ ମନ୍ତ୍ରୀ ଆସେମ୍ବ୍ଲି ରାଜନୀତି ଏମ୍. ଏଲ୍. ଏ ଏସବୁ କଥା ହବାକୁ ଭଲ ଲାଗୁନ । ଏଣିକି ଚିନ୍ତାର ମୋଡ଼ କଥାର ମୋଡ଼ ଅନ୍ୟ ଦିଗରେ ! ଏବେ ପିଲାବେଳଠୁଁ ପ୍ରାଇମେରୀ ସ୍କୁଲ, ହାଇସ୍କୁଲ, କଲେଜ ପଢ଼ା ପୁଣି ଯୌବନର ସବୁ ଉତ୍ସାହ ସ୍ଖଳନ ପୁଣି ପାକଳ ବୟସରେ ପୃଥିବୀକୁ ମଣିଷକୁ ନଠେଇ ନଠେଇ ଚିହ୍ନିବାର, ଜୀବନକୁ ମୂଲ୍ୟାୟନ କରିବାର ବହପ ଏ ସବୁର ସ୍ମୃତିକୁ ଦୋହରେଇବାକୁ ଭଲ ଲାଗୁଚ ।

ହେଲେ ଗୋଟେ ରୁଟିନ୍ ବିଗିଡ଼ି ଯାଇଚି । ସଞ୍ଜବେଳେ ଅଧଘଣ୍ଟାଏ ଚାଲବୁଲା କରି ସାରିଲା ପରେ ଆଠଟା ସୁଦ୍ଧା ସେ ଘରେ ପହଞ୍ଚି ଯାଉଥିଲେ । ଚାରିଟା ମଞ୍ଚ ସାଙ୍ଗ ଥିଲେ । ହାଇସ୍କୁଲ ହେଡ଼ କିରାଣୀ ରଙ୍ଗାଧର । ସେଲ୍-ଟିକସ ଓକିଲ ଜନାର୍ଦ୍ଦନ । ସେତେବେଳର ନାମଯାଦା ଫୁଟବଲ ଖେଳାଳୀ ଆଉ ଏବର ବରିଷ୍ଠ ଫଳ ଦୋକାନୀ ସଲିମ୍ । ଏଇ ତିନି ଜଣ ଆସି ନିର୍ଦ୍ଧାରିତ ସମୟରେ ପହଞ୍ଚିଯିବେ । ଚାଲିବ ବ୍ରିଜ ଖେଳର ଧୁମ୍ ରାତି ଏଗାର

ପର୍ଯ୍ୟନ୍ତ । ଯଦି ଜଣେ ଦିଜଣ କିଏ କୋଉ କାମରେ ଅଟକି ଯାଇ ନ ଆସି ପାରିଲେ ତାହେଲେ ବି ଜଣିଆ ଟେସ୍ ଖେଳ ବି ଜମି ଯାଉଥିଲା । ଏବେ ଏଇ ମେଳଟା ଫାଙ୍କା । ରଙ୍ଗାଧରଟା ସ୍ୟାଙ୍କ ସଭିଙ୍କଠୁ ବଡ଼ । ଭାରି ବ୍ଲାକ୍ । ଭାରି ହିଟଟମଟ କରିପାରେ । କଣ ପରୀକ୍ଷା ଖାତା ନମ୍ବର ହିସାବରେ ଗୋଳମାଳ ହେଲା । ବୋର୍ଡ୍‌ରୁ ଚିଠି ଆସିଲା ଆଉ ତାକୁ ସସ୍‌ପେଣ୍ଡ କରିଦେଲେ । ଚାକିରି ସେତେବେଳକୁ ତାର ଆଉ ତିନିବର୍ଷ ଅଛି । ସେ ଚଣ୍ଡିଗୋଳ ନ କରିଥିବ । ଏମିତି ନାଇଁ । ତା'ର ଭୁବନେଶ୍ୱରରେ ଦିଟା କୋଠା । କଟକରେ ଗୋଟାଏ କରିଚି କିଣି । ଭଗବାନ ଭାଗ୍ୟ ଦେଇଥିଲେ, ନେଇଗଲେ । ଗୋଟାଏ ବୋଲି ପିଲା । ସେ ପାଇଁ ବିଲାତରେ ବଡ଼ ଚାକିରି କରିଚି । ବାପା ମା'ଙ୍କୁ ପତ୍ରରୁ ନ ପତ୍ରରୁ । କଦବା କେମିତି କହୁଛି ମୋଟା ବିଦେଶୀ ଟଙ୍କା ବା ଉପହାରଟାଏ ଫ୍ରିଜଟାଏ ଥ୍ରୀ-ଇନ-ୱାନଟାଏ କି ଦାମୀ କମ୍ବଳ ଦିଟା ପଠେଇ ଦିଏ । କେବେହେଲେ ସିଏ ବାପ ମା'ଙ୍କୁ ଦେଖିବା ପାଇଁ ଓଡ଼ିଶା ଆସିବା ଜଣା ନାହିଁ । ତେବେ ଏତେ ବଡ଼ ମୋଟା ତାଗଡ଼ା ମଣିଷଟାଏ ସସ୍‌ପେନସନ୍‌ର ଛମାସ ଭିତରେ ଝାଉଁଳି ପଡ଼ିଲା । କଣ୍ଟା ହେଇଗଲା । ପୁଣି ଶୁଣୁ ଶୁଣୁ କଣ ନା ତାକୁ କର୍କଟ ଗ୍ରାସ କରିଚି । ତାପର ଛମାସ ଭିତରେ ଖତମ୍ । ସଲାମ୍ କଥା ଦେଖ । ସବୁବେଳେ ବତିଶ ଦାନ୍ତ ଦେଖେଇ ହସୁଥିବ । ବାଷଠି ବର୍ଷ ବୟସରେ ଗୋଟେ ଦାନ୍ତ ବି ତାର ପଡ଼ି ନଥିଲା କି ବାଳ ଗୋଟେ ବି ପାଚି ନଥିଲା । ଲମ୍ବ ନୁଖୁରା ମଣିଷ । ପାଇକଲୁ ମାରି ରଜାପିଲା ପରି ଧୋତିଟେ ପିନ୍ଧିବ । ତା ଉପରକୁ ଗୋଟେ ଲମ୍ବା ବୁସ୍‌ସାର୍ଟ । ତା କାନ୍ଧ ଉପରେ ଦିଟା ଫିତା ପୁଲିସଙ୍କର ହୁଇସିଲ ଗଳେଇବା ବ୍ୟାଜ ପରି ଲାଗିଥିବ । ହାତରେ ଖଣ୍ଡାଏ ତମାଖୁଦିଆ ପାନ ଧରିଥିବ, ଆଉ ପାଟିରେ ଦିଖିଲି କି ସବୁବେଳେ ଟକର ଟକର ହଉଥିବ । ଯାଇଥିଲା ହଜ୍‌ରେ ମକ୍କା କି ମଦିନା କୁଆଡ଼େ ଯିବା ଆବେଦନ ଆସିଲା । ସେପଟେ ପଣେସ ତରକାରୀ ଆଉ ଚକୁଳି ଖାଇଲା ଏଙ୍କ ଘରେ । ଆଉ କହିଲା "ଯାଉଚି ଭାଇ ଟିକିଏ ଧରମ କରମ କରିବି । ଫେରି ଆସିଲେ ତୋ ସାଙ୍ଗେ ଦେଖା । ପୁଣି ପାଳି ପଡ଼ିବ ।" ଗଲାଦିନ ଭାରି ଜୋ'ରରେ କୁଣ୍ଡେଇ ଥାପୁଡ଼େଇ ଅବିନାଶକୁ କହିଗଲା ଯେ ଯେତେ ଧର୍ମ ଅର୍ଜିବି କି ଆଲ୍ଲାଠୁ ପାହା ପାଉଣା

ଖାଇବ ତୋ ସାଙ୍ଗରେ ଅଧା ଅଧା ବାଣ୍ଟି ଦେବ । ଲୁଚ ମୋର ଜଗିଣ ଦୋସ୍ତ । ଯାଇଚ ଯେ ଯାଇଚ । ତା'ର ରେଲୱେ ଗାର୍ଡ଼ ଜୋଇଁ ଆସି ଦୁମାସ ପରେ କହି ଦେଇଗଲା—

ମଉସା ଚାପା ଚାଲିଗଲା । ସେ କୁଆଡ଼େ ବୁଡ଼ିକରି ମରିଗଲେ । ପାକିସ୍ଥାନ ସରକାରଠୁ ମେସେଜ୍ ଆସିଚି ।

ଆଉ ଥିଲା ଶେଷକୁ ପଟେ ବୋଲି ସାଙ୍ଗ । ସେଲଟିକସ ଓକଲ ଦିନ କେଇଟାରେ ବୁଢ଼ା ବୟସକୁ ତାର ରୋଜଗାର ଫନ୍ଦ ଏମିତି ଜଣ ବଢ଼ିଗଲା ଯେ ତାକୁ ଦେଖା ମିଳିଲାନି । ମଝିରେ ମଝିରେ ଆସେ । ଗୋଟେ ପରେ ଗୋଟେ ମଟର ଗାଡ଼ି ବି କିଣିଲା । କହିବ —

: ଭାଇ ସପ୍ତାହକୁ ତିନି ହଜାର କିଲୋମିଟର ଦଉଡ଼ିବାକୁ ପଡ଼ୁଚି । ସବୁ ହାକିମ ହୁକୁମାଙ୍କୁ ହାତ କରିବାକୁ ହବ । କୋର୍ଟମାନଙ୍କୁ ଠିକ୍ ଭାବରେ ବ୍ରିଫ୍ କରିବାକୁ ହେବ । ପୁଣି ରାଜନୀତିରେ ବି ପଶି ଯାଇଚୁ । ସବୁବେଳେ ଫୋନ୍ । ସବୁବେଳେ ଡାକରା । ମନ୍ତ୍ରୀ ପାର୍ଟି ଅଫିସ୍ ଏମ୍. ଏଲ୍. ଏ ଟିକଟ ବସ୍ତୁ । ଦିଲ୍ଲୀ ଦଉଡ଼ ।

ହଉ ଭଗବାନ ଜନାର୍ଦ୍ଦନର ମଙ୍ଗଳ କରନ୍ତୁ ବୋଲି ଦୀର୍ଘଶ୍ୱାସଟିଏ ଛାଡ଼ି ଏକୁଟିଆ ଏକୁଟିଆ ଭ୍ରମି ଚାଲିଲେ ଏଇ ନିଃସଙ୍ଗ ମଣିଷଟି, ଅବିନାଶ । ଜଣା ନାହିଁ ଶୁଣା ନାହିଁ ଦେଢ଼ବର୍ଷ ପରେ ହଠାତ୍ ଗୋଟାଏ ରିକ୍ସା ଆସି ଅଟକିଲା ଦୁଆର ମୁହଁରେ । ରିକ୍ସାବାଲା ଡାକୁଚି ପାଟି କରି ବାବୁ ଧାଇଁ ଆସ ଧାଇଁ ଆସ । ଏ ବାବୁଙ୍କର କଣ ହୋଇ ଯାଉଚି । ଅବିନାଶ ବାରେଣ୍ଡାରେ ବସି ଗୁଡ଼ାଖୁ ଘଷୁଥିଲେ । ଦିହରେ ଯଦିଓ ବଳ ଆଉ ଚଞ୍ଚଳତା କମି ଯାଇଚି ବହୁତ ତଥାପି ଧପ୍‌ସି ଗଲେ । ରିକ୍ସା ଉପରୁ ଲୋକଟାକୁ ଉଠେଇଲା ବେଳକୁ ଚିହ୍ନିଲେ । ଆରେ ଏଇଟା ତ ଜନାର୍ଦ୍ଦନ । ସେଲଟିକସ୍ ଓକଲ ।

ତୋର କଣ ହୋଇଚି କରେ ? ଆଫା ଆଫା ହଉଚୁ ?

ଧାଇ ପଡ଼ିଶାରୁ ଦି ଚାରିଜଣ ଧାଇଁ ଆସିଲେ ଆଉ ଟେକାଟେକି କରି ତାଙ୍କୁ ନେଇଗଲେ ହାସପାତାଳ । ଡାକ୍ତରଖାନାର ବଡ଼ ଡାକ୍ତର ପରୀକ୍ଷା କରି କହିଲେ ପେସେଣ୍ଟର ବ୍ରେନ୍ କାମ କରୁନି । କୋମା ଆସିଗଲା । ଇଏ

ଏମିତି ପଡ଼ ପଡ଼ ଯିବ । ଛନଟା ଯାକ ଘର ନବୁଜ ସାଙ୍ଗ । ତାଙ୍କ ମୃତ୍ୟୁରେ। ଯେମିତି ନଜ ଭିତରର ପୁର୍ଜାରୁ କୋଉଠୁଁ ପୁଳାଏ ପୁଳାଏ ଅଚଳ ହୋଇଗଲା ଇଞ୍ଚେ ଇଞ୍ଚେ ନଜକୁ ମରିଗଲେ ଭଳି ପ୍ରତ୍ୟୟ ହେଲା । ପଦ୍ମ ଘୂଞ୍ଚି ଘୁଞ୍ଚି ଯାଉଚି କ ଦୂର ଦୂରକୁ । ଇଏ ଖାଲି କ୍ରମେ ଶୂନ୍ୟଟାରେ ପାଦ ଓହଳେଇ ଠିଆ ହେଲା ପରି ଝୁଲୁଚନ୍ତି ସମସ୍ତେ ତୋଟରେ !

ପୁରା ରାସ୍ତାଟାକୁ ବାପା ଜମିଦାରଙ୍କ ଭଳି ଚଉଡ଼ାବାଗିଆ ସାଇକେଲ୍ ଚଢ଼ି ହାତ ଧରାଧରି ହୋଇ ସୁସୁର ମାରି ଗୁଡ଼ିଏ ଟୋକା ସାଇକେଲ ଛୁଟେଇ ଗଲେ ଯାଉଚନ୍ତି ପାଖ ଦେଇ । ଗୋଟାଏ ସେଥିରୁ ପଛକୁ ବୁଲି ଚାହିଁଲା । କହୁଚି—

: ବୁଢ଼ା ବଇଚରେ । ଆଜି ତ ବୁଢ଼ିଠୁ ଖଉ ମୁସା ଖାଇଥିବ । ରାତିରେ କାହିଁକି ପଦାରେ ଚରୁଚି । ଶଳାର ନୁଙ୍ଗୁଳି ଆଦତ୍ ଏବେ ବି ଯାଇନ ।

ଆଉ ଜଣେ କହୁଚି —

: କାହିଁକି ସେମିତି ବୁଢ଼ାଟାକୁ କହୁଚୁ ବେ । ବିଚରା ମନ ଦୁଃଖରେ ବସିଥିବ କି ହାଓ୍ୱା ଖାଉଥିବ । ତାଙ୍କ ସମୟରେ କଣ ଜଣାଥିଲା ଯେ କେତେ ବଡ଼ିଆ ଜଉମ ଜାଗା ସବୁ ଅଛି ସହରରେ, ଯେଉଁଠିକି ଖାଲି ପହଞ୍ଚି ଗଲେ ମିଜାଜ କଲିଜା ମସ୍‌ଗୁଲ୍ ହୋଇଯିବ । ଜାଣିଥିଲେ ବୁଢ଼ାବାଙ୍କ୍ ଏଠି କାହିଁକି ବସିଥାନ୍ତା !

ସେମାନେ ଆଗେଇ ଗଲେ । ଅବନାଶ ଚାହିଁ ରହିଚନ୍ତି ତାଙ୍କରି ଆଡ଼େ । ରେ ବାଟୁଳ ! କଣ ଭାବୁଚ ଏମିତି ସାଇକଲକୁ ପୁରା ଦମ୍‌ରେ ଛୁଟେଇ ବଡ଼ ଫୁର୍ତ୍ତି ଟ୍ରାନ୍‌ଜିଷ୍ଟର ଓହଳେଇ ଖାଲି ଅପୂସ କରି ହୁଏ । ଚଣ୍ଡାଳ ତମେ ସବୁ ଆସ ମୋ ପାଖକୁ । ମୁଁ ତମକୁ ଶିଖେଇ ଦେବି କେମିତି ଉଜାପଣ । କେମିତି ବାଦ୍‌ଶାହୀ ଢଙ୍ଗରେ ଯୌବନ ଗୁଞ୍ଜଲିକୁ କାବୁ କରାଯାଏ । ବିବଶ କରାଯାଏ । କ ନଶା କରୁଚରେ ତମେ ! ଏଇ ମଦ ଟିକିଏ ଭାଙ୍ଗ ଟିକିଏ ବଟିକା ଟିକିଏ । ତମକୁ ମୁଁ ଜୀବନ ଯାପନର ନଶା ଚଖେଇବି, ଅଳକାପୁରୀ ବଣିବ । ଗୋଲକ ଧାମ ଭଣିଯିବ । ଏକୁଟିଆ ଅଭିମନ୍ୟୁ ପରି ସପ୍ତରଥୀଙ୍କି ବେହୋସ କରି ଦେଇ ପାରିବ ।

ମନେ ପଡ଼ୁଛି ବାହାଘରର ଚାରିବର୍ଷ ବିତିଛି । ନବବଧୂ ସରଯୂ । ଠିକ ଏ ସାବ୍‌ନା ରଙ୍ଗ ହେଲେ ବି କି ଚିକ୍କଣ କି ଭରପୂର ସ୍ୱାସ୍ଥ୍ୟ ଆଉ କି ଓଜ ! ଗୁଣ୍ଡୁଣୀ ହାଣ୍ଡି ପରି ଚାଲି ! ଆଉ ପଦ୍ମ ପରି କେଶ ଗ୍ରୀବା କଟିତଟ ଅଙ୍ଗଲତାର ପ୍ରମତ୍ତ ମଦକ । ହେଲେ ଭାରି ଜିଦ୍‌ଖୋର । ଯାହା ବୁଝିଥିବ ସେଇଆ । ଭଲ ପାଇବ ତ ଇମିତି ଭଲ ପାଇବ ନିଜ ଚଣ୍ଢିକାଠି ରକ୍ତ ଢାଳିଦେବ ତମ ଆଞ୍ଜୁଳାରେ । ଆଉ ବିଗିଡ଼ିଛି କି କଣ ଗୋଟେ ଓଲଟା ବୁଝିଛି, ତମ କଥା ସରିଲା । ଭାରି ଚମତ୍କାର ଦିନଗୁଡ଼ା କଟୁଥିଲା । କମନୀୟ ସ୍ୱପ୍ନାଭ ସୁଶୋଭନ ସଂସାର । ପିଲାଦିଟା ହେଲେ । ପୁଅଟିଏ ଝିଅଟିଏ । ଦିଟା ଯାକ ଭଲ ମଣିଷ ହେଲେ । ଏବେ ତ ବଡ଼ ପୁଅ କୁନ ହାଇଦରାବାଦ୍‌ରେ ବଡ଼ କମ୍ପାନୀରେ ଚିଫ୍ କେମିଷ୍ଟ । ଝିଅ ଅଳକା ଇମିତି ଗେହ୍ଲି ଯେ କେମିତି ଶାଶୂ ଘରକୁ ଗଲେ ଚଳିବ ବୋଲି ବାପ ମା ଦିଟା ଦିନ ଦିନ ଝୁରି ହଉଥିଲେ । ସେ ଏବେ ଡାକ୍ତରାଣୀ । ଗୋଟେ ହସପିଟାଲ ଚଳଉଛି । ଆଉ ଗୋଟେ ଡାକ୍ତରକୁ ବାହା ହେଇଛି । ତିନଟା ଛୁଆ । ସୁଖର ସଂସାର । ହେଲେ ଘରଣୀ ସରଯୂ ଦୂରେଇ ଗଲା ।

ସିଏ ଏକ ରୋମାଞ୍ଚକର ଅଧ୍ୟାୟ । ଅଠର ବର୍ଷ ତଳର କଥା । ପୂଜା ଛୁଟି ଆଗକୁ ଥାଏ । ସରଯୂର ଗୋଟାଏ ମୁଣ୍ଡ ବିଗିଡ଼ିବା ରୋଗ ବାହାରିଲା । ଭାରି ଜୋର କଳି ହେଲା ଲଗାତାର ଦି ଚାରିଦିନ ଧରି ସେ କାହିଁକି ଅବିନାଶ ପିଲା ଦିଟାଙ୍କର ପାଠପଢ଼ା କଥା ଦେଖାଶୁଣା କରୁ ନାହାନ୍ତି । ଫାଙ୍କା ସମୟ ପାଇଲେ ଖାଲି ତାସ୍ ଖେଳ, ଚେସ ଖେଳ, ସାଙ୍ଗ ସାଥୀ ମଉଜ । ଘରୁଆ ହେଇ ରହୁ ନାହାନ୍ତି ଖାଲି ବାହାରେ ବାହାରେ । ପୁଣି ସାଇପଡ଼ିଶାର ଆଉ ଯେତେ ଚାକିରିଆ ଜାଗା କିଣି ଖଣ୍ଡେ ଖଣ୍ଡେ ଭଲ ଘର ବି ତୋଳିଲେଣି ୟାଙ୍କର ସେଥିକି ଦୃଷ୍ଟି ନାହିଁ । କଡ଼ା କରି ପଦେ କହିଦେଲେ ଅବିନାଶ : ଯାଅ ଯଦି ମନ ନ ହେଉଛି ରହିବାକୁ ଏଠି, ବାପ ଘରକୁ ପଳେଇ ଯା । ଏକବାରେ ଗାଙ୍ଗୀ କହିଲେ ଯିବ ସେଇ ମାର୍ଗରେ ତମତମ ହେଇ ଚାଲି ଗଲେ ସରଯୂ ବସ୍ ଧରି ସେଇଦିନ ବାପ ଘରକୁ । ଯେତେ ନେହୁରା କାକୁତି ମିନତି ହେଲେ ବି ତାଙ୍କ ମନ ବଦଳିବା ମୁସ୍କିଲ । ପୁଣି ୟା ଭିତରେ ଆଉ ଗୋଟେ ଅଘଟଣ ଘଟି ଯାଇଛି । ଦିନେ ଉଦାସ

ମନରେ ଅବିନାଶ ବାରଣ୍ଡାରେ ଆରାମ ଚଉକି ଖଣ୍ଡିଏ ପକେଇ ବସିଚନ୍ତି ଆଉ ପୁଅ ଝିଅ ଦିହେଁ ଧକଡ଼େ ଠିଆ ହୋଇ ବକର ବକର ହଉଚନ୍ତି । କା'ହାର ଜାମା କାହାର ପେଣ୍ଟ କାହାର କଲମ କିଣାହେବ ସେଇଆ ଚାଲିଚି । ମା କେବେ ଆସିବ କେବେ ଆସିବ ବୋଲି ବି ଝୁଙ୍କ ଚାଲିଚି । ଅବିନାଶ ଦକ୍ଦା'ର । ଏଇ ସମୟରେ ଗୋଟାଏ ସ୍ତ୍ରୀ ଲୋକର କାନ୍ଦଣା ଶୁଭିଲା ତାଙ୍କ ଘରର ମଝିଆ ଆରପାଖ ରାସ୍ତାରୁ । ଘରି ବଳକ ଓ ପ୍ରାଣଛୁଆଁ ସେ କାନ୍ଦ । ପ୍ରଥମେ ଲାଗିଲା ଯେ ହାସପାତାଳରେ କାହାର କିଏ ମରିଗଲା ବୋଲି ଇଏ ବାହୁନା ଚାଲିଚି ଯାହା ନିତ୍ୟମିତ୍ତ ଘଟେ ।

ତେବେ ଅବିନାଶ ଦେହରେ ଖଣ୍ଡେ ଜାମା ଗଳେଇ ଚପଲ ଦିଟା ପାଦରେ ପୂରେଇ ବାହାରି ଗଲେ । ଅଜବ ଦୃଶ୍ୟ । ଧଳା ଶାଢ଼ୀ ପିନ୍ଧି ଗୋରି ତକ୍ ତକ୍ କୋଡ଼ିଏ ବାଇଶି ବର୍ଷର ଝିଅଟିଏ ଠିଆ ହୋଇଚି ଗୋଟାଏ ଗଛ ମୂଳେ । ଆଉ ସିଧା ବଣ୍ଟାଖୁଣ୍ଟଟାକୁ ଚାହିଁ କାନ୍ଦିବାରେ ଲାଗିଚି । ଲାଗୁଚି ବାୟାଣୀଟାଏ କି ତା'କୁ ଭୂତ ଲାଗିଚି ଯେମିତି । ଏଇ ଠାଣୀରେ କେହି କେବେ ଅକାରଣରେ କାନ୍ଦି ପାରେନା । ପଚାରିଲେ—

: କାହିଁକି କାନ୍ଦୁଚ ?

ସେ କିଛି ନ କହି ପୁଣି ସେମିତି ଭେଁ ଭେଁ କରି କାନ୍ଦି ଲାଗିଲା । କେଇଟା ମୁହୂର୍ତ୍ତ ଭିତରେ ଅଧା ବୟସର ଆଉ ଜଣେ ସ୍ତ୍ରୀ ଲୋକ ଆସି ପ୍ରାୟ ଦଉଡ଼ ଦଉଡ଼ ତା ପାଖରେ ପହଞ୍ଚିଲେ । ତା ଦି ହାତକୁ ଧରେଇ ମଥା ଆଉଁସି ଚୁପ୍ ହୁଅ ଚୁପ୍ ହୁଅ କହି ତାକୁ ପ୍ରକୃତିସ୍ଥ କରିବାରେ ସଫଳ ହେଲେ । ଅବିନାଶ ପଚାରିଲେ—

: ମାଉସୀ କ'ଣ ହେଉଚି ଏଠାରେ ?

ସ୍ତ୍ରୀ ଲୋକଟି ଅସହାୟ ଭାବରେ ଏଙ୍କ ଆଡ଼କୁ ଚାହିଁଲା, କହିଲା—

: ହବ ଆଉ କ'ଣ ? ଝିଅଟାର ମୁଣ୍ଡ ଖରାପ ହୋଇ ଯାଇଚି । ମୋର ପିଉସୀ ଝିଅ । ଡାକ୍ତରଖାନା ଆଣିଥିଲି । ସେଠୁଁ ଖସି ପଳେଇ ଆସିଚି । ବ୍ରାହ୍ମଣ ଝିଅ, ବାଳଶ୍ରୀ ବିଧବା । ରୂପ ଦେଖୁଚ ଯେମିତି; ଗୁଣ

ତାଠୁଁ ଆଉରି ଭଲ ଥିଲା । କ'ଣ ହେଲା କେଜାଣି ଏଇ ସାତ୍ତୁଟା ଦିନ ତଳେ ନଈକି ଯାଇଥିଲା ଗାଧେଇ । କଇଁଫୁଲ ନାଡ଼ ଛନ୍ଦି ହୋଇଗଲା ଗୋଡ଼ରେ । ତାକୁ ଗାଁ ଲୋକେ ଟେକାଟେକି କରି କୂଳକୁ ଆଣିଲେ । ସେଠୁଁ ସେ ହୁଡ଼ାଟାରେ ବସି ଗୋଟେ କମକାଠ ଗଣ୍ଡିରେ ଅଙ୍ଗାର ଖଣ୍ଡେ ଧରି ଚିତ୍ର ଆଙ୍କିଲା । କୃଷ୍ଣ ମହାପ୍ରଭୁ ଛବି, ତା ମଥାରେ ଗୋଟାଏ ମୟୂର ଚନ୍ଦ୍ରିକାର କିରୀଟ । ଆଉ ହାତରେ ବଇଁଶୀ । ସମସ୍ତଙ୍କୁ ବଡ଼ ପାଟି କରି କହିଲା : ଏଇ ହଉଛି ମୋ ବର । ସେଇ ପାଣି ଭିତରେ ମୁଁ ତାକୁ ଦେଖିଛି । ତମେ ଗାଁବାଲା କିଆଁ ତାକୁ ବୁଡ଼େଇ ମାରିଦେଲ ବୋଲି ଗାଳିଗୁଲଜ ଆରମ୍ଭ କରି ଦେଲା । ଏଇ ତ ଅବସ୍ଥା ।

ଅବିନାଶ ଆଶ୍ୱାସନା ଦେଇ କହିଲେ—

: ହଉ ହେଲା ହେଲା । ଡାକ୍ତର ଭଲ କରିଦେବେ । ଏତେ ସୁନ୍ଦର ବ୍ରାହ୍ମଣ ଝିଅ ବିଧବା ହୋଇଗଲେ ସେ ଆଉ ଥରେ ବାହା ହୋଇ ପାରିବନି ସେ ସଂସ୍କାର କ'ଣ ଆଜିକାଲି ଅଛି ? ତାର ସବୁ ଠିକ୍ ହୋଇଯିବ । ତମେ ତାକୁ ନେଇ ଚାଲ ମୁଁ ପଛେ ପଛେ ଆସୁଛି ହସ୍‌ପିଟାଲକୁ ।

ହଠାତ୍ ଝିଅଟା କାନ୍ଦ ବନ୍ଦ କରି ମୁଣ୍ଡରେ ସେଇ ଧଳା ଶାଢ଼ୀର ଓଢ଼ଣି ପକେଇ ଦେଲା ଆଉ ଚାଲିଲା ଆଗେ ଆଗେ ମାଉସୀ ସାଙ୍ଗରେ । କାନ୍ତୁ ମଝିରେ ମଝିରେ ପଛକୁ ବୁଲି ଅବିନାଶଙ୍କ ସାଙ୍ଗରେ ଆଖି ମିଳେଇଲା ପୁଣି କେଡ଼େ ସୁନ୍ଦର ଫିକ୍ କରି ହସିଦେଲା । ଯିମିତି ସ୍ୱାମୀଙ୍କ ସାଙ୍ଗରେ ତାର କୋଉକାଳୁ ଗୋଟାଏ ମୂଲ୍ୟମ୍ ଗୁପ୍ତ ସମ୍ପର୍କ ଅଛି । ଯାହା ବିଷୟରେ ଆଉ କେହି ଜାଣିନ୍ତିନି । ଅବିନାଶ ସେ ମୁହଁରୁ ଆଖି ଉଠେଇ ପାରିଲେନି । ତାଙ୍କର ସମ୍ବିତ୍ ମଝିରେ ମଝିରେ ଲୋପ ପାଇବାକୁ ଲାଗିଲା ଖାଲି ତାରି କଥା ଭାବି । ହାସପାତାଳକୁ ପ୍ରାୟ ପ୍ରତିଦିନ ସେ ଯାଉଥିଲେ । ତାର କ'ଣ ଚିକିତ୍ସା ଅବସ୍ଥା ବୁଝା ଶୁଣା କରିବାକୁ ।

ସାଇକୋଥେରପିଷ୍ଟ ଡାକ୍ତର କହିଲେ ଅବିନାଶଙ୍କୁ ଯେ ଆପଣ ପ୍ରାୟ ପ୍ରତିଦିନେ ଆସନ୍ତୁ । ଯୋଉଦିନ ଆପଣଙ୍କୁ ସେ ନ ଦେଖୁଛି ତାର ମୁଣ୍ଡ ଅଧିକ ବିଗୁଡ଼ୁଛି । ଏଇ ଟ୍ରିଟମେଣ୍ଟ ପାଇଁ ଆପଣ ଆସି ତା ସାଙ୍ଗରେ

ଅଧଘଣ୍ଟେ ଘଣ୍ଟେ ବସିଗଲେ ତାର ମାନସିକ ଶୃଙ୍ଖଳା ଆୟତ୍ତକୁ ଆସୁଚ । ସେ ଭଲ ହେଇ ଯିବ ଶୀଘ୍ର । ଖୁବ୍ ମାୟା ଟାଣିଚ ଅବିନାଶଙ୍କୁ ତାଙ୍କ ଅଜାଣତରେ, ଏପରିକ ଅନିଚ୍ଛାରେ । ଦ୍ୱିମାସ ହାସ୍‌ପାତାଳରେ ଚିକିତ୍ସା ପରେ ତାକୁ ଗାଁକୁ ନେଇ ଯିବାକୁ କୁଟୁମ୍ବ ଲୋକେ ଆସିଲେ । ସେ ସିଧା ମନା କରିଦେଲା । କୁଆଡ଼େ ଯିବନ । କହିଲା : ମୁଁ ଏଇ ବାବୁଙ୍କ ପାଖରେ ରହିବ । ସିଏ ମୋ କୁଟୁମ୍ବ—ମୋ ଚୂଲିଗୁଳର ସଂସାର । କିଛିଦିନ ଅବିନାଶଙ୍କ ପାଖରେ ଯଦି ଏଇ ରୋଗୀଣୀ ଝିଅଟା ରହିଯାଏ ତାହେଲେ ପୂରାପୂରି ଭଲ ହେଇଯିବାର ସମ୍ଭାବନା ବହୁତ । ଅବିନାଶ ବାବୁ ଧମ୍ଭିତ ହେଲେ ଆଉ ଝିଅଟି ଆସି ରହିଲା ତାଙ୍କର ଘରେ ।

ଇଏ ମାଣିକ । ଅଜିବାର ଦିନକ ଭିତରେ ଦି ପିଲାଙ୍କୁ ଆକଟ କରି କହିଲା ଯେ ମତେ ମା' ବୋଲି ଡାକ । ମୁଁ ତୁମ ମା । ପିଲେ ଯେତେବେଳେ କହିଲେ ଯେ ତାଙ୍କ ମା ଅଜାଙ୍କ ଘରକୁ ଯାଇଚ ଆଉ ଫେରି-ଆସିବ, ଇଏ ସେମାନଙ୍କ ଆଗେ ଯୁକ୍ତି କଲା : ହଁ ସିଏ ଜନମ କଲା ମା ହେଲେ କ'ଣ ହେଲା ମୁଁ ତମ ପୋଷିଆଁ ମା । ଅଲବତ ଡାକିବ ମୋତେ ମା' ବୋଲି । ଭାରି ସ୍ନେହ କଲା ପିଲାଙ୍କୁ । ଘରି ହେପାଜତ କଲା । ପିଲାଙ୍କ ମନ ବି କିଣି ନେଲା । ଅବିନାଶ ବାବୁ ଘରି ଦର୍ପଣରେ ଦୂରେଇ ଦୂରେଇ ରହୁଥିଲେ । କେତେବେଳେ କ'ଣ ଅଘଟଣ ଘଟିବ । ହେଲେ ଦିନ କେଇଟାରେ ଝିଅଟିର ସ୍ୱାସ୍ଥ୍ୟ ବଦଳିଗଲା । ରୂପଶ୍ରୀ ଝଟକିଲା । ସିଏ ତାକୁ ଦେଖିଲା ଦଣ୍ଡେ ସ୍ଥାଣୁ ହେଇ ନ ଗୁହିଁ ରହି ପାରିଲାନ । ଧଳା ଶାଢ଼ୀ ଫୋପାଡ଼ ସେ ରଙ୍ଗୀନ ଶାଢ଼ୀ କିଣିବାକୁ କହିଲା । ଘରି ବେଶଭୂଷା ହେଲା । ପରିପାଟୀ ହେଲା । ଅବିନାଶ ସବୁବେଳେ ତାକୁ ବୁଝାଉ ଥିଲେ ଯେ ତୁ ହଉଚୁ ପିଲାଙ୍କ ମାଉସୀ ଏ ପରିବାରର ଜଣେ । ତୁ ଭଲରେ ରହ । ଭଲ ହେଇ ଯା । ତୋ ଗାଁକୁ ପଠେଇବୁ । ସେ ପଚାରେ : ମୁଁ ଏଠୁଁ ପଳେଇଲେ କ'ଣ ତମ ମନ ଖୁସି ହବ ? ତା'ହେଲେ ମୁଁ ପଳେଇବି । ଅବିନାଶ ନୀରବ ରହନ୍ତି, ମନେ ମନେ କହନ୍ତି ଯାହା ତୁ ଭଲ ବୋଲି ଭାବୁଚ ସେଇଆ କର । ଦିନ ଗଡ଼ି ଚାଲିଚି । ପ୍ରାୟ ଛ'ମାସ ଖଣ୍ଡେ ସିଏ ଘରି କରଣାରେ ଲଗିଗଲା ଆଉ ସମଗ୍ର ପରିବାରଟାକୁ ସାଉଁଟି ଧରିଲା ତା ପଣତ

କାମରେ । ଘ.ଇ ପଡ଼ଶା ସମସ୍ତେ ଜାଣନ୍ତି ଯେ ଅବିନାଶଙ୍କର ଇଏ ନିରମାଖୀ ଦୂର ସମ୍ପର୍କ ବିଧବା ଭଉଣୀଟା ପରି, ପାଗଳୀ ହୋଇଥିଲା ଏବେ ଭଲ ହୋଇ ପାଖରେ ଅଛି ।

ସଲାମ୍ ମିଆଁ ଓ ରଙ୍ଗାଧର ଦି'ଜଣ ଯାକ ତାଙ୍କୁ କେତେ ଥର ତାଗିଦ୍ କଲେଣି ଯେ ଭଲଗତ ଯଦି ଅଛି ମାଣିକକୁ ତା ଗାଁରେ ନେଇ ତୁରନ୍ତ ଛାଡ଼ି ଦେଇ ଆସ ନ ହେଲେ ଅନର୍ଥ ଘଟିବ । ତୋ ସ୍ତ୍ରୀର ନାଗୁଣୀ ରାଗ ରୁଷା କେତେ ପ୍ରଚଣ୍ଡ ତ ତୁ ଜାଣିଚୁ । ସେ ଯଦି ଓଲଟା ବୁଝିଲା ଏ ଘରେ ନିଆଁ ଲଗିଯିବ । ତେବେ କରେ କ'ଣ ? କଛି ଭୁଲ୍ କାମ ତ ସେ କରି ନାହାନ୍ତି । ଅବିନାଶଙ୍କ ମନ ନିର୍ମଳ ଆଉ ସ୍ଥିର ଶକ୍ତ । ମାଣିକ କୂଳରେ ଲଗିଗଲେ ତାଙ୍କର କଛି ଅନ୍ୟାୟ ହେବନି ତ । କେତେ ଆପଣାର ହୋଇ ଯାଇଛି । ହୃଦୟରେ ଓ ଆତ୍ମାରେ କେତେ ଗମ୍ଭୀର ଭିତରକୁ ଜଡ଼ି ଯାଇଛି ଏ ଭିତରେ ମାଣିକ । ତାକୁ କ'ଣ ଶୁଖିଲା ପତ୍ରପରି ଗଛରୁ ଛିଣ୍ଡେଇ ଫୋପାଡ଼ି ଦେଇ ହୁଏ ? ଏଇ ବୃକ୍ଷଟି ଯଦି ଅଲଗା ମାଟିରେ ସୁଖରେ ବଞ୍ଚିବ ବଞ୍ଚୁ ତାଙ୍କର ଆପତ୍ତି ନାହିଁ । ଠିକ୍ ସମୟ ଆସିଲେ ସେ ତାକୁ ତା ଗାଁରେ ପହଞ୍ଚେଇ ଦେବେ ।

ଦିନେ ଅଫିସରୁ ଫେରିଲା ବେଳକୁ ପିଲାଦିଟା ଦଉଡ଼ି ଆସି କହିଲେ : ବାପା ବାପା ଆଜ ମାଣିକ ମା ବର୍ଷାରେ ଡେଇଁ ଡେଇଁ ଆମକୁ ବଗଲୀନା ନାଚ ଦେଖାଉଥିଲା । ଏବେ ତାର ଦିହରେ ଜର । ସେଇ ଘରେ ଶୋଇଛି । ଅବିନାଶ ବ୍ୟସ୍ତ ହୋଇ ପଡ଼ିଲେ । ତା' ପାଖକୁ ଯାଇ ସାରା ଦେହ ମୁହଁ ଆଉଁସି ଦେଲେ । ଦେହ ସତରେ ଖଇ ଫୁଟୁଚି । ମାଣିକ ମୁହଁ ଚ ଜୁଲୁ ଜୁଲୁ । ମାଣିକ ତାଙ୍କ ହାତ ଦିଟାକୁ ପାପୁଲିରେ ଯାବୁଡ଼ି ଧରି ସୁଁ ସୁଁ ହୋଇ କାନ୍ଦୁଚି । ଔଷଧପତ୍ରର ବ୍ୟବସ୍ଥା ହେଲା । ମାଣିକ ସକାଳକୁ ଟିକିଏ ଭଲ ହୋଇ ଆସିଲା । ତା'ପର ଦିନ ଅଫିସ ଯିବାକୁ ତର ତର ହଉଚନ୍ତି, ମାଣିକ ତା ଦି ହାତକୁ ପଛକୁ କରି କ'ଣ ଗୋଟାଏ ଲୁଚେଇ ହସ ମୁହଁରେ ଆସି ତାଙ୍କ ଆଗରେ ଠିଆ ହୋଇ ଗେହ୍ଲେଇ ହେଲା । କହିଲା —

: ଟିକିଏ ବସ ଆଉ ଆଖି ବୁଜ । ପିଲା ଦିଟା ପାଖରେ ଠିଆ ହୋଇ ମଜା ଦେଖୁଚନ୍ତି । ଅବିନାଶ କହିଲେ ହଉ କ'ଣ ତା ମନକୁ ପାଇଚ

କରୁ । ଅବିନାଶ ଆଖି ବୁଜିଲା ପରେ ମାଣିକ ତାଙ୍କ ମୁଣ୍ଡରେ ଗୋଟାଏ ଛିଟ ରିବନ୍ ଫାସରେ କ'ଣ ଗୋଟାଏ ବାନ୍ଧିଲାଭଳି ଲାଗିଲା, ଆଉ ବେକରେ ମଧ୍ଯ ଗୋଟାଏ ସଳସଳିଆ ଗଜରା ମାଳ ପକେଇ ଦେଲା ପୁଣି ଗୋଟାଏ ଦର୍ପଣ ନେଇ ଆସି ତାଙ୍କ ଆଖି ଆଗରେ ଦେଖେଇ କହିଲା— ଆଖି ଖୋଲମ । ଦେଖିଲ ଇଏ କିଏ । ଅବିନାଶ ହତବାକ୍ ହୋଇ ଚାହିଁଚନ୍ତି । ତାଙ୍କ ମଥାରେ ମୟୂର ଚୂଳର ମୁକୁଟ, କାଗଜ କାଟି ତିଆରି ହୋଇ ବନ୍ଧା ହୋଇଛି । ବେକରେ ମଣ୍ଡା ଫୁଲର ଏଡ଼େ ବଡ଼ ମାଳ । ତାଳ ମାରି ପିଲାଟି ପରି ହସି ହସି ଗଡ଼ି ଯାଉଛି ମାଣିକ । କହୁଛି—ତମେ ଏଇଆ । ବୁଝିଲ ନା ତମେ ହେଉଛ ଗିରିଧର ଗୋପାଳ । ତମେ ମୋର କୃଷ୍ଣ । ମୋର କୃଷ୍ଣ । ମୁଁ ତମର ଗୋପୀ, ତମ ରାଧା, ତମ ଲଳିତା, ତମ ବିଶାଖା ମୁଁ ତମର ସବୁ ବୁଝିଲ ? ଏବେ ଯିବ କୁଆଡ଼େ । ହସ ଆଉ ଉତ୍କୁଳ ଲୁହରେ ଅସମ୍ଭାଳ ତା ମୁହଁର ଆଉ ଭଙ୍ଗିର ପ୍ରତିଟି ବିନ୍ଦୁ ବିକଳ୍ପ । ଉନ୍ମତ୍ତ ହୋଇଛି ମାଣିକ । ସଂସାର ଆଉ ସମୟର ଊର୍ଦ୍ଧ୍ୱକୁ ଉଠି ଯାଉଛି । ସେ ହାତ ଊର୍ଦ୍ଧ୍ୱମୁଖୀ । ପତଙ୍ଗୀ ପରି ମୃଦୁ ହାଓ୍ୱାରେ ଉଡ଼ୁଛି ।

ସାମନା ଦରଜାକୁ ଚାହିଁଦେଲାବେଳକୁ ଠିଆ ହୋଇଛି ସରଯୂ, ତାଙ୍କ ପତ୍ନୀ । ଆଉ ସଲାମ୍ ଭାଇ ଦୋଷୀଟି ପରି ଠିଆରେ ପ୍ରାୟ ଥରୁଛି । ସ୍ୱାଙ୍କୁ ଆଖିର ସଙ୍କେତ ଦେଇ ବାରଣ କରୁଛି ସେ ଯେମିତି ପରିସ୍ଥିତିକୁ ଠିକ୍ ସମ୍ଭାଳିବୁ ନହେଲେ ସଇଲା ।

ସରଯୂ ଉଗ୍ର ହୋଇଛି ସାକ୍ଷାତ୍ ମା ଦୁର୍ଗା । ଦାଉ ଦାଉ ଆଖି ଡୋଳାରେ ଲହରି ସ୍ଫୁଲିଙ୍ଗ । ମୁଣ୍ଡ ବାଳ ଅସଜଡ଼ା, କେରି କେରି ହୋଇ ଉଡ଼ୁଛି । ଚିତ୍କାର କଲା—

: ଲେ ଉଦ୍ଦଣ୍ଡି । ବଦମାସ୍ ମାଇକିନିଆ । ଯା ବାହାରି ଯା ଏଇ ମୁହୂର୍ତ୍ତରେ । ଯାଉଚୁ ନା ନାଇଁ ଦେଖିବୁ ।

କେଇଟା ନିମିଷରେ ମାଣିକର ମୁଣ୍ଡି ବାଳକୁ ଧରି ଝିଙ୍କି ଝିଙ୍କି ସରଯୂ ନେଇ ରାସ୍ତାରେ ଏକ ଧକାଆ ମାରି ଭୂଲୁଣ୍ଠିତ କରି ସାରିଥିଲେ । ସଲାମ୍ ଅବିନାଶ କାନରେ ହାତ ଦେଇ ହୃଷ୍ଟ ଦଉଛି—

: ପରବାଏ ନାଇଁ । ତୁ ବଡ଼ଲୋକ ହୁଅନା । ସବୁ ଠିକ୍ ହେଇଯିବ । ଖାଲି କେମିତି ଏଇ ମୁହୂର୍ତ୍ତରେ ଚାଲି ଆସିଲେ, ଆଉ ଇଏ ବାସ୍ଟାଣ୍ଡ ଠାକୁ ଏତିକବେଳକୁ ସୁଆଙ୍ଗ କରିବାକୁ ଥିଲ । ସମସ୍ତେ ହତବାକ୍ । ପୁଅ ଝିଅ ବୋହୂ ସରଯୂଙ୍କ ଅଣ୍ଟାକୁ ଯାବୁଡ଼ି କହୁଚନ୍ତି : ମା' ମାଉସୀକୁ ମାର୍‌ନା ମାର୍‌ନା । ତାକୁ ଛାଡ଼ ଦେନା ।

ସରଯୂ କ୍ରୋଧରେ ଅଜ୍ଞାନ । ପାଟିକରି କହୁଲେ ଯିଏ ରହୁଚି ରହୁ ଏ ଘରେ । ମୁଁ ଆଉ ଜମା ଆସିବିନି । ଏଠି କୁତ୍ତ ସୁଆଙ୍ଗ ହଉଚି ନାଇଁ । ମୋର ଗେରସ୍ତ ନାହିଁ, ପିଲା ନାହିଁ, କେହି ନାହିଁ । ମୁଁ ଚାଲିଲି ମୋ ବାଟରେ ଯୋଉଠୁଁ ଆସିଥିଲି । ଉନ୍ମାଦିନୀ ଭଳି ଦଉଡ଼ି ଦଉଡ଼ି ସରଯୂ ଚାଲିଗଲେ ବସ୍‌ଷ୍ଟାଣ୍ଡକୁ । ଯେତେ ଆକଟ, ସବୁ କଥା ବୁଝେଇବାର ପ୍ରୟାସ ବ୍ୟର୍ଥ ହେଇଗଲା । ସେ ବସ୍ ଚଢ଼ିଲେ ।

ପିଲା ବୋହୂ ଚୂପ୍ ଚାପ୍ ରହୁଚନ୍ତି । ଅଳ ଅର୍ଦ୍ଦଳ କହୁ ନାହିଁ । ମାଣିକ ଚାଲି ଯାଇଛି । ସରଯୂଙ୍କ ପାଖରୁ କୌଣସି ଖବର ନାଇଁ । ଅବିନାଶ ମନକୁ ଅଣ୍ଡ କଲେ । ଠିକ୍ ଅଛି । ଜଗତ୍ତର ଚଳଣୀରେ ସବୁ ଉଠା ପକା, ସବୁ ଅଙ୍କା ବଙ୍କା ରାସ୍ତା ଉପରେ ସେ ପାଦ ପକେଇ ସଜଖ ହେଇ ଚାଲିବେ । ସେ ନିଶ୍ଚିନ୍ତ ଯେ ତାଙ୍କ ବ୍ୟକ୍ତିତ୍ୱରେ କାଳିମା ନାଇଁ । ତାଙ୍କ ମନରେ ମଳ ନାହିଁ ଅଳନ୍ଧୁ ନାହିଁ । ଏଣୁ ଶେଷ କଥାଟା ଜ୍ୟାମିତି ଅଙ୍କ କଷା ଭଳି ଉଚିତ୍ତ ଭାବରେ ଘଟିବ । ସବୁ ସଜାଡ଼ି ହେଇ ଯିବାକୁ ବାଧ୍ୟ ।

ଅଥଚ ଏମିତି କହୁ ହେଲାନି । ବର୍ଷ ପରେ ବର୍ଷ ଗଡ଼ି ଚାଲିଲା । ଅବିନାଶ ରିଟାୟାର୍ କରିଗଲେ । ପୁଅ ଝିଅ ତାଙ୍କ ଭାଗ୍ୟ ନେଇ ଆଗେଇ ଗଲେ । ତାଙ୍କ ଘର ସଂସାର କଲେ । ସରଯୂ ଘରକୁ ଫେରିଲେ ନାହିଁ । ମାଣିକର ପତ୍ତା ନାହିଁ । ତିନିଟା ଏକା ମା ପେଟ ଭାଇ ପରି ସହୋଦର ସଳିମ୍, ଗଙ୍ଗାଧର, ଜନାର୍ଦ୍ଦନ ଇହଧାମ ଛାଡ଼ି ଚାଲି ଗଲେଣି । ଦୁନିଆ ବଦଳି ଯାଇଛି । ପର୍‌ବାଏ ନାହିଁ ।

କିନ୍ତୁ ଇଏ କ'ଣ ହେଲା । କାଲିର କଥା । ସବୁ ଆଉ ଥରେ ଓଲଟ ପାଲଟ । ପୁଣି ତାଙ୍କ ଆତ୍ମାକୁ ମଥାରୁ ଗ୍ଲଡ ଭିତରୁ ଓଟାରି ଆଣି କିଏ ସୁଦୁ ରାସ୍ତା ଧୂଳିରେ ଦଳାଦଳି କରି ପକେଇଲା କି ? ପୋଷ୍ଟକାର୍ଡ଼ ଖଣ୍ଡେ ଆସିଲା । ସରଯୂ କଟକ ବଡ଼ ଡାକ୍ତରଖାନାରେ । ଶେଷ ବେଳ, ଆସି ଦେଖି ଯାଅ । ଅବିନାଶ ପହଞ୍ଚିଲାବେଳକୁ ସରଯୂଙ୍କର ଶରୀର ଯେମିତି ଆଉ ଏକ ଦ୍ୟୁଲୋକର ସମ୍ପଦ । ଏଇ ପୃଥିବୀର ମନୁଷ୍ୟରୂପୀ ବିଗ୍ରହ ସାଙ୍ଗରେ କିଛି ମେଳ ନାହିଁ ସେମିତି ଦିଶୁଚି । କଳାକାଠ ପରି ଏଡ଼େ ଏଡ଼େ ସରୁ ହାତ ଗୋଡ଼ କ୍ଷୀଣ । ନିଷ୍ପ୍ରଭ ଆଖି । ପାନ ପତର ପରି ଚକା ମୁହଁରେ ଖିନ ଭିନ ବସୂନ୍ତ ଆଉ ବ୍ୟାଧିର କଳା ଦାଗ । ମୁଣ୍ଡବାଳ ସବୁ ଖୋଷ ଭଳି ଫୁର୍ ଫୁର୍ । ସରଯୂ ଦିଶୁଚି ପ୍ରଳୟ ପୟୋଧି ଜଳରୁ ଗୁଣି ଆଣିଥିବା ସବୁ ଅମୃତ କ୍ଷରି ଯାଇଥିବା ଫଟା ଦଦରା ମାଟି ହାଣ୍ଡିଟେ ପରି । ସମ୍ଭାଳି ପାରିଲେନି । ତା ମୁହଁ ପାଖକୁ ମୁହଁ ନେଲେ । ମଥାରେ ହାତ ଦେଇ କହିଲେ : ସରଯୂ ମୁଁ ଦୋଷୀ । ମୋ ପାଖରୁ ପଳେଇ ଯା ନା । ସେଇ ସ୍ତିମିତ ଜୁଳୁ ଜୁଳୁ ଆଖି ହଟା ମୁହୂର୍ତ୍ତେ ହସି ଉଠିଲା । ପୁଣି ତାଙ୍କ ମୁହଁରୁ କଣ ସବୁ ଖୋଜିଗଲା । ଆଉ କିଛି ନ ପାଇଲା ପରି ହା ହୁତାଶର କ୍ଷୀଣ ନିଃଶ୍ୱାସଟିଏ ବାହାରି ଗଲା । ଆଖି ବୁଜି ଦେଲା ସରଯୂ । ଅବିନାଶଙ୍କ ହାତରୁ ଆଶାବାଡ଼ି ଖଣ୍ଡିକ ଖସି ପଡ଼ିଲା । କିମିତି ତଳ ମହଲାକୁ ଆସି ରାସ୍ତାରେ ପାଦ ଦେଇଚନ୍ତି ତାଙ୍କୁ ଜଣା ନାହିଁ । ସେଠି ଆଉ ଗୋଟେ ଦୃଶ୍ୟ । ଏକଦା ଧଳା ରଙ୍ଗ ଥିବା ଏବେ ଧୂସର କୋଚଟ ସାତସିଆଁ ଶାଢ଼ୀ ଖଣ୍ଡେ ଘେରି ହୋଇ ଡେଙ୍ଗା ପତଳା ସ୍ତ୍ରୀ ଲୋକଟାଏ ଠିଆ ହୋଇଚି । ସ୍ବାଙ୍କୁ ଯେମିତି ଦେଖି ଦେଇଚି ହ' ହାତ ଉପରକୁ ଟେକି ଦେଇ 'କୃଷ୍ଣ ହେ ନ ଯାଅ ଛାଡ଼ି କାନ୍ଦୁଚି ଯମୁନା ବାଲି' ସୁର୍ ଗୁଣ୍ଡି ନାଚିବାରେ ଲଗିଲା । ଟଣି ଫଟେଇ ପାଟି କରି କରି ତାର ସ୍ୱର ଅତି ବିଭତ୍ସ ଅଉ କର୍କଶ । ହେଲେ ଆଖି ହ'ଟାରେ ପୁରୁଣା କମିଆଁ ସେଇମିତି ଅଛି । ଚହ୍ଲା ଚହ୍ଲା ଲାଗୁଚି । ତୁ କ'ଣ ମାଣିକ କଲେ ! କ୍ୟାବିନ୍ ଜଗୁଆଳ ଅବିନାଶଙ୍କ ହାତରେ ଗୁଞ୍ଜି ଆସିଥିବା ବାଙ୍କୁଲି ବାଡ଼ିଟି ଆଣି ଧରେଇ ଦେଇ କହୁଚି ସେଇଟା ପାଗଳୀଟାଏ ବାବୁ । ସହରଯାକ ବୁଲୁଚି ନଙ୍ଗଳା ମୁକୁଳା ହୋଇ । ସେଇଟାକୁ କ'ଣ ନାଁ

ଫଗୁରୁନ ? ଚାଲ ଚାଲ ସଜ୍ଜାର ବ୍ୟବସ୍ଥା କର । ତାଙ୍କୁ ଜନ୍ମାରୁ ନ ଚିହ୍ନିଲି ପରି ସ୍ତ୍ରୀ ଲୋକଟା ଟଳ ମଟଳ ପାଦରେ ଆଗଉଚି ଆଗକୁ, ମୁଣ୍ଡ ବାଳରେ ଲଗିଚି ପତର ଭଦ ଭଦଳିଆ ପକ୍ଷୀପର କଣ୍ଢା କାଗଜ ଟୁକୁରା ଧୂଳି ମଳି ଯେତେକ । ହାତରେ କିନ୍ତୁ ତାର ବ' ଚାରିଟା ମୟୂର ଚନ୍ଦ୍ରିକା ଯା'କୁ ସିଏ ଅନବରତ କାଳସିପରି ନଚଉଚି । ମାତ୍ର ଅନ୍ଧାରରେ ମଣିକର ଶରୀର ଛାଇପରି ଢେର ଦୂରକୁ ଅପସରି ଗଲାଣି । ଅବିନାଶ ଜଗତ ଦେଖୁଛନ୍ତି । ଏଇ ଜଗତରୁ କେବେ କ'ଣ ଅବସର ନେଇ ହୁଏ ।

ଖଟ ଉପରୁ ବାଡ଼ରେ ଭରା ଦେଇ ଠିଆ ହେଲେ । ଚାଲିଲେ ତାଙ୍କ ଗାଁର ଆମ୍ବତୋଟା ଭିତରେ ଯେଉଁ ଛାଳ ଘରର ଗୁମ୍ଫ ତିଆରି କରିଚନ୍ତି ସେଇଠିକି । ସବୁ ଝରକା କବାଟ ବନ୍ଦ କରିଦେଲେ ଯାହା ଭିତରକୁ ଆଲୁଅ ପଶି ପାରେନାହିଁ । ଏମିତିକି ଅନ୍ଧାର ପଶିବାକୁ ଡରେ, ସେଇ ଭିତରେ ସିଏ ବର୍ତ୍ତିଯିବେ ବୋଲି ଭାବିଚନ୍ତି ! ହେଲେ ସେଠି କ'ଣ ନିସ୍ତାର ଅଛି !

ସରଯୂ ଆଉ ମାଣିକର ଛାଇ ମଧ୍ୟରେ ସେଠି ଟଣାଓଟରା । ସ୍ମୃତିର ସବୁଯାକ ତରଙ୍ଗ ନିଆଁର ବ୍ୟୂହ ଭିତରେ ସେକି ହେଉଚନ୍ତି. ସିଝୁଚନ୍ତି ଅବିନାଶ । ଛୁଟି କେଉଁଠି ? ଅବସର ନାହିଁ !



ଭାରତୀ ପ୍ରେସ, କଟକ-୯